# ଲେଖକର ଦୁଇପଦ

ବିଭିନ୍ନ ସମୟରେ ଲିଖିତ ଅଥଚ ଏକପ୍ରକାର ରସାନୁଭୂତିରୁ ଉଦ୍‌ଭୂତ ଏବଂ ଏକ ସୂତ୍ରରେ ଗ୍ରନ୍ଥିତ କେତୋଟି ପ୍ରେମରସାତ୍ମକ ଗଳ୍ପ ଏକତ୍ର କରି ପୁସ୍ତକାକାରରେ ପ୍ରକାଶିତ କରିବାଲାଗି କେତେକ ଶିଷ୍ଟ ପାଠକପାଠିକା ଆଗ୍ରହ ପ୍ରକାଶ କରିଥିଲେ । ସେ ଦୃଷ୍ଟିରୁ ଏ ସଂଗ୍ରହ ବହୁ ପୂର୍ବରୁ ପ୍ରକାଶ ପାଇବାକଥା; ମାତ୍ର ବହୁଦିନ ପରେ ହେଲେ ମଧ୍ୟ 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥା ଏହାକୁ ଆଜି ପ୍ରକାଶ କରି ମୋର ପ୍ରିୟ ପାଠକପାଠିକାମାନଙ୍କର ଆଗ୍ରହ ଚରିତାର୍ଥ କରିଛନ୍ତି । ସେଥିଲାଗି ଶ୍ରୀ ଅଭିରାମ ମହାପାତ୍ରଙ୍କୁ ଅଗ୍ରେ ଧନ୍ୟବାଦ ଅର୍ପଣ କରିସାରି ନିଜ କଥା କହୁଛି ।

ନିକହିଥିଲେ ବୋଧହୁଏ ଚଳନ୍ତା ଯେ—'ବିଷ୍ଣୁମାୟା' ଗୋଟିଏ ଶୃଙ୍ଗାରରସାତ୍ମକ କାହାଣୀ ସଂଗ୍ରହ । ଶୃଙ୍ଗାରରସ ଆଦିରସ । ସେଥିଲାଗି ଶେଷ ପର୍ଯ୍ୟନ୍ତ ଏହି ରସର ଶେଷ ହେବ ନାହିଁ । ଶୃଙ୍ଗାରରସକୁ ନେଇ ଗଳ୍ପ, କବିତା ଯାହା ଲେଖା ହେଉନା କାହିଁକି—ଯେପରି ଭାବେ ଲେଖା ହେଉନା କାହିଁକି—ଏ ରସର ଆସ୍ୱାଦନ ଲାଗି ସମାଜରେ ପାଠକପାଠିକାଙ୍କର ଅଭାବ ରହିନାହିଁ, ରହିବ ନାହିଁ । ବରଂ ଏହି ରସଲୋଲୁପ ପାଠକ-ପାଠିକାଙ୍କର ସଂଖ୍ୟା ସର୍ବାଧିକ । ତେଣୁ ପ୍ରେମରସ ପରିବେଷଣ କରି ପାଠକପାଠିକାଙ୍କୁ ସନ୍ତୁଷ୍ଟ କରିବା ଅତି ସହଜ କଥା । ଅତି ନୈଷ୍ଠିକ ଝାନ୍ତୁ ଅତି ମୁଷ୍ଟିମେୟ କେତେକ ନିରାମିଷାଶୀଙ୍କୁ ଛାଡ଼ିଦେଲେ—ମାଛ ମାଂସ ତ ଦୂରର କଥା—ଶୁଖୁଆପୋଡ଼ାର ବହୁବିସ୍ତାରିତ ଦୁର୍ଗନ୍ଧାଘ୍ରାଣ ହିଁ ବହୁ ଆମିଷବିଳାସୀଙ୍କ ଭୋଜନରେ ତୃପ୍ତିର ହେତୁ ହୋଇଥାଏ ।

ମାତ୍ର ପାଠକପାଠିକାଙ୍କର ଏହି ଆମିଷ-ବିଳାସୀ ରୁଚିର ସୁଯୋଗ ନେଇ ମୁଁ ଏ ଗଳ୍ପଗୁଡ଼ିକ ଯେ ଲେଖିନାହିଁ ଏବଂ ଏକତ୍ର କରି ପ୍ରକାଶ କରିନାହିଁ—ଏହି ସତ୍ୟୋକ୍ତିକୁ ଯେକୌଣସି ସାହିତ୍ୟର ରସ-ବୁଦ୍ଧି-ସମ୍ପନ୍ନ ପାଠକପାଠିକା ନିଶ୍ଚୟ ବିଶ୍ୱାସ କରିବେ ବୋଲି ମୁଁ ବିଶ୍ୱାସ କରୁଛି ।

ଉପନ୍ୟାସ ଭାବରେ ସଂସାରର ଯାବତୀୟ ରସ ଓ ଭାବ ସଙ୍ଗେ ଶିଳ୍ପୀ-ହୃଦୟର ପରିଚୟ ଯେମିତି ସହଜ, ସତ୍ୟ ଓ ନିବିଡ଼ (ଅଥଚ ନିର୍ଲିପ୍ତ) ଆଦିରସ କ୍ଷେତ୍ରରେ ବି ଠିକ୍ ସେହିଭଳି । ଏହି ସହଜ ଭାବାବେଗ, ନିବିଡ଼-ରସାନୁଭୂତି ଓ ଗଭୀର ସତ୍ୟାନୁସନ୍ଧିତ୍ସାର ପରିପାକ ପ୍ରକ୍ରିୟାରେ ଆଦିରସ ମଧ୍ୟ ତାର ସତ୍ୟ, ଶିବ ଓ ସୁନ୍ଦରର ପରିଣତ ସ୍ୱାଦର ଘ୍ରାଣ ଶିଳ୍ପୀ ପ୍ରାଣରେ ରଖିଦେଇଯାଇଛି । ସେହି ଅମୃତୋପମ ସ୍ୱାଦ ପରିବେଷଣ କରିବାର ଅଦମ୍ୟ ଶିଳ୍ପସୁଲଭ ଆଗ୍ରହ ଓ ପ୍ରଲୋଭନ ଯୋଗୁ ହିଁ ମୁଁ ଏହି ଗଳ୍ପଗୁଡ଼ିକ ଆଜି ପାଠକମାନଙ୍କ ହାତକୁ ବଢ଼ାଇଦେଉଛି ।

ନାଗରିକ କ୍ଷେତ୍ରରେ ଓ ନାଗରିକ ଭାବରେ ସାବିତ୍ରୀ, ତିଲୋତ୍ତମା, ବୀଣା, ହୀରାମଣି, କମଳା, ଇନ୍ଦୁରେଖା, ପ୍ରତିଭାସୁନ୍ଦରୀ ଓ ଚପଳା ପ୍ରଭୃତି ଆଦି ନାୟିକାଚରିତ୍ରଗୁଡ଼ିକ ସଙ୍ଗେ ମୋର ନିଜର କିଛି ବ୍ୟକ୍ତିଗତ ସମ୍ପର୍କ ନାହିଁ । ମାତ୍ର ମୋର ଶିଳ୍ପୀମନ ବା ଶିଳ୍ପହୃଦୟ ସଙ୍ଗେ ଏମାନଙ୍କର ସମ୍ବନ୍ଧ ଅତି ନିବିଡ଼ ଓ ଅତି ଗଭୀର । ବରଂ ନାଗରିକଭାବରେ ଏହି ସବୁ ଚରିତ୍ର ମୋ ଉପରେ ନିର୍ଭର ହୋଇଯାଇଛନ୍ତି, ମାତ୍ର ସେମାନଙ୍କର ଏହି ନାଗରିକ ନୈରାଶ୍ୟ ହିଁ ମୋର ଶିଳ୍ପୀମାନସରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ମୋ ହୃଦୟର ସମସ୍ତ ସମ୍ମାନ ଓ ସମସ୍ତ ସମବେଦନା ମୁଁ ବିନମ୍ର ସହିତ ସେମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଛି ।

ସେମାନେ କେହି ଆଜି ମୋ ନିକଟରେ କ୍ଷୁଦ୍ର ନୁହନ୍ତି, ଘୃଣ୍ୟା ନୁହନ୍ତି । ସେମାନେ ସମାଜର ଅନ୍ୟାନ୍ୟ ନାରୀମାନଙ୍କଭଳି ମହନୀୟା । ସେମାନେ ଖୋଜୁଥିଲେ ଅମୃତର ସ୍ୱର୍ଗୀୟ ତୃପ୍ତି ଆଉ ଅନନ୍ତ ପ୍ରଶାନ୍ତି । ମାତ୍ର ପାଇଲେ ମଦ୍ୟର କ୍ଷଣିକ ଉତ୍ତେଜନା, ତପ୍ତ ଜ୍ୱାଳାର ଯନ୍ତ୍ରଣାମୟ ଅନନ୍ତ ହାହାକାରର ବ୍ୟର୍ଥତା । ଭ୍ରମନ୍ତ ପ୍ରେମର ଛଳନାଚପଳ ନୃତ୍ୟବିଳାସ ମୋହିନୀ ଇଙ୍ଗିତରେ ସେମାନେ ବିଭ୍ରାନ୍ତା ହୋଇଗଲେ ।

ମୋ ନିକଟରେ ଅମୃତ ଭାଣ୍ଡ ଥିଲେ ମୁଁ ସେମାନଙ୍କୁ ଅମୃତର ସ୍ୱାଦ ଓ ତୃପ୍ତି ଦେଇପାରିଥାନ୍ତି । ବିଷଭାଣ୍ଡ ଥିଲେ ବି ସେମାନଙ୍କୁ ସେତିକି ଦେଇ

ସେମାନଙ୍କର ସମସ୍ତ ଜାଗତିକ ବ୍ୟର୍ଥତା ଓ ଜ୍ୱାଳାରୁ ମୁଁ ସେମାନଙ୍କୁ ଚିରଦିନଲଗି ମୁକ୍ତି ଦେଇପାରିଥାନ୍ତି । ତୃଷାର୍ତ୍ତ ସେମାନେ । ବିକଳରେ ଛଳନାର ଆସବ ପାନକରି ସେମାନେ ବ୍ୟର୍ଥତାର ହାହାକାରରୁ ମୁକ୍ତି ଲୋଡ଼ୁଥିଲେ ।

ସମୁଦ୍ର ମନ୍ଥନ ପରେ ମୁଁ ଯାଇ ପହୁଞ୍ଚିଛି । ସେତେବେଳକୁ ପରିବେଷଣ ମଧ୍ୟ ଶେଷ ହୋଇଯାଇଛି । ମୋ ନିଜ ଲାଗି ମଧ୍ୟ ସୁଧା ନାହିଁ କି ଆସବ ନାହିଁ; ବିଷ ମଧ୍ୟ ସରିଯାଇଛି । ତେଣୁ ଏହି ସମୁଦ୍ରମନ୍ଥନରେ ମୁଁ ନିଜେ ମଧ୍ୟ କିଛି ଲାଭ ଉଠାଇ ନାହିଁ । ମୁଁ କେବଳ ସେହି ଭୋଜିସଭାର ଶେଷରେ ଦର୍ଶକମାତ୍ର । ସେହି ମହାକୋଳାହଳପୂର୍ଣ୍ଣ ଭୋଜିସଭାରେ ମୁଁ କଣ ସବୁ ଶୁଣିଛି ? କେତେ ନିର୍ମମତାର ଅଟ୍ଟହାସ !! କେତେ ବ୍ୟର୍ଥତାର ହାହାକାର !! କେତେ ଯନ୍ତ୍ରଣାର ଚିତ୍କାର !! ଆଉ କେତେ ପରିତୃପ୍ତିର ଶାନ୍ତିପୂର୍ଣ୍ଣ ହେଉଡ଼ି !

ମୁଁ ବିଚିତ୍ର ଶିଳ୍ପୀ । ଏତେ ଟିକେ କ୍ଷୁଦ୍ର ହୃଦୟଟି ହିଁ ମୋର ସମ୍ବଳ । ସେମାନଙ୍କ ଅଜାଣତରେ ମୁଁ ଦେଇଦେଇଛି ଏତିକି ମୋର ସମ୍ବଳ । ଏ ହୃଦୟରେ ଅମୃତର ଚିରନ୍ତନ ଶୀତଳ ପ୍ରଶାନ୍ତି ନାହିଁ କିମ୍ବା ଆସବର କ୍ଷଣିକ ଉତ୍ତେଜନାତପ୍ତ ଭ୍ରମିତ ବୁଭୁକ୍ଷାର ଯନ୍ତ୍ରଣା ନାହିଁ, କିମ୍ବା ନାହିଁ ସେହି ବିଷର ନୀଳକଣ୍ଠୀ ବୈଭବ ପ୍ରତିକ୍ରିୟା । ଏ ହୃଦୟରେ କେବଳ ନୀରବ ସଙ୍କୋଚ ସଙ୍ଗୋପନରେ ନିରବଚ୍ଛିନ୍ନ ଭାବରେ ଲପ୍ ଧପ୍ ଲପ୍ ଧପ୍ ହୋଇ ବହିଯାଉଛି ଅନନ୍ତ କାରୁଣ୍ୟର ସ୍ରୋତ । ଯନ୍ତ୍ରଣାର ହାହାକାରରେ ସେମାନେ ଧାଇଁ-ଆସିଛନ୍ତି ମୋ ହୃଦୟର ଏହି କାରୁଣ୍ୟ-ସ୍ରୋତ ଭିତରକୁ—ବିଶ୍ୱସ୍ତ ସେମାନେ ସାବିତ୍ରୀ, ତିଲୋତ୍ତମା, ବୀଣା, ହୀରାମଣି ଆଉ ଚପଳା ପ୍ରଭୃତିର ଦଳ । ସେମାନେ ଏହି କ୍ଷୀଣ ସ୍ରୋତଟି ଭିତରେ କୁଣ୍ଡ଼ି ଶାନ୍ତି ଖୋଜିଛନ୍ତି—ପାଇଛନ୍ତି କି ନାହିଁ ସେମାନେ ଜାଣନ୍ତି । ମାତ୍ର ସେହି ଅବସରରେ ମୁଁ ସେମାନଙ୍କୁ ଯେତିକି ଦେଇଛି—ଏହି ଗଳ୍ପଗୁଡ଼ିକରେ ସେତିକି କେବଳ ଜଣାଇଛି ।

ପୁରୁଷ ଚରିତ୍ରଗୁଡ଼ିକ ଉପରେ ମୋର କିଛି କହିବାର ନାହିଁ । ସେମାନେ ନିଜ କଥା ନିଜେ କହିବେ । ଅବଶ୍ୟ ନାରୀଚରିତ୍ରଗୁଡ଼ିକ ବି ନିଜ

କଥା ନଜେ କହୁଛନ୍ତି । ମାତ୍ର ନାଙ୍କ କଥା ସ୍ୱତନ୍ତ୍ର । ସେମାନେ ଯେତେ ସ୍ପଷ୍ଟ କହିଲେ ବି ଆମ କାନକୁ ସେତିକି ଅସ୍ପଷ୍ଟ ଶୁଭେ । ସେମାନେ ଯେତେ ସ୍ପଷ୍ଟ ଦେଖାଇବାକୁ ଚେଷ୍ଟା କଲେ ବି ଆମ ଆଖିକୁ ସେତିକି ଅସ୍ପଷ୍ଟ ଦିଶେ । ଏହି ଅସ୍ପଷ୍ଟତାହିଁ ସେମାନଙ୍କ ସୌନ୍ଦର୍ଯ୍ୟ । ସେଥିଲାଗି ମଧ୍ୟସ୍ଥତାର ଏତେ ପ୍ରୟୋଜନୀୟତା ଆବଶ୍ୟକ ହେଲା ।

ହଁ, ଏଠାରେ ଆଉ ଗୋଟିଏ କଥା ମଧ୍ୟ ମୋତେ କହିବାକୁ ପଡ଼ୁଛି । ଏହି ପୁସ୍ତକର କେତେକ ଗଳ୍ପ ଉପରେ ନୈତିକ ଶ୍ଳୀଳତା ଓ ଅଶ୍ଳୀଳତାର ପ୍ରଶ୍ନ ଉଠିପାରେ—ଉଠିଛି ମଧ୍ୟ ଆଗରୁ । ଏ ଯୁଗରେ ସବୁ ବିଷୟ ଉପରେ ମତାମତ ବ୍ୟକ୍ତ କରିବାର ଅଧିକାର ସମସ୍ତଙ୍କର ନିଶ୍ଚୟ ଅଛି । ମାତ୍ର ସବୁ ବିଷୟରେ ମତାମତ ବ୍ୟକ୍ତ କରିବାର ନୀତିଗତ ଯୋଗ୍ୟତା ଓ ନ୍ୟାୟସିଦ୍ଧ କ୍ଷମତା ସମସ୍ତଙ୍କର ଅଛି କି ନାହିଁ—ସେ ବିଷୟରେ ମତାମତ ବ୍ୟକ୍ତ କରିବା-ଲାଗି ମଧ୍ୟ ସେହିପରି ନୀତିଗତ ଯୋଗ୍ୟତା ଓ ନ୍ୟାୟସିଦ୍ଧ କ୍ଷମତା ଆଗ ଅଛି କି ନାହିଁ ତାର ପ୍ରଶ୍ନ ଉଠିବ । ତେଣୁ ଏପରି କ୍ଷେତ୍ରରେ ପ୍ରକୃତ ଶିଳ୍ପୀ ନୀରବ ରହିବା ଉଚିତ । ଶିଳ୍ପୀ ହିସାବରେ ମୁଁ ନୀରବ ରହୁଛି ।

ମାତ୍ର ଦୁର୍ଭାଗ୍ୟ—ମୁଁ କେବଳ ଶିଳ୍ପୀ ନୁହେଁ—ମୁଁ ଏକାଧାରରେ ଜଣେ ଶିକ୍ଷକ, ଜଣେ ପିତା, ପୁତ୍ର, ଭ୍ରାତା, ପତି ଇତ୍ୟାଦି । ତେଣୁ ଏଇ ସବୁ ହିସାବରେ ଓ ଏଇ ସନ୍ଧିର ସୁଯୋଗରେ ମୁଁ କିଛିତ୍ କହିବା ଉଚିତ ମନେକରୁଛି ।

ଶୃଙ୍ଗାର ରସକୁ ନେଇ ଯେଉଁମାନେ କାରବାର କରନ୍ତି ତାଙ୍କ ଲଲାଟରେ ସବୁ ଯୁଗରେ ଏ ବିପଦ ଲେଖା ହୋଇ ଆସିଛି । ବ୍ୟାସ ବାଲ୍ମୀକିଙ୍କଠାରୁ ଆରମ୍ଭ କରି କାଳିଦାସଙ୍କ ପର୍ଯ୍ୟନ୍ତ ଏବଂ ଶାରଳାଦାସଙ୍କଠାରୁ ଆରମ୍ଭ କରି ଭଞ୍ଜ ଓ ଅଭିମନ୍ୟୁଙ୍କ ପର୍ଯ୍ୟନ୍ତ, କିମ୍ବା ରାଧାନାଥଙ୍କଠାରୁ ଆରମ୍ଭ କରି ମାନସିଂହଙ୍କ ପର୍ଯ୍ୟନ୍ତ—ସବୁ କବି ଓ ମହାକବିମାନଙ୍କୁ ଅକ୍ଷି ଭୃକୁ ଅଶ୍ଳୀଳ କହିଦେବା ଭଳି ସମାଲୋଚକ ଆଗେ ଥିଲେ, ଏବେ ଅଛନ୍ତି ଓ ପରେ ମଧ୍ୟ ରହିବେ । ଅବଶ୍ୟ ଏମାନଙ୍କ ମଧ୍ୟରୁ କେତେକ କବି, ମହାକବିଙ୍କ ଧର୍ମ ପ୍ରତିଷ୍ଠା

ଲାଗି ଓ କେତେକ କବିଙ୍କୁ ଅଳଙ୍କାର ପ୍ରତିଷ୍ଠା ଲାଗି ଅଶ୍ଳୀଳତା ଅପବାଦରୁ
ରକ୍ଷା କରିବା ପାଇଁ ମୁକ୍ତ କରିବାକୁ ବହୁ ରସଜ୍ଞ ଓ ଅର୍ଥଜ୍ଞ ସମାଲୋଚକ
ମଧ୍ୟ ଅଛନ୍ତି—ଏହା ସତ୍ୟ । କେବଳ ଧର୍ମ ବା ଅଳଂକାର ପ୍ରତିଷ୍ଠା ଲାଗି
ନୁହେଁ—ଆଧୁନିକ ସମାଜର ଆଦର୍ଶ ଭଳି ଆଧୁନିକ ସାହିତ୍ୟର ଆଦର୍ଶ ମଧ୍ୟ
ହୋଇଛି ସତ୍ୟ ଓ ନୀତି ପ୍ରତିଷ୍ଠା କରିବା । ସତ୍ୟ ପ୍ରତିଷ୍ଠା ଲାଗି କିମ୍ବା ନୀତି
ପ୍ରତିଷ୍ଠା ଲାଗି (ସେ ସତ୍ୟ ସର୍ବଦା ଆପେକ୍ଷିକ ଓ ସେ ନୀତି ସର୍ବଦା ବ୍ୟକ୍ତିଗତ)
ଆଧୁନିକ ସାହିତ୍ୟର ଏହି ଆପାତ ଅଶ୍ଳୀଳତାକୁ ସହ୍ୟ କରିବାକୁ ହେବ ।
ପୁରାଣରେ ବହୁ ଋଷିଙ୍କର ରେତସ୍ଖଳନକୁ ଆମେ ଯେମିତି ଧର୍ମକୁ ଆଗରେ
ରଖି ସହ୍ୟ କରିଯାଉ—କାବ୍ୟରେ ବହୁ ନାୟିକାଙ୍କର ନୀବି ମୋକ୍ଷଣ ଓ ବସ୍ତ୍ର
ହରଣକୁ ଆମେ ଯେମିତି ଅଳଙ୍କାରର ଖାତିରରେ ଓ ଏକ ଗୂଢ଼ ଆଧ୍ୟାତ୍ମିକ
ବ୍ୟାଖ୍ୟାନର ଖାତିରରେ ଦେଖି ମଧ୍ୟ ଆଖି ବୁଜୁ ନାହିଁ—ସେହିପରି ଆଧୁନିକ
ସାହିତ୍ୟ ପଢ଼ିବାବେଳେ ବି ଆଧୁନିକ ଲେଖକର ମନୋଭାବ, ଉଦ୍ଦେଶ୍ୟ ଓ
ନୀତିବୋଧ ସଙ୍ଗେ ସତ୍ୟ ଅନୁସନ୍ଧିତ୍ସାକୁ ମଧ୍ୟ ବିଚାର କରି ଶ୍ଳୀଳତା ଅଶ୍ଳୀଳତା
ଉପରେ ଟିପ୍ପଣୀ ଦେବାକୁ ହେବ ।

ଏହା ବ୍ୟତୀତ ଶ୍ଳୀଳତା ବା ଅଶ୍ଳୀଳତାର ପ୍ରଶ୍ନ ଉଠାଇବା ପୂର୍ବରୁ
ପ୍ରତ୍ୟେକ ଶିଳ୍ପକର୍ମର ସାମଗ୍ରିକ ପ୍ରଭାବ ଉପରେ ଦୃଷ୍ଟି ଦେବା ଉଚିତ ।
ସାମଗ୍ରିକ ଭାବରେ ନଦେଖିଲେ ଓ ସମଗ୍ର ପ୍ରଭାବ ଲାଗି ଅପେକ୍ଷା ନକଲେ,
ବିଶାଳ ଜୈନମୂର୍ତ୍ତି ମହାବୀରଙ୍କର ମହାନ୍ ପୁଙ୍ଖୋଦିତ ନଗ୍ନ ଦେହରୁ ନିର୍ମୁକ୍ତ
ଅପାର ସୌନ୍ଦର୍ଯ୍ୟ ନ ଦେଖି ସେହି ବିଶାଳ ମହାନ୍ ନଗ୍ନ ଦେହ ଭିତରୁ
କେବଳ ସେହି ବିଶେଷ ଅଶ୍ଳୀଳ ଅଂଶଟି ହିଁ ଆମ ଆଖିରେ ପଡ଼ିବ
ଓ ମନରେ ବି ଲାଗି ରହିବ ତାର ଅଶ୍ଳୀଳ ପ୍ରତିକ୍ରିୟା । ବ୍ରହ୍ମନିଷ୍ଠ, ସଂସାର-
ବିରାଗୀ, ଭକ୍ତକବି ମଧୁସୂଦନଙ୍କର "ଜୀବନ ଚିନ୍ତା" ଶୀର୍ଷକ ବୈରାଗ୍ୟ-
ଉଦ୍ବୋଧିନୀ କବିତାରୁ "ଯୁବତୀର ରକ୍ତାଧର, ରମ୍ୟଜ୍ୟୋତି ନୟନର,
ସ୍ୱର୍ଣ୍ଣଘଟ ସମ ବକ୍ଷ, ବିଧୁ ପଦ୍ମାନନ"—କେବଳ ଏତିକି ପାଠ କରି ଓ ଆଉ
ଆଗକୁ ନ ପଢ଼ି କେହି ଯଦି ମୁଣ୍ଡରେ ହାତ ଦେଇ ବସେ, ଆଉ କହେ,
"ଅହୋ ! ମଧୁସୂଦନସ୍ୟ ଜୀବନ-ଚିନ୍ତାର କି ଶୋଚନୀୟ ଅଶ୍ଳୀଳ

ଅଧଃପତନ !" ତେବେ ଆମ୍ଭମାନଙ୍କର ମଧ୍ୟ କହିବାରେ ଲଜ୍ଜା ନାହିଁ ଯେ, "ହା ହତୋଽସ୍ମି ! ଅପ୍‌ଦେଶୀସ୍ଥ ଉଦ୍ଭଟ ସମାଲୋଚକମାନଙ୍କର ଶ୍ଳୀଳ ଚିତ୍ତ ହଠାତ୍ ମୂଳଗାର ସ୍ୱର୍ଣ୍ଣମେଦପଦ୍ମ ବକ୍ଷ ଉପରେ ଧକ୍କା ଖାଇ ଭୂପତିତ ହେଲ" । କିନ୍ତୁ ଏହା ପରେ ଯେ "ଇନ୍ଦ୍ରଧନୁ ଶୋଭିପଦ୍ମ ପଲାନ୍ତ ବନ୍ଧନ" ପଦଟି କେବଳ ସ୍ୱର୍ଣ୍ଣମେଦପଦ୍ମ ବକ୍ଷକୁ ସ୍ୱର୍ଣ୍ଣମେଦ ମୁକ୍ତ କରନାହିଁ—ବୈରାଗ୍ୟ ରସପିପାସୁ ପାଠକର ଆଚ୍ଛନ୍ନ ଚିତ୍ତକୁ ମଧ୍ୟ ମୋହମୁକ୍ତ କରିଦେଇ ତାକୁ ମୁକ୍ତିର ପଥ ଦର୍ଶାଇ ଦେଇଛି—ଏତିକି ମର୍ମାର୍ଥ ବୁଝିବା ଲାଗି କେବଳ ଶୁଚିବାୟୁଗ୍ରସ୍ତ ଶ୍ଳୀଳତାବୋଧ ହିଁ ଏକମାତ୍ର ଯୋଗ୍ୟତା ନୁହେଁ । ଅଭିଜ୍ଞ, ଚିନ୍ତାଶୀଳ, ପ୍ରବୁଦ୍ଧ ଓ ଧୈର୍ଯ୍ୟଶୀଳ ରସଗ୍ରାହୀ ଚିତ୍ତ ହିଁ ଏ କ୍ଷେତ୍ରରେ ପ୍ରକୃଷ୍ଟ ବିଚାରକ । ତେଣୁ ପ୍ରତିଟି ଗଳ୍ପର ସାମଗ୍ରିକ ପ୍ରଭାବ ଉପରେ ହିଁ ଏହି ଶ୍ଳୀଳତା ଓ ଅଶ୍ଳୀଳତାର ପ୍ରଶ୍ନ ଉଠିଲେ ମୋର ଆପତ୍ତି ନାହିଁ । ଏ ସମ୍ବନ୍ଧେ ମୋର କୈଫିୟତ ଏତିକି ।

ଶେଷରେ ବାଗ୍‌ଦେବୀଙ୍କର ଶପଥ ନେଇ ଗର୍ବର ସହିତ ଘୋଷଣା କରୁଛି ମୁଁ ଅଶ୍ଳୀଳ ବ୍ୟାଧିଗ୍ରସ୍ତ ନୁହେଁ । ପାଠକପାଠିକାଙ୍କ ପାଇଁ ମୋର ଚିତ୍ତ ଅଶ୍ଳୀଳତା-ପ୍ରଲୁବ୍ଧ ଚିତ୍ତବୃତ୍ତିର ସୁଯୋଗ ନେଇ ଏ ପୁସ୍ତକରୁ ଅର୍ଥ ଉପାର୍ଜନ କରିବାର ଅଶ୍ଳୀଳ ଲାଳସା ମୋର ନାହିଁ ।

ମୋର ସମସ୍ତ ଗଳ୍ପରେ ଯେଉଁ ଯେଉଁ ଅଂଶରେ ଆପାତ ଅଶ୍ଳୀଳତାର ସ୍ପର୍ଶ ଲାଗିଛି ବୋଲି ଶୁଚିବାୟୁଗ୍ରସ୍ତ ପାଠକ ପାଠିକାଙ୍କ ମନରେ ଧାରଣା ହେବ—ମୋର ଦୃଢ଼ ବିଶ୍ୱାସ—ସେ ସବୁ ଶେଷରେ ପାଠକର ଚିତ୍ତକୁ ଏକ ପରମ ପବିତ୍ର ଶ୍ଳୀଳ ରହସ୍ୟ ଉପଲବ୍ଧିର ପରିବେଶ ଭିତରକୁ ଟାଣିନେବା-ଲାଗି ଉଦ୍ଦିଷ୍ଟ । ମଧୁମକ୍ଷିକାପରି ମୁଁ ସମସ୍ତ ସ୍ଥାନ ଓ ଅସ୍ଥାନରେ ବସିଛି; ମାତ୍ର ଆହରଣ କରିଛି କେବଳ ମଧୁ । ଯେଉଁସବୁ ସ୍ଥାନରେ ନାରୀଙ୍କର ଦୈହିକ ଲାଳସାର ସ୍ପର୍ଶ ଲାଗିଛି—ତାହା ସ୍ଥୂଳ ଏଇ ଦେହ ଲାଗି ନୁହେଁ—ଦେହାତୀତର ଉପଲବ୍ଧି ଲାଗି ।

କେବଳ ସ୍ୱର୍ଗକୁ ନୁହେଁ—ରସୋପଲବ୍ଧିର ସ୍ୱର୍ଗଲୋକକୁ ସ୍ୱଦେହରେ ଯିବାଲାଗି ସମସ୍ତେ ଯୋଗ୍ୟ ନୁହନ୍ତି । କେତେକ ଅଧବାଟରେ ପଡ଼ିବେ ହିଁ

ପଡ଼ିବେ । ଆଉ ଯେଉଁମାନେ ଯୁଧିଷ୍ଠିର, ସେମାନେ ବରଂ ଏଇ ପୃଥିବୀର ଲୋକ—ସେମାନଙ୍କର କାମନା ସ୍ୱର୍ଗ ଲାଗି—ଜୀବନଯାକର ସାଧନା ବି ଏଇ ସ୍ୱର୍ଗ ଲାଗି—ତ୍ୟାଗ ମଧ୍ୟ ଏଇ ସ୍ୱର୍ଗ ଲାଗି—ତଥାପି ସେମାନଙ୍କୁ ଏଇ ପୃଥିବୀରେ ମିଥ୍ୟା କହିବାକୁ ହେବ—ହେଉ ପଛେ 'ନରୋ ବା କୁଞ୍ଜରୋ' ମୁଣ୍ଡ କଟେଇବାକୁ ହେବ—ମୁଣ୍ଡ ଗଣିବାକୁ ହେବ ପୁତ୍ର, ମିତ୍ର, ପିତା, ବନ୍ଧୁଙ୍କ ରକ୍ତରେ ସନ୍ତରଣ କରି—ସିଂହାସନରେ ବସିବାକୁ ହେବ ଏବଂ ପୁନଶ୍ଚ ସବୁ ଛାଡ଼ି ଛୁଡ଼ିଦେଇ—ସ୍ୱର୍ଗ ଲାଗି ମହାପ୍ରସ୍ଥାନର ପଥରେ ଅଗେଇଯିବାକୁ ହେବ । ତା ପୁଣି ସିଧା ମଞ୍ଚରୁ ସ୍ୱର୍ଗକୁ ନୁହେଁ, ଦୈବଙ୍କ ନରକର ପଥ ଦେଇ କେବଳ ସ୍ୱର୍ଗକୁ ଯିବାକୁ ହେବ । ରସସ୍ୱର୍ଗକୁ ଯିବା ଲାଗି ମଧ୍ୟ ଏହି ବାଟ—ଏହି ନିୟମ ।

ବସ୍ତୁତଃ ଏହି ଶିଳ୍ପୀଟି ମଧ୍ୟ ପାର୍ଥିବ ଜୀବ । କିନ୍ତୁ ସେ ମଧ୍ୟ ସ୍ୱର୍ଗକାମୀ—ସ୍ୱର୍ଗପଥର ଯାତ୍ରୀ ଏବଂ ସେହି ନିୟମରେ ମଧ୍ୟ ନର୍କର ପଥ ଦେଇ ତାକୁ ରସ-ସ୍ୱର୍ଗକୁ ଯିବାକୁ ପଡ଼ୁଛି । ପୃଥିବୀର କୁତ୍ସିତ କାମନାବୋଧ ଉପରେ ମଧ୍ୟ ଅନୁଷ୍ଠିତ ହୁଏ ପ୍ରେମର ମହାଯଜ୍ଞ । ଶିଳ୍ପୀର ଲକ୍ଷ୍ୟ କେବଳ ରସ-ସ୍ୱର୍ଗ ପ୍ରାପ୍ତି ।

ଏ ସମ୍ପର୍କରେ ଆଉ ବିସ୍ତୃତ ନିଷ୍ପ୍ରୟୋଜନ । ଏତିକି ରକ୍ଷାକବଚ ଦେଇ ମୁଁ ସେମାନଙ୍କୁ ଛାଡ଼ିଦେଲି । ଯାଅ—ସାବିତ୍ରୀ, ବୀଣା, ମୃଣାଳିନୀ, କନକ, ତିଲୋତ୍ତମା, ହୀରାମଣି, ଇନ୍ଦୁରେଖା ଆଉ ଚପଳା ଯାଅ ! ନିନ୍ଦୁକ-ମାନଙ୍କର ନିନ୍ଦାବାଣ ଆଉ ତୁମମାନଙ୍କୁ କାଟିବ ନାହିଁ । ତୁମେମାନେ କେହି ସତୀ ହୋଇ ରହିପାରିନାହଁ । କିନ୍ତୁ ସତୀତ୍ୱ ଲାଗି ତୁମମାନଙ୍କର କଣ କମ୍ ବୁଭୁକ୍ଷା ? ତୁମମାନଙ୍କର ଜୟ ହେଉ । ତୁମେମାନେ ମୋର ରସଗ୍ରାହୀ ବୁଦ୍ଧିମାନ୍ ପାଠକପାଠିକାମାନଙ୍କର ହୃଦୟ ଜୟ କର । ଖଳ ଓ ବାଳକ ନୀତିଜ୍ଞାନଶୂନ୍ୟ ନିନ୍ଦୁକମାନେ ତୁମ ବାହ୍ୟ ରୂପର ଅଶ୍ଳୀଳ ନର୍କ ଭିତରେ ଆଖି ବୁଜି ପଡ଼ନ୍ତୁ । ବିଦଗ୍ଧ ଓ ସତ୍ୟସନ୍ଧ ପାଠକ ପାଠିକାମାନେ ତୁମମାନଙ୍କ ସୃଷ୍ଟ ରସସ୍ୱର୍ଗରେ ବସି ରସାମୃତ ପାନକରି ଦିବ୍ୟାନନ୍ଦ ଲଭ କରନ୍ତୁ ।

ହାୟ ! ତୁମେମାନେ କେବେ ଅମୃତ ଚାଖି ନାହିଁ । କିନ୍ତୁ ଧନ୍ୟ ତୁମେମାନେ !! ଆଜି ବହୁ ଲୋକଙ୍କୁ ତୁମେମାନେ ଅମୃତ ହିଁ ପରିବେଷଣ କରିବ ।

× × × ×

ପରିଶେଷରେ କେହି ଯଦି ପ୍ରଶ୍ନ କରନ୍ତୁ—"ଲେଖକ ! ଏ ବହି ତୁମେ ତୁମ ପୁଅଝିଅଙ୍କ ହାତକୁ ଦେବ ତ ?"

ମୁଁ ଶିକ୍ଷକୋଚିତ ଓ ପିତୃଜନୋଚିତ ଗାମ୍ଭୀର୍ଯ୍ୟ ରକ୍ଷା କରି ଉତ୍ତର ଦେବି—'ନିଶ୍ଚୟ ଦେବି । କିନ୍ତୁ ସେମାନେ ଏକୋଇଶ ବର୍ଷ ଅତିକ୍ରମ କଲା ପରେ ।" (କିନ୍ତୁ ଏ କଥା ବି ନିଶ୍ଚିତ ଯେ, ସେତେବେଳକୁ ମୋ ସାହିତ୍ୟ "ବସ୍ତ୍ରମାଦ୍ରୀ" ଅପେକ୍ଷା ବହୁ ଉଚ୍ଚକୋଟୀର ଲେଖାରେ ସମୃଦ୍ଧ ହୋଇ-ଯାଇଥିବ । ତେଣୁ ସେମାନଙ୍କ ପକ୍ଷରେ ଏ ବହି ପଢ଼ି ସମୟ ନଷ୍ଟ କରିବା ଉଚିତ ହେବ ନାହିଁ । )

× × × ×

ବର୍ତ୍ତମାନ ଧନ୍ୟବାଦ ଅର୍ପଣ କରିବାର ସମୟ ଆସିଗଲା । ଆଗରୁ ପ୍ରକାଶକଙ୍କୁ ତାଙ୍କର ପ୍ରାପ୍ୟ ଦେଇସାରିଛି । ଶେଷରେ ଏ ବହିଟିର ପ୍ରଚ୍ଛଦପଟ୍ଟ ଚିତ୍ର ଅଙ୍କନର ସୂଚନା ଦେଇଥିଲେ ଅଧ୍ୟାପକ ବନ୍ଧୁ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଏବଂ ବହୁ ସମୟ ବ୍ୟୟ କରି ସେହି ସୂଚନାକୁ ରେଖା ଓ ରଙ୍ଗରେ ବ୍ୟାଖ୍ୟା କରିଥିଲେ କବିବନ୍ଧୁ ଶ୍ରୀଯୁକ୍ତ ବେଣୁଧର ରାଉତ । ସେ ଦୁହିଁଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ମୋର ଛାତ୍ର ଓ କୁଟୁମ୍ବ ଭିତରୁ ଶ୍ରୀମାନ୍ ଚନ୍ଦ୍ରମଣି, ଶ୍ରୀମାନ୍ ସୁରଥ, ଶ୍ରୀମାନ୍ ଘନଶ୍ୟାମ, ଶ୍ରୀମାନ୍ ରାଘବ ଓ ଶ୍ରୀମାନ୍ ଗୋପୀନାଥ (ଷଡ଼ଙ୍ଗୀ) ଏହି ପୁସ୍ତକର ପାଣ୍ଡୁଲିପି ପ୍ରକାଶ ଲାଗି ନକଲ କରିଥିବାରୁ ଏ ପୁସ୍ତକ ସହିତ ସେମାନଙ୍କର ନାମ ସଂଯୋଗ କରି ମୁଁ ଆନନ୍ଦ ଲାଭ କରୁଛି । ଇତି ।

ବାରିପଦା,
ଶ୍ରୀପଞ୍ଚମୀ
ତା ୯ । ୨ । ୭୨

**ମହାଚାର୍ଯ୍ୟ ନୀଳମଣି ସାହୁ**

# ଦ୍ୱିତୀୟ ସଂସ୍କରଣର ଭୂମିକା

"ଯନ୍ତ୍ରମାୟା"ର ପ୍ରଥମ ସଂସ୍କରଣ ଶେଷ ହୋଇଗଲା ପରେ ମୋର ବଦର୍ଧ ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର ଏହାର ଏକ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶ କରିବାକୁ ମନସ୍ଥ କଲେ । ସେ ଦୃଷ୍ଟିରୁ ଶେଷ ତିନୋଟି ଗଳ୍ପ ଏଥିରେ ସନ୍ନିବିଷ୍ଟ କରାଗଲା । ମୋର ବିଶ୍ୱାସ, ଶେଷ ତିନୋଟି ଗଳ୍ପ ମଧ୍ୟ ରସ-ଚେତନାରେ ଅନ୍ୟାନ୍ୟ ଗଳ୍ପଗୁଡ଼ିକର ପ୍ରାୟ ସମଧର୍ମୀ ।

ମୋର ପାଠକପାଠିକା ଏହି ସଂସ୍କରଣଟିକୁ ସମାଦର କରିବେ ବୋଲି ଆଶା କରୁଛି ।

**ମହାପାତ୍ର ନୀଳମଣି ସାହୁ**

କଟକ

ଶ୍ରୀପଞ୍ଚମୀ

ତା ୩୦ । ୧ । ୭୧

# ତୃତୀୟ ସଂସ୍କରଣ ସମ୍ବନ୍ଧେ ପଦେ

ଏ ବର୍ଷର ଦୁଇଟି ସଂସ୍କରଣ ଯଥାସମୟରେ ଶେଷ ହୋଇଯିବାରୁ ପ୍ରକାଶକ ଏଥର ଆଉ ଗୋଟିଏ ସଂସ୍କରଣ କରୁଛନ୍ତି ଶୁଣି ଖୁସି ହେଲି । ଏଥିଲାଗି ମୋର ପ୍ରକାଶକ ଓ ପ୍ରିୟ ପାଠକପାଠିକା ମାନଙ୍କୁ ଆନ୍ତରିକ ଶ୍ରଦ୍ଧା ଓ କୃତଜ୍ଞତା ଜ୍ଞାପନ କରୁଅଛି । ଏ ସଂସ୍କରଣ ପାଇଁ ମୋର ପ୍ରିୟବନ୍ଧୁ ବିଶିଷ୍ଟ ସାହିତ୍ୟିକ ଓ ସମାଜସେବୀ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ରଙ୍କ ଶ୍ରଦ୍ଧାପୂର୍ଣ୍ଣ ସାହାଯ୍ୟ ସହଯୋଗ ମୋତେ ତାଙ୍କ ପାଖେ ଋଣୀ କରି ରଖିଛି ।

ଓଡ଼ିଆଙ୍କର ସାହିତ୍ୟ ପଠନ ରୁଚି ବଢ଼ି ଚାଲିଛି—ଏହାହିଁ ମୋ ପକ୍ଷରେ ଖୁବ୍ ଆଶାପ୍ରଦ କଥା ।

ଶ୍ରୀ ଜଗନ୍ନାଥ ମୋର ପାଠକପାଠିକାଙ୍କୁ କୁଶଳରେ ରଖନ୍ତୁ ।

**ମହାପାତ୍ର ନୀଳମଣି ସାହୁ**

ଶ୍ରୀଚୁଣ୍ଡି କୁଟୀର
ଭୁବନେଶ୍ୱର

ତା ୭ । ୭ । ୧୯୭୮

Digitized by srujanika@gmail.com

## ବସ୍ତୁମାୟା

ଲୁହରେ ଫୋଡ଼ ଫୋଡ଼ ପାଦରୁ କେଜାଣି ଖଣ୍ଡିଆ ହୋଇ ଗଲଣି ସାବିତ୍ରୀର । କିନ୍ତୁ ପାଦରୁ କଣ୍ଟାଟା ବାହାରୁନାହିଁ । କେତେ ଗହୀରକୁ ପଶି-ଯାଇଛି କଣ୍ଟାଟା ! ଯେତିକି ତାକୁ କାଢ଼ିବାକୁ ବସୁଛି କଣ୍ଟାଟା ସେତିକି ସେତିକି ଭିତରକୁ ପଶି ପଶି ଯାଉଛି । ବିରକ୍ତ ହୋଇଉଠିଲା ସାବିତ୍ରୀ ।

"ମଲା, ଏ କନିଆଁ ଲଗା ଜୀବନଟା ! ଏତିକି ହନ୍ତସନ୍ତ କେଉଁଠି ଏ କପାଳରେ ଅଛି !! ଏତିକି ଟିକେ କଣ୍ଟା—ତାର ଫେର୍ ଗଉଁ ଦେଖ ! ଚାଲିଲେ ପାଦରେ ବାଜୁଛି, ଆଉ ପାଦରୁ ଗଲଣି ଫାଟି । ଏଣେ ଯେତିକି କାଢ଼ୁଛି ସେତିକି ଗହୀରକୁ ପଶି ପଶି ଯାଉଚ ।" ଫୋପାଡ଼ି ଦେଲା ରାଗରେ ଲୁହଟା ସାବିତ୍ରୀ ।

"କଣ୍ଟା କଣ ସହଜରେ ବାହାରେ ଲାଉଜ ? ଦେହରେ ଥରେ କଣ୍ଟା ପଶିଲେ ଆଉ ତାକୁ ଖୋଳି ତାଡ଼ି ବାହାର କରିବା ମୁସ୍କିଲ । ଦେହକୁ କାଟିବ, କଣ୍ଟା ବାହାରିବ ନାହିଁ ।"—ସ୍ୱାମୀର ରୁମାଲରେ ଫୁଲ ପକାଉ ପକାଉ ହସି ହସି କଥା ପଦିକ ହାଣିଲା ତିଲୋତ୍ତମା ।

"କଣ୍ଟା ଫେର୍ ଦେହରେ ପଶେ କାହିଁକି ?"

ଶୁଖିଲା ମୁହଁରେ ସାବିତ୍ରୀର ନକଲି ହସ ଉକୁଟିଲା ।

"ପଶିବ ନାହିଁ ? ଅପଥରେ ଚାଲିଲେ କଣ୍ଟା ପଶିବତ !! ଆମ ଗୋଡ଼ରେ ଆଉ କଣ୍ଟା ପଶୁନାହିଁ ?"

"ବାଟରେ ତ ଫେର୍ ବେଳେ ବେଳେ କଣ୍ଟା ପଡ଼ିଥାଏ ?"

ସାବିତ୍ରୀର ଆଖି ଛଳ ଛଳ ।

"ବାଟରେ କଣ୍ଟା ପଡ଼ିଥିଲେ ଆମେ ସବୁ କଣ୍ଟାକୁ ବାଟରୁ ଅଡ଼େଇ-

ଦେଇ ଗୃଲ୍ । ଆଖି ବୁଜନ୍ତ ଆଉ କେହ୍ୱ ବାଟ ଗୃଲେନା ଭଉଜ ! ଆଖି ଥିଲେ କଣ ଆଉ କଣ୍ଟା ଦଶିବନ ଆଖିକ ?" ଏତକ କହ୍ୱ ଢଲୋଉମା ସାବଣୀକୁ ଟିକେ ବାଙ୍କ ଗୃହ୍ନାଣୀରେ ଗୃହ୍ୱ ଆର ଦୁଆରକୁ ଗୃଲଚଲ । ବାଜୁଛ—ଠିକ୍ ବାଜୁଛ—ତାର ପାଦର କଣ୍ଟା ଠାରୁ ଢଲୋଉମାର କଥାର କଣ୍ଟା ଯେ ବେଶୀ ମୁନଆଁ, ଆଉ ତାକୁ ବେଶୀ କଷ୍ଟ ହେଉଛ—ଏତକ ବୁଝିପାଣ—ଏତକରେ ବୋଧହୋଇ ଢଲୋଉମା ଗୃଲଗଲ ।

ସେ ଗୃଲଗଲ ପରେ ସାବଣୀ ଗମ୍ଭୀର ନିଃଶ୍ୱାସ ଗ୍ଭଡ଼ଲ । ତଲକୁ ମୁହଁ ପୋତ ନଖରେ ଭୂଇଁ ଚରୁ ଚରୁ ସେ ଖାଲି କାନ୍ଦ ଲଗିଲ । ସତେ କଣ ସେ କରୁଛ ଜୀବନରେ ଯେଉଁଥିପାଇଁ ତାକୁ ପଳେ ପଳେ ମରିବାକୁ ପଡ଼ୁଛ ପ୍ରତିଦିନ ? ନିଜ ପାପ ନିଜକୁ ଖାଉଛ । ସାଇପଡ଼ଶାଏ—ପିଲ, ଟୋକା, ବୁଢ଼ା ସମସ୍ତେ ଆଜ ସାବଣୀକୁ ଯାଉଣୁ ଆସୁଣୁ ପଦେ ପଦେ ହାଣନ୍ତି । ମୁଣ୍ଡ ଟେକ ବାଟ ଗୃଲପାରେନ ସାବଣୀ । କଅଣ ସେ ଏମିତ ସତରେ କଣ ପକେଇଛ !

କଅଣ କରିଛ ? ହୁଁ, କଅଣ ଆଉ ନ କରିଛ ସେ ? ଆଉ କରିବାକୁ ବାକ ଅଛ କଣ ? ଏ ଘରର ସେ ବୋହୂ ହୋଇ ଆସିଥିଲ—ସୀମନ୍ତରେ ସିନ୍ଦୂର—କପାଳରେ କୁଙ୍କୁମ—ମଣିବନ୍ଧରେ ଶଂଖା—ମୁଣ୍ଡରେ ଓଢ଼ଣା—କୁଳବଧୂ—କୁଳବଧୂ ଏଇ ସାବଣୀ । ଆସିବାର ପାଞ୍ଚଟି ବରଷ ପୂରି ନାହିଁ । ସ୍ୱାମୀକୁ ସେ ଖୁବ୍ ଭଲପାଉଥିଲ । ସେ ବି ତାକୁ କମ୍ ଆଦର କରୁନଥିଲେ । ଥରେ ସ୍ୱାମୀ ଖୁବ୍ କଠିନ ବେମାର ପଡ଼ଲେ । ବହୁତ ସେବା ଶୁଶ୍ରୂଷା କଲ ସାବଣୀ । ସେ ଘାଟିରୁ ଈଶ୍ୱର ଉଦ୍ଧାରଲେ । ରାତ ରାତ ଅନିଦ୍ରା ହୋଇ ସେ ସ୍ୱାମୀର ପାଦ ତଳେ ବସିରହୁଛ ନ ଖାଇ ନ ପିଇ । ସେତ ରୋଗଶଯ୍ୟାରେ ସ୍ୱାମୀ ଦିନେ ତାର ହାତ ଦୁଇଟିକୁ ନିଜ ହାତରେ ଗୃପିଧରି ମୁହଁ ପାଖକୁ ନେଇ କହଲେ, "ସାବଣୀ ! ରାଣୀ ମୋର, ତୁମେ ମୋର ପ୍ରକୃତରେ ସାବଣୀ ! ଏ ହତଭାଗ୍ୟ ସତ୍ୟବାନ ଆଜ ତୁମରି ଯୋଗୁ ଯମ ହାତରୁ ମୁକୁଳିଛ ।" ଆଖିରୁ ଲୁହ ବୁହାଇ ସାବଣୀ କହଥିଲ, "ଏମିତ କଥା କହ-ନାହିଁ—ଜଗନ୍ନାଥେ ଦଣ୍ଡଲେକ ।"

ତା'ପରେ ଦିନ ଚାଲିଲା । ସ୍ୱାମୀ ଗଲେ ବିଦେଶ । ପ୍ରଥମେ ପ୍ରଥମେ ପ୍ରତି ଶନିବାରେ ରବିବାରେ ଆସୁଥିଲେ । ମାତ୍ର କ୍ରମେ ସେତିକ ବନ୍ଦହେଲା । ମାସ ମାସ ବିତିଗଲା । ତାଙ୍କର ଦେଖା ନାହିଁ । ଚିଠି ବି ଖଣ୍ଡେ ନାହିଁ । ରାତି ନ ପାହୁଣୁ ସାବିତ୍ରୀର ନିଦ ଭାଙ୍ଗିଯାଏ । ଦିନେ ଦିନେ ନିଦ ବି ହୁଏନି । ସେ କଅଣ ଆଉ ଆସିବେ ନାହିଁ ? ଝରକା ବାଟେ ଚାହିଁରହେ ସାବିତ୍ରୀ । ନଡ଼ିଆ ବଗିଚା ପଛରେ ବଙ୍କା ଜହ୍ନ ଅସ୍ତଯାଏ । ସେଇ ମଳିନଜହ୍ନର ବିବର୍ଣ୍ଣ ଅସ୍ତ ଦୃଶ୍ୟକୁ ଚାହିଁ ଚାହିଁ ଏକୁଟିଆ ସାବିତ୍ରୀ ବିଛଣାରେ ଛଟପଟ ହୁଏ— ଫୁଲି ଫୁଲି କଇଁ କଇଁ ହୋଇ କାନ୍ଦେ । ସେ କଅଣ ଆଉ ଆସିବେ ନାହିଁ ? ସେ କଅଣ ମୋତେ ଆଉ ସୁଖ ପାଉନାହାନ୍ତି ?

× × × × ×

"ଭାଇ ଆଉ ଆସିବେ ନାହିଁ ଭାଉଜ—ତାଙ୍କ କଥା ଛାଡ଼—ଭୁଲିଯାଅ ତାଙ୍କ କଥା ମନରୁ । ସେ ଯେମିତି ତୁମକୁ ମନରୁ ପାସୋରି ଦେଇଛନ୍ତି, ତୁମେ ବି ସେମିତି ତାଙ୍କୁ ପାସୋରି ପକାଅ ।"—କଥାରେ କାରୁଣ୍ୟ ଓ ସମବେଦନାର ସ୍ୱର ଆଣି ଆର ସାଇ ବିଷ୍ଣୁ ଆସନ୍ତି । ଲେଖାରେ ଦିଅର ହେବେ । କଟକ କଲେଜରେ ବି. ଏ. ପଢ଼ନ୍ତି । ବାହା ହୋଇନାହାନ୍ତି । ରୋଜଗାର ନକଲେ ବାହା ହେବେନାହିଁ । ଘର ନଚୋଳ ଘରଣୀ ଆଣି ଲାଭ କଅଣ ? ଦେଖିବାକୁ ସୁନ୍ଦର ସ୍ୱାସ୍ଥ୍ୟବାନ୍ ସୁପୁରୁଷ । କେତେ ପ୍ରେମ-କବିତା ମୁହେଁ ମୁହେଁ ଗାଇଯାନ୍ତି । କେତେ ଉପନ୍ୟାସ—କେତେ ଗଳ୍ପ ! କଥାର ଭଙ୍ଗୀ ସୁନ୍ଦର । ଚାଲିର ଢଙ୍ଗ ସୁନ୍ଦର । ସାବିତ୍ରୀ ପାନ ଭାଙ୍ଗିଦିଏ । କ୍ରମେ ଘଣ୍ଟାଏରୁ ଦିଘଣ୍ଟା—ଚାରିଘଣ୍ଟା—ଛ ଘଣ୍ଟା—ଶେଷକୁ ଦିନଯାକ । ଗଣ୍ଡିଏ କେବଳ ଖାଇଦେଇ ଭାଉଜ ପାଖେ ହାଜର । ଗପସପ—ଥଟ୍ଟା ତାମସା—ହସ କୌତୁକ । ସାବିତ୍ରୀ ଭୁଲିଗଲା । କଣ୍ଟା ହାଣ୍ଡି—କଣ୍ଟା ମନ—ଗାର ପଡ଼ିବାକୁ କେତେ କ୍ଷଣ ? ପହିଲୁ ପହିଲୁ କାନଘୋଷରା—କାନ-ଘୋଷରା—ହାତଧରା—ମନଧରା । ଶେଷକୁ ରହିଲା ଦାଗ ଖାଲି ଦେହ ।

ଦିନେ ରାତି ଅଧରେ—ଆଷାଢ଼ ମାସର ମେଘୁଆ ରାତି । ବାହାରେ


Digitized by srujanika@gmail.com

ଘଡ଼ଘଡ଼ ବଜ୍ରଲ—ଚ୍ଛୁ ଚ୍ଛୁ ଆଷାଢ଼ ଅସରା । ଭୃହାଲୁ ଭୃହା ମେଘ ମାଡ଼ିଅସୁଚ । ବଷ୍ଟୁ ଆସିଲେ । ଅନ୍ଧାରରେ ପାଦ ଚପି ଚପି, ଚୋର ପରି ସେ ଆସିଲେ । ସାବିତ୍ରୀକୁ ନିଦ ହୋଇନି । କବାଟରେ ଶବ୍ଦ ।

—କିଏ ?

—କବାଟ ଖୋଲ, ଚନ୍ଦ୍ରିବ । ମୁଁ ବଷ୍ଟୁ ।

—ତୁମେ ? ଏତେ ରାତିରେ କାହିଁକି ?

ଧଡ଼ାସ୍ କିନା କବାଟ ଖୋଲିଲା ସାବିତ୍ରୀ ।

—ଜାଣିପାରୁନ କାଇଁକି ? ଦିନରେ ଯାହା ନ ମିଳିଛି ରାତିରେ ତାକୁଇ ତ ମଣିଷ ସ୍ୱପ୍ନ ଦେଖେ ।

—କିନ୍ତୁ ଏ କଅଣ ତୁମର କେବଳ ସ୍ୱପ୍ନ,ବଷ୍ଟୁ ?

—ହଁ ସ୍ୱପ୍ନ । କିନ୍ତୁ ସ୍ୱପ୍ନ ବି ତ ଥରେ ଥରେ ସତ୍ୟ ହୁଏ ?

—ନାଁ—ନାଁ—ତୁମର ଏ ଦୁଃସ୍ୱପ୍ନ । ତୁମେ ଫେରିଯାଅ—ବଷ୍ଟୁ ! ତୁମ ପାଦ ଧରୁଚି ।

ସାବିତ୍ରୀ ବଷ୍ଟୁର ପାଦ ତଳେ ମୁଣ୍ଡି ଆମାଇଲା କାନ୍ଦ କାନ୍ଦ ।

—ମୁଁ କିନ୍ତୁ ତୁମର ଓଠ ଧରୁଚି ସାଉଜ—ମୋତେ ନିରାଶ କରନାହିଁ—ମୁଁ ମରିଯିବି ।

—ତା ପୂର୍ବରୁ ମୁଁ ମରିଯାଏ ବଷ୍ଟୁ—ମୁଁ ବିବାହିତା ମୋର ସ୍ୱାମୀ ଅଛନ୍ତି । ଓଃ, ବଷ୍ଟୁ, ମୋତେ······

—ଓ···ସତୀତ୍ୱ କଥା କହୁଚ ସାଉଜ ? ତୁମେ ଯେତେ ସତୀ ହୋଇ ମଲେ ବି କେହି ତୁମର ଜୀବନୀ ଲେଖିଯିବେନି କି କେହି ତୁମର ନାମ ଧରି ସକାଳୁ ପାପ ମୁକ୍ତ ହେବେନାହିଁ । ପୁରାଣର ସତୀ ତାଲିକାରେ ସୀତା, ସାବିତ୍ରୀ ନାହାନ୍ତି—ଅଛନ୍ତି ଅହଲ୍ୟା, ତାରା, ଦ୍ରୌପଦୀ, କୁନ୍ତୀ ଆଉ ମନ୍ଦୋଦରୀର ଦଳ ।

ବଷ୍ଟୁ ସାବିତ୍ରୀର ହାତ ଧରିଲା ।

—ବନ୍ଧୁ—ବନ୍ଧୁ—ମୋର ସୁନା ଭାଇଟି—ମୋର ରକ୍ତଟି ! ତୁମେ ଏ ବାତୁଳ ବୁଦ୍ଧି ଛାଡ଼—ଛୁ—ବନ୍ଧୁ—ଛୁ ! ସାବିତ୍ରୀର କଥା ନସରୁଣୁ ବନ୍ଧୁ ଓଠର ତତଲ ବାମ୍ଫ ସାବିତ୍ରୀର ଦେହ ଆଉ ମନକୁ ସଙ୍ଗେ ସଙ୍ଗେ ତରଳ କରିପକାଇଲା । ସେ ନିଜର ସାମର୍ଥ୍ୟ ହରାଇବସିଲା ।

× × ×

କିନ୍ତୁ ସେଥିକରେ ସାବିତ୍ରୀ ବହୁ ମୂଲ୍ୟବାନ୍ ଧନ ହଜାଇଦେଇଛୁ । ଯାହା ଯାଇଛୁ ଆଉ ସେ ଫେରିବନାହିଁ । ମାଛ ପୋଖରୀରେ ଥରେ ଓଧ ପଶିଲେ ତେଣିକି ମାଛ ପୋଖରୀ ଗୁର୍ଦ୍ଦ ଗୁର୍ଦ୍ଦ ଗୋଳ ହୋଇଉଠେ । ସାବିତ୍ରୀର ତାହାହିଁ ହୋଇଛୁ । ନାଳୀ ଥରେ ତଳକୁ ପାଦ ଖସାଇଲେ କ୍ରମେ ତଳକୁଇ ଖସେ । ସାବିତ୍ରୀର ଦେହ ଓ ମନର ସୁଯୋଗ ନେଲା ବନ୍ଧୁ । ଅନେକ ଥର ସାବିତ୍ରୀର ବାଟରୁ ଗୋଡ଼ ଖସିଛୁ । ଏଥର ସେ ଖାଲ ପଡ଼ିବ ।

ବନ୍ଧୁ ଚାଲିଯାଆନ୍ତି କଟକ । ତାଙ୍କର ଛୁଟି ସରିଯାଏ । ତା ପରେ ଡ଼ାକଘରକୁ ଉତ୍କଣ୍ଠାରେ ଚାହିଁରହେ ସାବିତ୍ରୀ । ସ୍ୱାମୀ ଚିଠି ଦିଅନ୍ତି ନାହିଁ, କିନ୍ତୁ ବନ୍ଧୁ ଦିଅନ୍ତି । ଫି ସପ୍ତାହରେ ଚିଠି ଆସେ । ନେଳୀ ନାଲି ଗୋଲାପୀ ଚିତ୍ର ବିଚିତ୍ର କେତେ ପ୍ରକାର ଲଫାଫା । ସାବିତ୍ରୀ ସବୁ ପଢ଼େ, ମନଦେଇ ପଢ଼େ—ବିରକ୍ତ ଲାଗେ । କାହିଁକି ମୋ ପଛରେ ଏତେ ଲାଗିଛନ୍ତି ବନ୍ଧୁ ? ଏଥିକରେ କଣ ତୃଷା ମେଣ୍ଟିନାହିଁ ? ପାଇଲେ ଲୋକେ ଏହିପରି ହୁଅନ୍ତି । ଖାଇଲା ଘର ପୁଅ ଦେଖି ରଙ୍କ ।

ବନ୍ଧୁ ପାଖରୁ ଉତ୍ତର ଆସେ—"ଏ ତୃଷା ମେଣ୍ଟିବାର ନୁହେଁ ଭାଉଜ ! ସାମାନ୍ୟ ତୃଷା ସିନା ଗିଲାସେ ପାଣିରେ ମେଣ୍ଟେ କିନ୍ତୁ ଯେ ସାତସମୁଦ୍ରକୁ ଚଳୁକଲାବାଲା—ତାର ସେ ଅଗସ୍ତି-ତୃଷା କଣ ଏଥିକରେ ମେଣ୍ଟିବ ? ମନେ ମନେ ହସେ ସାବିତ୍ରୀ ।

କଲେଜ ପଢ଼ୁଆ ମୁଣ୍ଡ—ଏଡ଼େ ଟିକେ ଟୋକା—ବୟସ ଅଠର ଉଣେଇଶି ହବ—ପୁଚୁ ପୁଚୁ ଗାଲ । ପାଖରେ ଥିଲେ କେତେ ଅଳି କରିବ ।

ପଣ୍ଡିତ ଘୋଡ଼ାଇଦେଲେ ବୋଲି ଘିଲଟି ଘର ନଦରେ କୃତଜ୍ଞତାରେ ଆଖି ବୁଜି ଘୂଢ଼ୁ ଘୂଢ଼ୁ ହେବ । ଆଉ କଥା—କଏ ଧାରେବ ତାକୁ କଥାରେ ! ଗଛରୁ ତୋଳ ଆଣି କଥା କହିବ । ବରକ୍ତ ଲଗେ—ଭଲ ବି ତ ଲଗେ !!

ବଷ୍ଟୁ ଲଗି ମାସ୍ବା ହୁଏ ସାବନ୍ତୀର । ବଖ୍ୱେର ଆଖିରେ ତାର ମମତାର ପରଳ ମାଡ଼ିଆସେ । ସେ ଘୁମାଇପଡ଼େ । ସ୍ୱପ୍ନ ଦେଖେ ବଷ୍ଟୁକୁ କୋଳରେ ଜାକି ସେ ଶୋଇପଡ଼ିଛି, ଆଉ ଆରପାଖେ ସ୍ୱାମୀ କେତେବେଳୁ ଆସି ତଳେ ମସିଣା ପାରି ଶୋଇପଡ଼ିଛନ୍ତି । ଆହା ବିଚରା !! ଝଡ଼ିଗଲଣି ଦେହ—ଶୁଖି-ଯାଇଛି ମୁହଁ—ଗୁଡର ପଞ୍ଜରା ଦିଶୁଚି—ପାଟିରୁ ଗରଳ ବୋହି ତକିଆ ଓଦା ।

ନିଦରେ ବିଳବିଳେଇ ଉଠେ ସାବନ୍ତୀ । ଏଡ଼େ ପାଟିରେ ଚିତ୍କାର ଗୁଡ଼େ । କିନ୍ତୁ କେହି ଶୁଣିପାରନ୍ତିନି ସେ ଚିତ୍କାର । ଉଠି ଦେଖେ—କୋଳରେ ବିଲେଇ ଛୁଆଟା ଘୂଢ଼ୁ ଘୂଢ଼ୁ ହେଉଚି—ସପନଟା ସତ ନୁହେଁ । ଆଶ୍ୱସ୍ତ ହୁଏ ସାବନ୍ତୀ । କିନ୍ତୁ ମନଟା ଛଟପଟ ହୁଏ—ଗୁଡଟା ଧଡ଼ପଡ଼ ହୁଏ ।

ବିଲେଇ ଛୁଆ ପୁଣି ଡ଼ାକେ "ମେଉଁ, ମେଉଁ ।"

ଗୋଡ଼ରେ ଠେଲି ଫୋପାଡ଼ିଦିଏ ସାବନ୍ତୀ ।

"ନିଆଁ ଲଗା—ପୋଡ଼ାମୁହଁ । ବିଲେଇ !!

ପାଟର ଜିଭ ନାହିଁ—କିନ୍ତୁ ସେ କଥା କହେ । ସାବନ୍ତୀର ପାପ ବି କଥା କହିଲା । ବଷ୍ଟୁ ବାହା ହେଲେ । ବାଣ ଶ୍ରେଣୀ, ବାଜା ବଜନ୍ତ୍ରୀ । ଦାନ ଯୌତୁକ—ଖୀରି ପିଠା । ଫାଟିପଡ଼ିଲା ଗାଁ । ଦାଣ୍ଡ—ଆକାଶ । ନୂଆ-ବୋହୂଟିଏ ହୋଇ ସେ ଦିନ ଆସିଲା ଧଳୋଉମା । ଗାଁରେ ସଭିଙ୍କ ତୁଣ୍ଡରେ ଗୋଟିଏ କଥା—ବଷ୍ଟୁଙ୍କ ଭାରିଯା ରୂପରେ ଯେମିତି ଗୁଣରେ ବି ସେମିତି ।

ସାବନ୍ତୀ ସବୁ ଶୁଣେ । ଯାହାହେଉ ଭଲହେଲା ।

ପୁରୁଷ ପୁଅର ଡ଼େଣା ଯୋଳହେଲେ ସେ ଆଉ ଉଡ଼ିପାରେ ନାହିଁ—ବସା ଖୋଜେ । କିନ୍ତୁ ସାବନ୍ତୀକୁ ଯେଉଁ ଅପଥରେ ସେ ଗୁଡ଼ ଦେଇଗଲା ସେ

ଅପଥରୁ ଆଉ ସେ ମୁକୁଳି ପାରିଲା ନାହିଁ । ସେଇଁ ମୋହର ସେ ସାବିତ୍ରୀ ଦେହରେ ଛାପିଦେଇ ଗଲା ସେ କାଳି ଆଉ ତା ଦେହରୁ ଲିଭିଲା ନାହିଁ— ଲିଭନ୍ତା ବି ନାହିଁ ।

× × ×

ବସନ୍ତ ଗଲେ ଗ୍ରୀଷ୍ମ ଆସିଲେ । ଗ୍ରୀଷ୍ମ ଗଲେ ବର୍ଷା ଆସିଲେ । ସମସ୍ତେ ଯେଝାର ଛାପ ଛାପିଦେଇଗଲେ ସାବିତ୍ରୀର ଦେହ ଆଉ ମନରେ । ସେଇ ଅପର୍ଯ୍ୟାପ୍ତ ମୁଦ୍ରା-କାଳିମାକୁ ଦେଖି ଦେଖି କେତେ ଗ୍ରୀଷ୍ମ, କେତେ ବର୍ଷା, କେତେ କାହ୍ନ, କେତେ ମଧୁ ଯେ ତାର କାଳିମଖା ଦେହ ଆଉ ମନରେ ଛାପ ଦେଇଗଲେ ତାର ସୀମା ନାହିଁ । ଫଳରେ ସାବିତ୍ରୀର ସର୍ବାଙ୍ଗ କେବଳ କଳାରେଇ ପୂର୍ଣ୍ଣ ହୋଇଗଲା ।

ସାବିତ୍ରୀ ହେଲା ଅପରା—ବହୁପୀ । ବୃକ୍ଷର ଶାଖା ଅଛି ସେ ବହୁପୀ । ସାବିତ୍ରୀର ବି ଶାଖା ଅଛି, ତେଣୁ ସେ ମଧ ବହୁପୀ । ବୃକ୍ଷ ବହୁପୀ କାରଣ ସେ ଆଶ୍ରୟ ଦିଏ । ଯେତେ ଶାଖା ସେ ବିସ୍ତାର କରେ ଆଶ୍ରୟସ୍ଥଳୀ ତାର ସେତିକି ଆୟତନରେ ବଢ଼ିଯାଏ । ଲୋକେ ଘନଶାଖା ବୃକ୍ଷ ମୂଳରେ ଆଶ୍ରୟ ନିଅନ୍ତି—ପୁଣି ବହୁପୀ ବୋଲି ତାକୁ ହାଣନ୍ତି ଜାଳନ୍ତି । ସାବିତ୍ରୀର ବି ଅବିକଳ ସେଇଆ ହୋଇଛି । ସେ ଶାଖା ମେଲେଇଛି—ଆଶ୍ରା ଦେଇଛି କେତେ ନିରାଶ୍ରୟଙ୍କୁ । ସେ ପଣତ ତଳେ ଘୋଡ଼ାଇ ରଖିଛି । କେତେ କାଙ୍ଗାଳଙ୍କୁ ସେ ଦେହରୁ ପଲପଲ ମାଂସ ପରଶି ଆକଣ୍ଠ ଭୋଜନରେ ତୃପ୍ତ କରିଛି—ଆଉ ସେ ହଣା ଖାଆନ୍ତା ନାହିଁ ?

ଆଜି ଏବେ ଏହା ବନ୍ଧ୍ୟା ଖରପା ଢଳୋଉଛି ତାକୁ କଥାରେ ହାଣୁଛି । ତା ସେ ହାଣିବ ତ !! ସାବିତ୍ରୀ ବି ବେଳେ ବେଳେ କାନ୍ଦେ । ସ୍ୱାମୀ ଆଉ ଘରକୁ ନାହାନ୍ତି । ଆଶା ଛାଡ଼ିଦେଲଣି । ସାବିତ୍ରୀର ଅବଶ୍ୟ ଖାଇବାକୁ ଅଭାବ ନାହିଁ, କିନ୍ତୁ ମଣିଷ କଅଣ କେବଳ ଖାଇକରି ବଞ୍ଚେ ?

ସତେ କଅଣ ହେଲା ?

ଲୋକେ ତାକୁ ପାଖ ପୂରନ୍ତ ନାହିଁ । କାହାର ସାଙ୍ଗେ ସେ ମିଶି ପାରେ ନାହିଁ । ସେତେବେଳେ ଦେହରେ ଥିଲା ଭରା ଯୌବନ—ମନରେ ଥିଲା ବସନ୍ତର ଉତ୍ତାପ । ସେତକ ସେ ସାରଦେଇଛି । ଅପବ୍ୟୟ—ଅପବ୍ୟୟ ! ସାବିତ୍ରୀ ତାର ନାରୀତ୍ୱର ଅପବ୍ୟୟ କରିଛି । ବାହୁନ ଉଠେ ସାବିତ୍ରୀ ।

ହେ ଅସତୀ !

ଯାହା ସେ ହଜାଇ ଦେଇଛି ଆଉ ସେ ତାକୁ ଫେରି ପାଇବନାହିଁ ?

ବିଷ୍ଣୁ ଗୋଟିଏ ପିଲାର ବାପ ହେଲା । ଉଦ୍ଧେଲାବତୀ ବଡ଼ ଘରର ଝିଅ—ବଡ଼ ଘରର ବୋହୂ—ସତୀ ପତିବ୍ରତା ମୁକୁଟମଣି । ସୀମନ୍ତରେ ସିନ୍ଦୂର ରେଖା ଚକ୍‌ଚକ୍ କରୁଛି—କପାଳରେ ସିନ୍ଦୂର ବିନ୍ଦୁ ତାର ଦୃଢ଼ ଓ ଉଜ୍ଜ୍ୱଳ ସତୀତ୍ୱର ପରିଚୟ ଦେଉଛି । ଗ୍ରୀଷ୍ମ ଫୁଲେଇ ସେ ବାଟ ଗ୍ଧଲେ—ସେ ଠିକ୍ ପଥରେ ଗ୍ଧଲିଛି—ଠିକଣା ଗଛର ଫଳ ଖାଇଛି । ତାର ଦେହ ଓ ମନ ଉଭୟ ସୁସ୍ଥ ସବଳ ଆଉ ନିରାପଦ ।

ମାତ୍ର ସାବିତ୍ରୀ ? ନିଷିଦ୍ଧ ଗଛର ଫଳ ଖାଇ ସେ ଅଜ୍ଞାନ ହୋଇଛି । ଉଦ୍ଧେଲାବତୀ ପ୍ରତି ଈର୍ଷା ହୁଏ ତାର । ଗାଁର ସବୁ ବୋହୂଙ୍କୁ ବି ସେ ଈର୍ଷା କରେ ।

ଉଦ୍ଧେଲାବତୀ ଜାଣେ ସାବିତ୍ରୀ ସ୍ତ୍ରୀଜାତି ଆଖିରେ କଣା କଲା ନାମ ପାଇଛି ପତିଲୋଚନା । ନିର୍ଦ୍ଧନ ପ୍ରତି ଧନୀର ଯେଉଁ ବ୍ୟବହାର—ବିଦ୍ୟାହୀନ ପ୍ରତି ବିଦ୍ୱାନର ଯେଉଁ ବ୍ୟବହାର—ମୋଟ ଉପରେ ଥିଲାବାଲାର ନଥିଲାବାଲା ପ୍ରତି ଯେଉଁ ତାଚ୍ଛଲ୍ୟ, ଯେଉଁ ଅନୁକମ୍ପା, ତାହାହିଁ ଦେଖାଏ ସତୀ ଉଦ୍ଧେଲାବତୀ ଅସତୀ ସାବିତ୍ରୀକୁ । ସାବିତ୍ରୀର ମନ ବିକଳ ହୁଏ ।

ସୁନା ହଜିଲେ ପୁଣି ଥରେ ମିଳିପାରେ, ମାତ୍ର ସତୀତ୍ୱ ଥରେ ହଜିଲେ ଆଉ ଥରେ ମିଳିପାରେନା । ସାବିତ୍ରୀ ଭାବେ—ସତ କଥା, କାଞ୍ଚନ ଅପେକ୍ଷା କାମିନୀର ଦାମ ଖୁବ୍ ବେଶୀ । ଆଜି ନାରୀ ତାର ସୁନା ଗହଣା ଅପେକ୍ଷା ତାର ସୁନା-ଚରିତ୍ରଟିକୁ ବେଶୀ ଜଗିରଖିବା ଉଚିତ ।

କିନ୍ତୁ ଆଉକ ଥାଏ ? ଏଇ ସଦ୍‌ଜ୍ଞାନ କି ଆଉ ନିଜକୁ ଫଳ ଦେଉଛି ?

ଦେଲେ ଆଗରୁ ଦେଇଥାନ୍ତା । ସାବିତ୍ରୀ ବିକଳ ହୁଏ ।

ତିଲୋତ୍ତମା ଯେଉଁଦିନ ଜାଣିପାରିଲା ବିବାହ ପୂର୍ବରୁ ନିଜର ସ୍ୱାମୀ ଏଇ ସାବିତ୍ରୀର ପାପପଙ୍କରେ ବୁଡ଼ିରହିଥିଲେ, ସେଇଦିନୁ ତା ମନରେ ସାବିତ୍ରୀ ପ୍ରତି ଘୃଣା ଓ ବିଦ୍ୱେଷ ଜମିଆସିଲା । ସେ ନିଜେ କିନ୍ତୁ ନିଜର ଜ୍ୱଳନ୍ତ ଚରିତ୍ରରେ ଦୀପ୍ତ, ନିଜର ପରିପୂର୍ଣ୍ଣ ସତୀତ୍ୱରେ ମତ୍ତ । ସେ ତେଣୁ ସାବିତ୍ରୀକୁ କଥାର ବାଣରେ ଆଘାତ କରେ, ତା ଉପରେ ଅତ୍ୟାଗ୍ରହ କରେ । ଆଉ ଯାହାର ସେ ଧନ ନାହିଁ, ବା ଯେ ସେ ଧନକୁ ଜାଣି ଜାଣି ହାତରୁ ଖସେଇଦେଇଚି, ସେ ତ ଏସବୁ ସହିବାକୁ ବାଧ୍ୟ !

ମାତ୍ର ସାବିତ୍ରୀ ଆଉ ଏତେ ସହି ପାରିବ ନାହିଁ । ସ୍ତ୍ରୀ ତ ଆଉ ପଥରରେ ଗଢ଼ା ନୁହେଁ ! ସର୍ବଂସହା ବସୁଧା ତ ଦିନେ ଫେର୍ ସହି ନପାରି କମ୍ପି ଉଠେ—ସ୍ତ୍ରୀଗରେ ବାନ୍ତିକରେ ତରଳ ଲାଭା !

× × ×

ସେ ଦିନ ସନ୍ଧ୍ୟା ପହର ।

ତିଲୋତ୍ତମା ତାର ପିଲାଟିକୁ ଖୋଇଦେଉଚି । ଶ୍ରେଷ୍ଠ ଛୁଆଟି କମା ଖାଉନି—ପାଟିରେ ଦେଲେ ଥୁ ଥୁ କରି ବାନ୍ତିକରୁଚି ।

"ହତଭାଗ୍ୟ ଟୋକା, ମୋ ସାଙ୍ଗେ ଖେଳୁଚି ? ମୋ ସମୟ ବଳିପଡ଼ୁଚି ତୋ ସଙ୍ଗେ ଖେଳିବାକୁ !" ତିଲୋତ୍ତମା ପିଲାର ଗାଲରେ ଠାଏ କିନା ଗୋଟାଏ ଚାପୁଡ଼ା ଲଗେଇଦେଲା । ଭେଁକିନା ରଡ଼ି ଛାଡ଼ିଛି ପିଲାଟା । ପାଖରେ ବସିଛନ୍ତି ବିଷ୍ଣୁ । ଆଖିରେ ସନ୍ତୋଷର ଦୀପ୍ତି—ମୁହଁରେ ଏକ ସୁଖୀ ଗୃହସ୍ଥର ଭାବ । ପିଲାର କାନ୍ଦରେ ବିରକ୍ତ ହେଲା ବିଷ୍ଣୁ ।

"ଏ କଅଣ—ଏ କଅଣ ! ନ ଖାଉଚି ତ ନାହିଁ, ମାରୁଚ ଗୋଟାଏ କଅଣ ? ଏମିତି ଏତେ ଟିକେ ପିଲାକୁ ମାପଣିଆ ଦେଖେଇହୁଉଚ ନା କଣ ?"

"ଯାଃ, ତମେତ ନଇଲେ ଅଇଲ ବାପାପଣିଆ ଦେଖେଇ ହବାକୁ ? ମୋର ଆଉ କାମ ନାହିଁ—ମୁଁ ତାକୁ ବସି ଖେଳେଇକରି ଖୋଉଥିବି !

ଆଉ ନଇଲେ କଅଣ—ମୋ ଦେହ ଟଡ୍ରୋଉଚନ୍ତି !"

ହସ ଓ କ୍ରୋଧର ସମ୍ମିଶ୍ରଣରେ ଢଲୋଢ଼ମାର ମୁଖମଣ୍ଡଳ ଏକ ଅପୂର୍ବ ରୂପ ଧରିଛି ।

ଉଠିଆସିଲେ ବଷ୍ଟୁ । ପିଲପାଖେ ବସି କଅଁ ଲେଇ କହିଲେ, "ଦେଲ୍ ଖାଇଦେଲ୍—ଦେ, ମୋ ବାପାଟାପରି—ମୋ ସୁନାଟାପରି—ଆଁ—ଆଁ— ଆରେ ହାଉଁରେ—ହଁ। ଆ ।" ହସି ହସି ଚୂଟ୍‌କନା ଗିଳିଦେଲ୍ ପିଲଟା ।

"ଦେଖିଲ କେମିତି ଖାଇଲା ? ମୁଁ ଜାଣେ ପରା—ତୁମେ ପିଲକୁ ମାରି, ତା ଉପରେ ଚଢ଼ି ଚଢ଼ି ତାକୁ ଏଇ ଦନ୍ତୁ ଖରାପ କରିଦେବ । ଖାଲି ଜନ୍ମକରିଦେଲେ ମାଆ ହୁଅନ୍ତି ନାହିଁ—ବୁଝିଲ ?"

ହସିଉଠିଲା ଢଲୋଢ଼ମା ।

"ଆରେ ସତେତ—ଏ ଟୋକା ଅବିକଲ ତା ବାପ ଭଳି ହେବ ! ଯେତିକ କଅଁ ଲଉଥିବ, ଯେତିକ ଖୁସାମତ କରୁଥିବ ସେତିକ—" ଢଲୋଢ଼ମା କୃତ୍ରିମ ରାଗ କରି କହିଲା ।

"ସେତିକ ଇଏ କରୁଥିବ, ନାଇଁ ?" ଢଲୋଢ଼ମାର ଚିବୁକକୁ ଚିପିଦେଲ ବଷ୍ଟୁ ।

ସାବିତ୍ରୀର ଆଖିରେ ପଡ଼ିଛି ଏ ସବୁ ଦୃଶ୍ୟ । ବାଟଘର କବାଟ ଆଡ଼ୁଆଳରୁ ଭ୍ରୁକ୍ଷମାରି ସବୁ ସେ ଦେଖିଛି—ସବୁ ସେ ଶୁଣିଛି କାନପାରି । ଏ ଭାଗ୍ୟ କ ସହଜରେ କାହାକୁ ମିଳେ ? କେଡ଼େ ସୁଖୀ ଏ ପରିବାର ! କେଡ଼େ ମଧୁର ଏ ପରିବାରର କଳରବ !! ସାବିତ୍ରୀ ମନେ ମନେ ଗୁଣି- ହେଲା । ସେ ଆଉ ଢଲୋଢ଼ମା—କେତେ ପ୍ରଭେଦ ! ଢଲୋଢ଼ମା ଜଣକୁ ଦେଇଛି ଦେହ—ଜଣକୁ ଦେଇଛି ମନ—ଜଣକ ଉପରେ ନିର୍ଭର ରଖିଛି—ଜଣକୁଇ ବିଶ୍ୱାସ କରିଛି । ଆଉ ଫଳରେ ସେଇ ଜଣକ ହିଁ ତା ହାତରେ ଅମୃତ ଢ଼ାଳିଦେଇଛି । କିନ୍ତୁ ସାବିତ୍ରୀ !!

"ଉଃ !"

ହାରିଯାଇଛି ସେ ଜୀବନର ଏଇ ପଶା ଖେଳରେ । ବାର ଜାଠ

ତେର ଗୋଲ ସମସ୍ତଙ୍କୁ ସେ ହାଣ୍ଡିରୁ ହାତ ପୂରାଇ ଭାତ ଖାଇବାର ସୁଯୋଗ ଦେଇଛି । ସମସ୍ତେ ଖାଇ ଚାଲି ଯାଇଛନ୍ତି, କେହି କିଛି ଦେଇନାହାନ୍ତି । ସେମାନେ ଦିଅନ୍ତି ନାହିଁ—ଖାଲି ନିଅନ୍ତି—ବସ୍ତୁର ଭାବେ ଆଦାୟ କରି ନିଅନ୍ତି । ଆଖିରେ ଅଞ୍ଜନ ଲଗାଇ ସେମାନେ ସବୁ ଲୁଟି କରି ନିଅନ୍ତି ।

ଉଚ୍ଛନ୍ନ ହୁଅନ୍ତୁ ସେମାନେ !

ଚୂଲିକି ଯାଆନ୍ତୁ ସେମାନେ !

ସାବିତ୍ରୀ ଦାନ୍ତ ରଗଡ଼େ, ଓଠ କାମୁଡ଼େ ।

ହେଇ ପିଲଟିକୁ ଧରି ଉଲୋଉମା ଆଜି ବସ୍ତୁ କେତେ ଗେଲ କରୁଛନ୍ତି । ଉଲୋଉମା ଜାଣେ—ସେ ଏଇ ବାପର ପୁଅ । ଆଉ ବସ୍ତୁ ବି ଜାଣେ ସେ ଏଇ ମାଆର ପୁଅ ।

ଆଖିରୁ ଲୁହ ବୋହିଲା ସାବିତ୍ରୀର ।

ସତୀତ୍ୱ !!

ଆଃ, ଆଉ କଣ ସେ ଆସିବ ନାହିଁ ?

ଆଉ କଣ ତାକୁ ସେ ଫେରି ପାଇବ ନାହିଁ ?

ସାଇର ସବୁଠାରୁ ବୁଢ଼ା ଶ୍ରୀଧର ଷଡ଼ଙ୍ଗୀ ଦାଣ୍ଡ ଦୁଆରେ ବସି ଫଳ-ଭୁଡେ ଖଞ୍ଜଣୀ ଧରି ଭଜନ ବୋଲିବାର ସାବିତ୍ରୀ ଶୁଣିଛି—"ମନ କହୁଚରେ—ମନ କହୁଚରେ—ପାଇଲି ଧନ ନହଜା ।"

କିନ୍ତୁ ସାବିତ୍ରୀ ସବୁ ହଜାଇସାରିଛି ।

ବସ୍ତୁଙ୍କର ସେଇ ଅନ୍ଧାରିଆ ବାଟଘରେ ସାବିତ୍ରୀ ଛୁଡ଼ାହୋଇ ସତେ ବା ନଜର ଅଲକ୍ଷରେ କଣ ଖୋଜୁଛି । ଜଡ଼ପରି କାହିଁକି ଆଜି ସେ ସେଇ ଅନ୍ଧାର ଭିତରେ ମିଶିଯାଇଛି । ଆଉ ତା ଦେହ ମଧ୍ୟରୁ ତାର ମନ ବାହାରିଯାଇ ଅନ୍ଧାରରେ ଖାଲି ବାଟ ଅଣ୍ଡାଳୁଛି । କିନ୍ତୁ ବାଟ କାହିଁ ? ବାଟ କାହିଁ ? କାହିଁ ବାଟ ?

ହଠାତ୍ କାହିଁକ ବଷ୍ଟୁ ପଶିଆସିଲେ ସେଇ ବାଟ ଘର ଭିତରକୁ । ଦପ୍‌କନା ଜଳଉଠିଲ ହାତରେ ତାଙ୍କର ଟର୍ଚ୍ଚ ଲଇଟ୍ ।

"ଏଁ—ଏ କଏ ? ସାବିତ୍ରୀ ଭାଉଜ ? ଏତେ ବେଳେ ? ଅସମ୍ଭବ କଥା ! କେବେ ତ ଅସନ୍ତି ନାହିଁ !" ସାବିତ୍ରୀ ସେହିପରି ଚାହିଁରହିଛି । ପିଣ୍ଡରେ ସତେ ବା ଜମା ପ୍ରାଣ ନାହିଁ !

ବଷ୍ଟୁ ନକେ କାହିଁକ ହଠାତ୍ ଚମକପଡ଼ିଲେ । ମନ ଭିତରେ ଅତୀତର କାଳିମା ଗାଢ଼ପରି ତାଙ୍କୁ ମାଡ଼ିବସିଲା । ସାବିତ୍ରୀ ଭାଉଜର ସେଇ ଲୋଭନୀୟ ଅଥଚ ଶୁଭ୍ର ଅକ୍ଷତ ଯୌବନ—ସେଥିରେ କାଳିମା ଲେପିଲା କଏ ? କଏ ତାକୁ ଆଜ ବାଟରୁ ଅଣି ଅବାଟରେ ଠିଆକରେଇଛି ? ବଷ୍ଟୁ ନଜର କୁତ୍ସିତ ଅତୀତ ଉପରେ ଚଢ଼ିଉଠିଲେ ମନେମନେ । ଅତୀତର ସେଇ ଚଳଚଞ୍ଚଳ ବାକ୍ୟମୁଖର ଅପରିଣାମଦର୍ଶୀ ଲୋଭୀ ଯୌବନଟା ଉପରେ ଗଭୀର ଘୃଣା ହେଲା ବଷ୍ଟୁଙ୍କର ।

ସାବିତ୍ରୀର ମୁହଁ ଶେତା ପଡ଼ିଯାଇଛି । ସେ କିଛି ଦେଖି ପାରୁନ— କିଛି ଜାଣିପାରୁନ—କିଛି ବୁଝିପାରୁନ । ସେ କେବଳ ଦେଖୁଛି—ବଷ୍ଟୁ ଠିଆ ହୋଇଛନ୍ତି ଆଗରେ । ଅତୀତର ଇତିହାସ ସାବିତ୍ରୀ ମନରେ ପୁଣି ଜୀବନ୍ତ ହୋଇଉଠିଲ ।

ଆଗରେ ବଷ୍ଟୁ—ମୋହିନୀ ରୂପରେ ସେ ଗୋଟିଏ କରରେ ସୁଧାଭାଣ୍ଡ ଆଉ ଅନ୍ୟ କରରେ ସୁରାଭାଣ୍ଡ ଧରି ନାଚ ନାଚ ନଜର ଭଙ୍ଗୀ ଆଉ ମାଧୁର୍ଯ୍ୟରେ ସମସ୍ତଙ୍କର ବୁଦ୍ଧି ଆଉ ବିବେକକୁ ହରଣକରି ପରିବେଷଣ କରି- ଲଗିଛନ୍ତି । ଆଉ ତିଲୋତ୍ତମା ସଙ୍ଗେ ସେ ନକେ ମନ୍ତ୍ରମୁଗ୍ଧ ତାଙ୍କ ହାତରୁ ମହାବିଶ୍ୱାସରେ ମଧୁ ପିଇଛନ୍ତି ଆକଣ୍ଠ । କିନ୍ତୁ ସାବିତ୍ରୀ ପରେ ଜାଣିଛି— ସୁଧା ବୋଲ ଯାହାକୁ ସେ ବିଶ୍ୱାସରେ ଆକଣ୍ଠ ପିଇଥିଲ, ମିଠା ବୋଲ ଯାହାକୁ ସେ ନାକରେ ବି ପିଇଛି—ସେ ସୁଧା ନୁହଁ ସୁରା । ସୁଧା ପଡ଼ିଛି ତିଲୋତ୍ତମା ହାତରେ । ସେ ଦେବୀ—ଏ ରାକ୍ଷସୀ !! ଓଃ !

ସାବିତ୍ରୀ ଚମକିଉଠିଲ—କାନ୍ଦିଉଠିଲ ।

"ବନ୍ଧୁ ! ବନ୍ଧୁ, ତୁମେ ମୋର କଣ କରିଛ ? କଣ କରିଛ ? ମୋତେ କଅଁଳଗୁଡ଼ାଏ ବଣିଆସରେ ମିଆଇଦେଇଥିଲ ? ତୁମେ ଏଡ଼େ ମାୟାବୀ ? ତୁମେ ଏଡ଼େ କୁଟୀଳ ? ତୁମେ ଏଡ଼େ ନିଷ୍ଠୁର ?" ସାବିତ୍ରୀର କଣ୍ଠ କୋହରେ ଶୁଙ୍ଖି ଆସିଲା ।

ପାଖକୁ ଲାଗିଆସିଲେ ବନ୍ଧୁ । ଆଖିରେ ଛଳ ଛଳ ଲୁହ । "ସାବିତ୍ରୀ, ମୋତେ କ୍ଷମାକର—ମୋତେ କ୍ଷମାକର ! ଅତୀତର ପାପ ଲାଗି ତୁମକୁ ଆଜି ମୁହଁ ଦେଖାଇ ପାରେ ନାହିଁ ଲଜ୍ଜାରେ । ମୋତେ କ୍ଷମାକର ସାବିତ୍ରୀ !!"

ବନ୍ଧୁ ସାବିତ୍ରୀର ଗୋଡ଼ ଧରିଲେ । ପାଟି ଶୁଣି ଆଉ ଘରୁ ଲଣ୍ଠନଧରି ଚଳୋଉମା ବି ବାଡଘର ଭିତରକୁ ପଶିଆସିଲା ।

ଅନ୍ଧାରିଆ ବାଡ ଘରେ ନିଜର ସ୍ୱାମୀ ସଙ୍ଗେ କାହାର ଏ ଆକୁଳ କଣ୍ଠସ୍ୱର ?

ଚଳୋଉମାର ମୁଣ୍ଡ ବୁଲାଇଦେଲା । ସେ ସ୍ୱପ୍ନ ଦେଖୁନାହିଁତ ? କୁଳଟା ସାବିତ୍ରୀ ଗୋଡ଼ ଧରି ନିଜର ସ୍ୱାମୀ—!? ଉଃ, ଚଳୋଉମାର ଛାତି ବନ୍ଦ ହୋଇଗଲା । ଏ ହାଣ୍ଡୀ ପୁଣି ଆସି ମୋର ସର୍ବନାଶ କରିବାକୁ ବସିଛି ! ପୁଣି ଥରେ ମୋର ସୁନା ଘରକୁ ଚୂନା କରିବାକୁ ଆସିଛି, ଏଇ ସତ୍ୟାନାଶୀ ! ଚଳୋଉମାର ଶିରାରେ ଶିରାରେ ଉଷ୍ଣରକ୍ତର ବେଗବାନ୍ ସ୍ରୋତ । ତାର ମୁଣ୍ଡର ସବୁ ସ୍ନାୟୁଗୁଡ଼ାକ ତାତିଉଠିଲେ । ବାଘୁଣୀପରି ସେ ସାବିତ୍ରୀର ଦେହ ଉପରକୁ କୁଦାମାରନ୍ତା—ଆଉ ତାର ଛାତିକୁ ନଖରେ ଚିରି ସେ ତାର ରକ୍ତ ପିଇଯାନ୍ତା ଚକ୍ ଚକ୍—ଚକ୍ ଚକ୍ । ଚଳୋଉମାର ଆଖିରୁ ନିଆଁ ଝରୁଛି । କଣ୍ଠରୁ ନିଆଁ ଝରାଇ ସେ କହିଲା—"ଦେଖ ସାବିତ୍ରୀ, ପରହାଣ୍ଡିରୁ ଜୀବନ ଯାକ କଂସା କଂସା ଭାତ ଖାଇ ତେବେ ବି ତୁମର ନିଆଁ ଲଗା ପୋଡ଼ା ପେଟ ପୂରିନାହିଁ ? ଫେର୍ ଆସିଛ ?"

ତାର କଥାର ଉତ୍ତାପରେ ସାବିତ୍ରୀ ହୁଏତ ଜଳିଯାଇଥାନ୍ତା—ଅଙ୍ଗ ସେ ନିଜେ ନିଆଁ ।

"ପର ହାଣ୍ଡିରୁ ମୁଁ ଭାତ ଖାଇ ନାହିଁ ଚଳ ! ନିଜ ହାଣ୍ଡିରୁ କଂସା

କଂସା ଭାତ ପରଷ୍କୁ ପରଶି ମୁଁ ଆଜ ଶେଷରେ ଘରଦୁଆରେ ଛଡ଼ାହୋଇଛି ।"

"ନିଜ ହାଣ୍ଡିରୁ ଭାତ ପରଶିଚ ନା ବିଷ ଘେଶିଚ ? ଲାଜ ଲାଗୁନି— ଫେର୍ ଘରଦୁଆରେ ଠିଆହୋଇଚ ବୋଲି କହୁଚ ?"

"ମୁଁ ତ କାହାକୁ ବିଷ ଦେଇନାହିଁ—ବିଷ ଦେଇଛନ୍ତି ଏଇ ବିଷ୍ଣୁ । ମାୟାବୀ ବିଷ୍ଣୁ ତୁମ ପାଟିରେ ଅମୃତ ଓ ମୋ ପାଟିରେ ବିଷ ଢାଳିଦେଇଛନ୍ତି । ସେଥିପାଇଁ ଦାୟୀ ଏଇ—ଏଇ—ବିଷ୍ଣୁ—।" ସାବିତ୍ରୀର ଆଖିରୁ ବିଷାକ୍ତ ନିଆଁ ବାହାରିଲା । ତାର କଣ୍ଠରେ ଏକ ଭୟଙ୍କର ବିଷାକ୍ତ ସ୍ୱର ଧ୍ୱନିତ ହୋଇଉଠିଲା—

"ମୁଁ ବିଷ ଗିଳିସାରି କେବଳ ତୁମର ଅମୃତ ମହୋତ୍ସବ ଦେଖିବାକୁ ଆସିଚି ଧଳ—ତୁମକୁ ଭାଗ ମାଗୁନି ।"

"କାହିଁକି—ଏବେ ବି ତ ବଳ ଅଛି—ବୟସ ଅଛି—ଯୌବନ ଭୁଲି ବିଚ୍ ବଜାର ଉପରେ ପସରା ମେଲାଇ ବସିବ ! ବହୁ ଗରାଖ ଜୁଟିବେ ମ— ଯାଅ—ଆହା ହା—ସାବିତ୍ରୀ ! ନାଁ ପୁଣି କେମିତି···!! କେଡ଼େ ସତୀ ସାବିତ୍ରୀ ମ ସତେ !"

ସାବିତ୍ରୀ ନୀରବରେ କେବଳ ଦୀର୍ଘନିଶ୍ୱାସଟିଏ ଛାଡ଼ିଲା । ତାକୁ ବରଂ ତିଲୋତ୍ତମାର ବାକ୍ୟବାଣ ଭୀଷ୍ମଙ୍କ ଶରଶଯ୍ୟା ସୁହାଇଲା ପରି ସୁହାଉଛି । ଦେହକୁ କାଟୁଛି ସତ୍ୟ—ମାତ୍ର ଏହାହିଁ ତାର ଉପଯୁକ୍ତ ପ୍ରାପ୍ୟ । ତିଲୋତ୍ତମା ହୁଏତ ମିଛ କହୁନାହିଁ । ତିଲୋତ୍ତମାର ଦେହ ତା ଦେହଠାରୁ ଅବଶ୍ୟ ଅଧିକ ପବିତ୍ର—ଅଧିକ ଶୁଚିମନ୍ତ । ମାତ୍ର ତିଲୋତ୍ତମାର ମନଠାରୁ ତାର ମନ ତ ସଙ୍କୀର୍ଣ୍ଣ ନୁହଁ ! ତିଲୋତ୍ତମାର ଆତ୍ମାଠାରୁ ତାର ଆତ୍ମା କ ସଙ୍କୁଚିତ ?

ତିଲୋତ୍ତମାକୁ ଆଉ କିଛି ସେ କହି ନ ଥାନ୍ତା—ତେବେ ସେ କହିଲା—"ଧଳ ! ମୁଁ ସତୀ ନୁହେଁ ସତ୍ୟ—ଆଉ ବି ଜନ୍ମରେ ସେ ହଜିଲା ଧନକୁ ମୁଁ ଫେରି ପାଇବିନି ଜାଣେ । ମାତ୍ର ଧଳ ! ସତୀତ୍ୱ ଲାଗି କଣ ତୁମ- ମାନଙ୍କଠାରୁ ମୋର ଲୋଭ କମ୍ ? ତୁମେମାନେ କଣ ମୋଠାରୁ ବେଶୀ ସତୀତ୍ୱକୁ ଲୋଭ କରିଛ ?"

ଏତକ କହି ସାବଜୀ ସେଠୁ ଚାଲିଆସିଲ । ନିର୍ଜୀବ କାଠ ପିତୁଳାଟିଏ ପରି ବସ୍ତୁ ଠିଆହୋଇ ରହିଛନ୍ତି । ପିଲାକୁ କାଖରେ ଧରି ଚାଲି କହିଲା—"ଘରକୁ ଚାଲ—ଫେରେ ସେଠି କାଠଟାପରି ଠିଆ ହୋଇ ରହିଲ କାହିଁକି ?"

ବସ୍ତୁ ବାଧ ମେଣ୍ଢାଛୁଆଟିଏ ପରି ତା ପଛେ ପଛେ ଘର ଭିତରକୁ ପଶିଲେ । ତାଙ୍କ ମନରେ ଗୋଟିଏ ପ୍ରଶ୍ନ—ଅସୁରମାନେ କଣ ସୁରା ଗ୍ରହିଁଥିଲେ ? ସେମାନେ କି ତ ଥିଲେ ଅମୃତଲୋଭୀ—କିନ୍ତୁ ସେମାନଙ୍କୁ ଅମୃତ ବଦଳରେ ସୁରା ଦେଲା କିଏ ?

ମୁଣ୍ଡଭିତରେ ଘୁରୁକ୍ ମାରିଲା ଭଳି କିଏ ଯେପରି ଚିତ୍କାର କରି କହୁଛି—"ବସ୍ତୁ ମାସ୍ତ୍ରା—ବସ୍ତୁ ମାସ୍ତ୍ରା ।"

କିନ୍ତୁ ସେ କୋଉ 'ବସ୍ତୁ' ?




Digitized by srujanika@gmail.com

# ବୀଣା ଓ ମୁଁ

ତିନି ବର୍ଷ ପୂର୍ବେ...

ସେଇ ଶୀତଳ ଓ କଅଁଳ ଜହ୍ନ ତଳେ ମୋର ବେକରେ ତାର କଅଁଳିଆ ବାହୁଲତା ଜଡ଼ାଇ ବୀଣା ପଚାରିଲା, "ଆଚ୍ଛା କୁହ ତ, ବାହା ହୋଇସାରିଲେ ମୋତେ ଆଉ ମନେରଖିବ ନାଁ ?" ବୀଣାର ମୁହଁରେ ପାତଳା ହସର ତଳେ ତଳେ ସନ୍ଦେହ ଓ ଉତ୍ସୁକତାର ପ୍ରଶ୍ନବାଚକ ଚିହ୍ନ ଏବଂ ତା ସଙ୍ଗେ ସଙ୍ଗେ ସ୍ୱଭାବସୁଲଭ ମଧୁର ଫାଜିଲମିର ଇସାରା ।

ମୁଁ ହସିଲି—ଜାଣେ ମୋର ହସିବାର ନୁହେଁ । ବୀଣାକୁ ନାନାକାରଣରୁ ବାହାହେବାକୁ ରାଜି ନହୋଇ ଅନ୍ୟଠାରେ ବାହାହେବାକୁ ବସିବାରୁ ବୀଣା ଯେ ମୋତେ ପରୋକ୍ଷରେ ଆଘାତ କରିବାକୁ ବସିଛି ଏ କଥା ମୁଁ ବେଶ୍ ବୁଝିପାରିଲି । ଅଭିନୟକୁଶଳା ବୀଣାର ନିଚ୍ଛନିଆଁ ବାହାରଦେଖା ଶିଶୁ-ସୁଲଭ ଚପଳା ଓ କଥାର ବିସ୍ଫୋରଣ ତଳେ ତଳେ ଯେ ମୋ ପ୍ରତି ପ୍ରଚ୍ଛନ୍ନ ବ୍ୟଙ୍ଗବାଣ ରହିଛି ଏ କଥା ଭାବି ମୋତେ ହସ ଲାଗିଲା । ମୁଁ ମଧ୍ୟ ଭଞ୍ଜନଗରରୁ ଗଢ଼ିଆସୁଥିବା ଧୀର ଲଳିତ ନାୟକର ସେହି ଚିରଚରିତ 'ତ୍ୟାଗ'ର ଅସ୍ତ୍ରଟି ନେଇ, ମୁହଁଭାବରେ ଜଣେ ଶ୍ରେଷ୍ଠ ଅଭିନେତାର ନିଖୁଣ ଭଙ୍ଗୀ ଫୁଟାଇ ତାକୁ ସ୍ୱସ୍ତିର ପ୍ରବୋଧ ଦେଇ କହିଲି—"ହଁ, ଭୁଲିଯିବି ବୀଣା, ଯଦି ତୁମର ପରବର୍ତ୍ତୀମାନଙ୍କଠାରେ ମୁଁ ବୀଣାକୁ କେବଳ ଦେଖିବାକୁ ପାଇବି ।"

ବୀଣା ହସିଲା । ବୀଣାର ନିଜ ହୃଦୟରେ ଅଗାଧ ଦମ୍ଭ । ସେ ଭାବେ, ତା ପରି ଅଭିନୟପଟୁ ବୋଧହୁଏ ଦୁନିଆରେ ଅଳ୍ପ ବା ଆଦୌ ନାହାନ୍ତି; ତା ପରି ଛଳନା କରିବା ଅନ୍ୟମାନଙ୍କର ସାଧ୍ୟାତୀତ । ତେଣୁ ସେ ଅବାଧରେ ଅସୀମ ସ୍ପର୍ଦ୍ଧାରେ ମୋ ପରି ଯୁବକଙ୍କ ନିକଟରେ ଛଳନା କରିପାରେ ।

ସେ ସବୁ ପୁରୁଷଙ୍କ ମାପିବାର ମାପକାଠି ତା ନିକଟରେ ରହିଛି । ସେଇ ମାପକାଠିର ଚିହ୍ନାଗସବୁକୁ ଅନ୍ୟମାନେ ବୁଝି ପାରନ୍ତି ନାହିଁ ବୋଲି ବୀଣା ମନେମନେ ଗୌରବ ମଧ୍ୟ ପାଏ ।

ମାତ୍ର ଏହି ସ୍ପର୍ଦ୍ଧା ଓ ଦମ୍ଭ ହିଁ ବୀଣାକୁ ମୋ ନିକଟରେ ତୋଳିଧରିଲା ଗୋଟିଏ ହାଲୁକା କାଗଜଫୁଲ ପରି । ମୋର ମନେହେଲା ଏହି ଆତ୍ମାଭିମାନିନୀ ନାରୀଟିର ଦେହ ଓ ମନ ମୋ ନିକଟରେ ଅତି ନଗ୍ନ ଓ ଲଘୁ । ବୀଣା ନିଜର ସଂଯମ ଦେଖାଇବାକୁ ଯାଇ ମୋ ନିକଟରେ ତାର ଉଚ୍ଛୃଙ୍ଖଳତା ଦେଖାଇବସେ । ନିଜକୁ ସଂକୁଚିତ କରିବାକୁ ଯାଇ ନିଜର ଅଲକ୍ଷ୍ୟରେ ସେ ରବର ଫିତାପରି ଅତିମାତ୍ରାରେ ସ୍ଫୀତ ହୋଇପଡ଼େ । ତଥାପି ନିର୍ବୋଧ ବୀଣା (ଦୟା ହୁଏ ତା'ପ୍ରତି ଅବଶ୍ୟ ) ଉଦ୍ଧତ ପକ୍ଷଲଗ୍ନ ପିମ୍ପିଳିକାପରି ଫୁରୁଫୁରୁ ହୋଇ ଉପରକୁ ଉଡ଼ିଯିବ—ଉପରକୁ—ଉପରକୁ—ଆହୁରି ଉପରକୁ—ତେର୍ ଉପରକୁ । ଫୁଲେଇ ବେଙ୍ଗ ଲିପରି ବୀଣା ସବୁ ବା ଖାଲି ଉଚ୍ଛ୍ୱାସରେ ଫୁଲୁଚି ମନେ ମନେ । କିନ୍ତୁ ବିଚାରି ନିଜ ଶରୀର ବା ମନର ପରିସର କଳିପାରେ ନାହିଁ ।

ସେ ମନେକରୁଥିଲା ମୁଁ ତା କ୍ରୀଡ଼ନକ । ତାର ଖୁସିରେ, ତାର ଇଚ୍ଛାରେ ସେ ମୋତେ ଧରି ଖେଳିବ । ସେ ଜମା ବୁଝି ପାରେନା ଯେ, ତାର ଏହି ଗୌଣ ମନୋବୃତ୍ତିର ବହିଃପ୍ରକାଶ ମଧ୍ୟରୁ ତାର ଅଧିକାଂଶ ଦୁର୍ବଳତା ଓ ଭୁଲଖି ମୁଁ ଧରିନେଇ ପାରୁଥିଲି ।

ବୀଣା ପୁଣି ପଚାରିଲା—"ଆଚ୍ଛା, ଯଦି ମୋର ପରବର୍ତ୍ତିନୀଙ୍କଠାରେ ତୁମେ ବୀଣାଠାରୁ ଅଧିକ କିଛି ପାଇବ ?"

"ବୀଣା ! ତୁମର ପରବର୍ତ୍ତିନୀଟି ତା ହେଲେ ନିଶ୍ଚୟ ସାବିତ୍ରୀ ହୋଇ ଉଠିବେ । କିନ୍ତୁ ତୁମେ ତ ଜାଣ, ସତ୍ୟବାନ୍ ହେବାର ସ୍ୱପ୍ନକୁ ମୁଁ କେତେ ଘୃଣାକରେ !! ତା ଛଡ଼ା ମୁଁ ଏତେ ଲଘୁ ଯେ, ଏତେ ବଡ଼ ଗୌରବର ବୋଝ ବହନକରିବାକୁ ସମ୍ଭବତଃ ଅକ୍ଷମ ହେବି ! ତା'ଠାରେ ତୁମଠାରୁ ଅଧିକ ଦେଖିଲେ ମୋର ବିପଦ । ତେଣୁ ବାଧ୍ୟହୋଇ ମୁଁ ତା'ଠାରୁ ଦୂରରେ ରହିବି ।" ଏତିକି କହିସାରି ମୁଁ ବୀଣାଆଡ଼କୁ ଚାହିଁରହିଲି ।

"ତା ହେଲେ କ'ଣ ମେନକାକୁ ବାହା ହେବା ଏକଦମ୍ ଠିକ୍ ! କିନ୍ତୁ ମୁଁ କହିଦେଉଛି, ମେନକାକୁ ବାହାହୋଇ ସୁଖୀ ହୋଇପାରିବନି ! ମେନକା ଯେମିତି ଝିଅ ମୁଁ ବେଶ୍ ଜାଣେ !"

ମେନକା ଥିଲି ବୀଣାର ବାଲ୍ୟବନ୍ଧୁ, ଆଉ ସହପାଠିନୀ । ତେଣୁ ମେନକା ବିଷୟରେ ବୀଣାର ମନ୍ତବ୍ୟକୁ ନିର୍ଭୁଲ କୁହାଯାନ୍ତା । କିନ୍ତୁ ମୁଁ ବୀଣାକୁ ଜାଣେ; ମେନକାକୁ ବି ଜାଣେ । ବୀଣାର ଅଭ୍ୟାସ ସେ ସୃଷ୍ଟିର ପ୍ରତ୍ୟେକ ଝିଅକୁ ବ୍ୟଙ୍ଗ କରିବ । ଆଉ ଏହି ମିଥ୍ୟା ଅହମିକା ବୀଣାକୁ ଏତେ ଉଦ୍ଧତ କରିଛି । ବୀଣା ନିଜେ ଶ୍ରୀଶୁନ୍ୟା କିନ୍ତୁ ଅତିମାତ୍ରାରେ ପରଶ୍ରୀକାତର । ବୀଣାପରି ହାଲ୍କା, ଫୁଙ୍ଗୁଲା, ପ୍ରଗଲ୍‌ଭା, ଦାୟିତ୍ୱକାତର ନାରୀଠାରୁ ମେନକା ସମ୍ବନ୍ଧେ ସମାଲୋଚନା ଶୁଣି ଟଳିଗଲାଭଳି ମନ ମୋର ନ ଥିଲା । କିନ୍ତୁ କାହିଁକି ବା ଆଉ ଶେଷକୁ ମୁଁ ବୀଣା ମନରେ ଆଘାତ ଦିଅନ୍ତି ? ତେଣୁ ଅତି ସହଜଭାବେ ବୀଣାକୁ କହିଲି—"ନାଇଁ ବୀଣ ! ତୁମକୁ ସୁଖୀ କରିବାପାଇଁ ତୁମର ଆଦେଶ ପାଳନ କରିବାକୁ ମୁଁ ପ୍ରସ୍ତୁତ ଅଛି । ମେନକା ମୋର ସ୍ତ୍ରୀ ହୋଇ ନ ପାରେ—ସେ ମୋର ଶତ୍ରୁର ହେଉ ।"

ବୀଣା ଅତି ମାତ୍ରାରେ ଫୁଲିଯାଇ ମୁହଁକୁ ଟୁଙ୍ଗାଇ କହିଲା—"ମୋତେ ସୁଖୀ କରିବାକୁ ମୁଁ ତୁମକୁ ଦୟା ଦେଖାଇବାକୁ କହୁନି । ତାକୁ ବିବାହ ନ କଲେ ତୁମେ ନିଜେ କେବଳ ସୁଖୀହେବ ସେଇଥିପାଇଁ କହୁଛି । ତା ନ ହେଲେ ତୁମେ ଯାହାକୁ ଇଚ୍ଛା ତାହାକୁ ବାହାହେଲେ ମୋର କିଛି କ୍ଷତି ହୋଇ-ଯିବନି । ମୁଁ କୌଣସି କଥାରେ ଦୁଃଖ କରିବ ନାହିଁ ।"

ବୀଣାର ଦୁଇଟି ହାତ ପାପୁଲିକି ମୋର ହାତମୁଠାରେ ରଖି ମୃଦୁ ମର୍ଦ୍ଦନ କରି କହିଲି—"ବୀଣା, ତୁମର ସୁଖ ବ୍ୟତୀତ ମୁଁ ଆଉ ଅଧିକ ସୁଖ ମୋ ପାଇଁ କଣ ଆଶା କରିପାରେ ? ତୁମର ସନ୍ତୋଷରେ ଯେ ମୋର ସୁଖ !"

ନିର୍ବୋଧ ବୀଣା ମୋର ଏ ଚାଟୁ ବାକ୍ୟରେ ଖୁବ୍ ଫୁଲିଉଠିଲା । ସେ ମୋତେ ଆକର୍ଷୀ ଧରୁ ଧରୁ ମୁଁ ତାର ମଦ୍ୟଭରା ମୁଖ ଉପରକୁ ମୋର ଅଧର ବଢ଼ାଇଦେଇଥିଲି । ଅଭିନୟ ହେଲେ ବି ସେଥିରେ ମାଦକତା ଥିଲା, ଆଉ ସେଇ ତୃପ୍ତି ଯୋଗୁଁ ବୋଧହୁଏ ଆମେ କେହି କାହାରିକୁ ଛାଡ଼ିପାରୁ ନ ଥିଲୁ ।

ବୀଣାର ଦୁଇ ଗାଲକୁ ମୋର ଦୁଇଟି ପାପୁଲିରେ ଜାକୁଡ଼ି ଧରି ମୁଁ ପୂର୍ବପରି କହିଲି—"ବୀଣା, ଲକ୍ଷେ ମେନକା ହେଲେବି ମୋତେ ଏପରି କିଏ ବାନ୍ଧି ରଖିପାରିବ ନାହିଁ—ଯାହା ତୁମେ କେବଳ ପାରୁଛ ।"

ବୀଣା ତୃପ୍ତିରେ ପଚାରିଲା—"ସତେ ?"

× × ×

ସେହି ଦିନଠାରୁ ତିନିବର୍ଷ ପରେ—

ସେହିଭଳି କଅଁଳିଆ ଜହ୍ନରାତିରେ ମୋର ଶ୍ରେଷ୍ଠ ଝିଅଟିକୁ ଧରି ମୁଁ ଜହ୍ନ ଦେଖାଉଛି । ମେନକା ତେଣେ ପଢ଼ାଘର ଭିତରେ ପଶି ତାର ପଢ଼ିବା-ପାଇଁ ବହି ଖେଳେଇଥିଲା । ଝିଅକୁ ଜହ୍ନ ଦେଖାଇ ଦେଖାଇ ଦିନହିକାଲି ସ୍ମୃତିସବୁ ଅଜଣା ଭାବରେ ମୋର ମସ୍ତିଷ୍କ ଭିତରେ ଭିଡ଼ ପକେଇ ଯାଉଥିଲେ—ଯେମିତି ଏଇ ଜହ୍ନ ଆଉ ବାଦଲ ମୋର ଏଇ ଦୁଆର ଉପରେ ଭିଡ଼ ପକେଇ ଯାଉଛନ୍ତି । ହଠାତ୍ ବୀଣାର ଆବିର୍ଭାବ । କୋଳରେ ତାର ଶିଶୁ । କୁହିଲି ବୀଣା ବାହା ହୋଇଯାଇଛି, ଆଉ ତାର ସ୍ୱାମୀ ନୂଆ ବଦଳି ହୋଇ ଆସିଛନ୍ତି । ପାଖ ଚଉକି ଉପରେ ବସିବାକୁ ନିର୍ଦ୍ଦେଶ ଦେଇ ହସି ହସି ପଚାରିଲି—"ଦରିଦ୍ର ଦୁଆରେ ଶ୍ରୀପଦ ପଡ଼ିଲା କିପରି ?"

"ବିଶ୍ୱାମିତ୍ରଙ୍କପରି ଶେଷ କରଟା ଆଦାୟ କରିବାକୁ" ବୀଣା ଖୁବ୍ ଚଞ୍ଚଳ ହସି ହସି ଉତ୍ତର ଦେଲା ।

ମୁଁ ଦେଖିଲି ବୀଣା ଚିରଦିନ ବାଦନଶୀଳା । ତାର କ୍ଲାନ୍ତି ନାହିଁ । କିନ୍ତୁ ମୁଁ ପୁରୁଷ ହେଲେ ବି ମୋର ଆଉ ବାଦନ କରିବାର ଶକ୍ତି ନାହିଁ—ସାମର୍ଥ୍ୟ ନାହିଁ । ତେଣୁ ବୀଣାକୁ ଅଳ୍ପ ଆଘାତ କରି ମୋର ମନକଥା ତାକୁ ସଫା ଜଣାଇଦେବାପାଇଁ କହିଲି—

"ତାହେଲେ ଆଉ ଏଠାରେ କାହିଁକି ବୀଣା ! ଚାଲ ଶ୍ମଶାନକୁ—ସେଇଠାରେ ଶେଷ କରଟା ଆଦାୟ କରିନେବ !"

ବୀଣା ନୀରବ ରହିଲା । ତାପରେ ଅଳ୍ପ ସୁଖ ଦୁଃଖ ପରେ ବୀଣା ପୁଣି ପୂର୍ବ କଥାର ସୂତ୍ର ଧରି ପଚାରିଲା—"ଆଚ୍ଛା, ଏହା ଭିତରେ ମେନକା

ସଙ୍ଗେ ତୁମର କପଟ କରୁଛ ? ନିଶ୍ଚୟ ଭଲ କରୁଥିବ । ଭଗବାନ କରନ୍ତୁ ତୁମର ଦାମ୍ପତ୍ୟ ଜୀବନଟି ଏହିଭଳି ମଧୁମୟ ହେଉଥାଉ ଚିରଦିନ ।" ମୋ କୋଳରେ ଶ୍ରେଷ୍ଠ ପିଲାଟି କାନ୍ଦି ଉଠିଲା, କାରଣ ଏତେ ସମୟ ଧରି ମୁଁ ତା ସଙ୍ଗେ ନୀରବ ଅଛି । ମେନକା ଘର ଭିତରୁ ବାହାରି ଆସିଲା । ବୀଣାକୁ ନମସ୍କାର କରିସାରି ଗୃହିଣୀର ଷୋଳଣା ଅଧିକାରରେ ଓ ବେଶ୍ ଗମ୍ଭୀର କଣ୍ଠରେ ସେ ମୋତେ ତାଗିଦ୍ କଲା, "ଗପ କରିବ ତ ଘର ଭିତରେ ବସି ଗପ କର; ବାରମ୍ବାର ନାହିଁ କରୁଚ କାକରରେ ବସିବାକୁ, ଥଣ୍ଡା ଲାଗିବ । ମୁଁ ଯେଉଁ କଥାକୁ ନାହିଁ କରିବି, ତୁମେ ସେହି କଥାକୁ ଜିଦ୍ ଧରି ବସିବ ।" ମୋ କୋଳରୁ ପିଲାଟିକୁ ନେଇ ସେହିଭଳି ଗମ୍ଭୀର ଭଙ୍ଗୀରେ ସେ ଘର ଭିତରକୁ ଗଲା ।

ବୀଣା ଏତେ ବେଳେ ଧରି ଗୃହିଁରହିଥିଲା ଆମ ଦୁଇଜଣଙ୍କୁ ଅନେଡ଼େ । ତା'ପରେ ଦୀର୍ଘନିଶ୍ୱାସଟିଏ ପକାଇ ଗମ୍ଭୀର ଭାବେ ପଚାରିଲା—"ଭଲରେ ଅଛ, ନାଇଁ ?"

"ଭଲରେ ଥାଏ ବା ମନ୍ଦରେ ଥାଏ ବୀଣା—କିନ୍ତୁ ତୁମକୁ ମୁଁ ମେନକାଠାରେ ଦେଖିପାରିନି । କିମ୍ବା ତୁମଠାରୁ ଅଧିକ ବୋଲି ମୁଁ ତାକୁ ମନେକରେନା ।"

"ତେବେ ?" ବୀଣା ଆଶ୍ଚର୍ଯ୍ୟ ହେଲା ।

"ବୀଣାଠାରୁ ସବୁ ହିସାବରେ କମ୍ ବୋଲିହିଁ ମୁଁ ତା ସଙ୍ଗେ ଚଳି-ପାରୁଛି, ଆଉ ସେଥିପାଇଁ ମୁଁ ବେଶ୍ ଅଶ୍ୱସ୍ତ । କାରଣ ବୀଣା ସଙ୍ଗେ ସମାନ ହେବାର ସ୍ପର୍ଦ୍ଧାକୁ ମୁଁ ତାର ସହିପାରି ନ ଥାନ୍ତି, କିମ୍ବା ବୀଣାଠାରୁ ଅଧିକ ହୋଇଥିଲେ ମୁଁ ତା ନିକଟରେ ରହିପାରି ନ ଥାନ୍ତି ନିଶ୍ଚୟ !" ବୀଣାର ପିଲାକୁ କୋଳକୁ ନେଇ ଚୁମା ଦେଉଁ ଦେଉଁ ମୁଁ ଏତକ କହିଲି ।

"ଆଘାତ ଦେବାକୁ କଣ ଅନ୍ୟ ସ୍ଥାନ ବା ସମୟ ନାହିଁ ? ଯେତେବେଳ-ବେଳେ ଦାଉ ପଡୁଚ ସେତେବେଳେ ମନଇଚ୍ଛା ମାଡ ମାରି ଲାଗିଛ ।" ବୀଣାର ପାଟି ଖନିବାଜିଗଲା—ଆଖି ତାର ଲୋତକପୂର୍ଣ୍ଣ ।

ମୁଁ ତାର ହାତଟିକୁ ଧରିପକାଇ କହିଲି, "ବୀଣା, ପୁରୁଷ ବି ନାରୀଠାରୁ କମ୍ ଛଳନା କରିପାରେନା । ତେବେ ପ୍ରଭେଦ ହେଉଚ—ନାରୀଠାରେ

ଶକ୍ତି ଯେତିକି ତାଠାରୁ ସ୍ପର୍ଦ୍ଧା ଶତଗୁଣ ବେଶୀ; କିନ୍ତୁ ପୁରୁଷ ନିଜର ଶକ୍ତିରେ ଅତ୍ୟଧିକ ଶକ୍ତିବାନ୍ ହେଲେ ବି ନାରୀପରି ଏତେ ସ୍ପର୍ଦ୍ଧା ଦେଖାଇ ପାରେନା । ତେଣୁ ନାରୀ ଭାବେ ପୁରୁଷ ବୋକା, ସେ ତାକୁ ବେଶ୍ ଠକେଇ ପାରୁଛି ! କିନ୍ତୁ ବୀଣା ! ତୁମେ ଯଦି ବୁଝିଥାନ୍ତ ଯେ ନିଜକୁ ତୁମପାଖେ ଠକେଇ ଦେବାରେ ମୋର ଖିଆଲ ଥିଲା, ଆଉ ମୋର ଆନନ୍ଦ-ଦୃଷ୍ଟିରୁ ମୁଁ ନିଜକୁ ତୁମପାଖେ ହଜେଇଦେଇଥିଲି, ତେବେ ଅହମିକାଶୂନ୍ୟ ହୋଇ, ତୁମ ଆଖିରେ ଆଜି ଆଉ ଲୁହ ଆସିନଥାନ୍ତା । ଭୁଲଟା ସବୁ ସମୟରେ ତୁମଆଡ଼ୁ ହୁଏ । ତୁମେ ଜୟ ନ କରୁଣୁ ବିଜୟ ପତାକା ଉଡ଼ାଇଥାଅ, ତେଣୁ ପରାଜୟରେ ତୁମେ ବେଶୀ ନଇଁ ପଡ଼ । ''

ବୀଣା କେବଳ ଦୀର୍ଘଶ୍ୱାସ ଛାଡ଼ିଲା । ମୋର କୋଳରୁ ପିଲାକୁ ନେବା ପାଇଁ ହାତ ବଢ଼ାଇଲା ସେ । ''ଯାଅ, ରାତି ବେଶୀ ହେଲାଣି । ପିଲାକୁ ହୁଏତ ଶୋଷ ହେବଣି ।'' ବୀଣା ନମସ୍କାର ଜଣାଇ ଚାଲିଗଲା । ଅଳ୍ପ ବାଟ ତା ସଙ୍ଗେ ଯାଇ ତାକୁ ବଳାଇଦେଇ ଶୂନ୍ୟ ମନରେ ଘରକୁ ଫେରି ଆସିଲି । ଆକାଶରେ ବଉଦ ଓ ଶୃଗାଳ ଭେକାଳି । ଗୋଟି ଗୋଟି ହୋଇ ରାତିର ବାଦୁଡ଼ି ମୋର ଅଗଣାର ସ୍ତବ୍ଧ ବାୟୁମଣ୍ଡଳକୁ ପ୍ରକମ୍ପିତ କରି କେଉଁଆଡ଼େ ଉଡ଼ିଯାଉଥିଲେ ।

ମୁଁ ଘର ଭିତରକୁ ପଶିଲି ।

ବୀଣା—ସେ ବହୁ ଦିନର କଥା !

ବୀଣା—ସେ ଆଜି ପରଜାତା !

ବୀଣା—ସେ ଆଜି ଆସିଥିଲା କାହିଁକି ? ବର୍ଷକ ପରେ କାହିଁକି ଆସି ଲୁହ ଗଡ଼ାଇ ଦେଇ ଗଲା ମୋ ବୁକରେ ?

ରାତି ତମାମ ଆଉ ନିଦ ହେଲା ନାହିଁ ମୋତେ !



# ପୁଅ ହେବ

ପୁଅ ତ ହେଲାନି—କଅଣ କରିବ ସେ ? ସେ କଅଣ ନିଚିତ ସକାଳୁ ପୂର୍ଣ୍ଣେଶ୍ୱର ମହାଦେବଙ୍କ ଚଉତରା ଓଳାଇ ନଥିଲା ? ସେ କଅଣ ଆର୍ତ୍ତତ୍ରାଣ ଗାଦିଙ୍କ ପାଖରେ ଅଧିଆ ପଡ଼ି ନଥିଲା ? ସେ କଅଣ ସବୁ ସଂକ୍ରାନ୍ତିରେ ବ୍ରାହ୍ମଣ ହାତରେ ତମ୍ବା ତଣ୍ଡୁଳ ଟେକି ଦେଇ ନଥିଲା ? ବୁଧିଆ ଓଷାରେ ବଡ ଶିଆଳଙ୍କ ପୂଜା କରି ନାହିଁ ନା ମଙ୍ଗଳାଙ୍କ ପାଇଁ ମଙ୍ଗଳବାର ଓଷା କରିନାହିଁ ? ସବୁ ତ କରିଛି, କିନ୍ତୁ ଫଳ କାହିଁ ? ସେ ବି ତ ଆଉମାନଙ୍କ ପରି ଗିରସ୍ତସୁଆଗୀ ହୋଇଥିଲା । ତାଠାରୁ କଅଣ ବେଶୀ କିଏ ସୁଆଗୀ ହୋଇଛି ଏ ନଗ୍ୱଣ ଗାଁ ମଣ୍ଡଳରେ ? ତା ପାଇଁ କ୍ରମ ହାଟପାଳି ତା ଗିରସ୍ତ ରସଗୋଲା ଆଣିନାହିଁ କି ନା ତା ପେଟରୀରେ ପାଞ୍ଚ ସାତ ପ୍ରକାରର ପାନ ମସଲା ଆଜଯାଏ ସାଇତା ହୋଇ ଫିମ୍ପିମାରି ନାହିଁ ? ତାଠାରୁ କିଏ ଅଉ କୋଉ ମାଇପେ ବେଶୀ ଚିଜ ପିନ୍ଧୁଛନ୍ତି ? ପାଳି କି ପାଳି ତ ନୂଆ ଅଲଙ୍କାର ବରାବର ଦିଆଯାଉଛି । କାଳନ୍ଦୀ ବଣିଆ ମୁଠାମୁଠା ଟଙ୍କା ନେଉଛି ଆଉ କୋଉଥିପାଇଁ ? ଅଣ୍ଟାରେ ଅଣ୍ଟାସୂତା, ହାତରେ ବାଜୁବନ୍ଧ, ଡାଏମଣ୍ଡକଟା ଚୂଡ଼ି, ମୁଣ୍ଡରେ ସୁନା ଅଲକା, ଗୋଡ଼ରେ ପାଉଜି—କେହି ଖୁଣି ପାରିବେନି ଅଲଙ୍କାର ପିନ୍ଧି ନାହିଁ ବୋଲି ।

ଗିରସ୍ତ ତାର କଣ ଷୋଳସାମର୍ଥିଆ ଭେଣ୍ଡା ନୁହେଁ ! ଭେଣ୍ଡା ନୁହଁ ତ ପଚିଶ ପଚିଶ ଗଚ୍ଛ ପାନବରଜ, ଦଶଦଶ ମାଣ ଜମି ସଂହାଳି ସମ୍ଭାଳି ରଖିଛି କେମିତି ? ରଙ୍ଗଟା ସିନା କଳା, ହେଲେ ପାଣ୍ଡୁରା ତ ନୁହଁ—ଚକ୍‌କଣ । ଶିନ୍ତଦନିଆଁ କାଉପକ୍ଷୀଭଳି ଦେହର ରଙ୍ଗ ଝୁବ୍ ସୁନ୍ଦର । ବଳିଲା ବଳିଲା ହାତ ଗୋଡ଼ । ଗାଲ ଦାନ୍ତ ପଶିଯାଇଥିଲେ ମଧ୍ୟ ମୁହଁଟା

ଅଘଟଣ ନୁହଁ । ମୁଣ୍ଡରେ ପାଚିଲା କେଶ । ମଥାରେ ସିନ୍ଦୂର କଳୁ । ଦାନ୍ତଗୁଡ଼ିକ ପାନ ଖାଇ କଳା ପଡ଼ିଯାଇଥିଲେ ବି ପାଟିଟା ଅସୁନ୍ଦର ନୁହେଁ । ଅଧା କାନ୍ଥ ପରି ଛାତି, ଖଣ୍ଡା ଧାର ପରି ନାକ । କୋଉ କଥାକୁ ଖୁଣ୍ଟା ଦେବାକୁ ନାହିଁ । ଏଇମିତିକା ବର ଦେଖି ଲଇଖଣ ମହାପାତ୍ର ଝିଅକୁ ବାହାଦେଇଥିଲେ । ଗଜାଭେଣ୍ଡାଟା । ଜମିବାଡ଼ି ବେଶ୍ ଅଛି । ଘରେ ଦୁହାଁଳ ଗାଈ । ଦୁଇ ପଇସା କସ୍‌ମତରେ ମକଦମା ମାହାଲ ବି କଣା-ଯାଇଛି—ଘରେ ଦୁଇ ଦୁଇଟା ପିଠିଲହଣ୍ଡା—ତେ ଲଇଟ୍ । ଲଇଖଣ ମହାପାତ୍ରର ଘରଣୀ ସବୁଆଡ଼େ ଛାତି ଫୁଲାଇ କହି ବୁଲୁଥିଲେ—ତା ଜୋଇଁ ପରି ଜୋଇଁ ଏ ଖଣ୍ଡମଣ୍ଡଳରେ କେହି କରି ନଥିବେ !··· ଏଇନେ ଏବେ ତାର ପୁଅ ହେଉନି ସେ ବାଞ୍ଝ ! ଏଥିପାଇଁ ବାପା ମା'ଆ କ'ଣ କରିବେ ? ସେ ଜନମ ଦେଇଥିଲେ ବୋଲି ତ ଆଉ କରମ ଦେଇ ନାହାନ୍ତି ! ହାରି ଫଅଁକିନା ନିଶ୍ୱାସ ଛାଡ଼ିଲା—ଶୁଖିଲା ତତଲା ପବନ ।

ହଁ, ତାର ଗେରସ୍ତ ନାରାୟଣ ଷଡ଼ଙ୍ଗୀ—ସବୁ କଥାରେ ସିଏ ସୁନ୍ଦର । ବାହା ହେବା ପରେ ଦୁଇଟି ବରଷ କଟେଇଥିଲେ—ମୋଟେ ଦୁଇଟି ବରଷ । ସେମିତି କିଛି ବଡ଼ ଘଟନା ଏହା ଭିତରେ ଘଟି ନଥିଲା । କିନ୍ତୁ ସେଇ ଅଳ୍ପ ଦିନ ମଧ୍ୟରେ ବି ହାର ଜାଣି ପାରିଥିଲା—ସବୁଥିରେ ସୁନ୍ଦର ତାର ବର ନାରାୟଣ ଷଡ଼ଙ୍ଗୀର କୋଉ ଜିନିଷ ଅଭାବ । ହାରକୁ ସେତେବେଳେ ଅଠର ବରଷ ବୟସ । ମୋଟାମୋଟି ମାଉଁସିଆ ବପୁ । ଦେହରେ ଯଉବନ ସମେଇ ହଉନି । ମନ ଯେତେ ଗୃହୁଁଥିଲା ସେତିକି ପରିମାଣରେ ପାଇ ପାରିଲାନି । ନାରାୟଣ ଷଡ଼ଙ୍ଗୀର ମୁଣ୍ଡକୁ କି ପିତ୍ତ ଉଠିଲା କେଜାଣି କହିଲା, "ମୁଁ କଲିକତା ଯିବି ।" ବାପା ମନାକଲେ, ବୋଉ ମୁଣ୍ଡ ପିଟିଲେ; ନାରାୟଣ କଲିକତା ଗଲେ । କଲିକତାରେ ଦୁଇଟି ବରଷ ରହିଲାପରେ ଯେତେବେଳେ ନାରଣ ଘରକୁ ଫେରିଆସେ, ସେତେବେଳେ ଆଉ ସେ ଝୋଳସାମ୍ବିଆ ଭେଣ୍ଡାଗିରି ନାହିଁ । ନାରଣକୁ କି ରୋଗ ଧରିଛି । ଡାକ୍ତର, ବଇଦ, ଗୁଣିଗାରଡ଼ି କେତେ ଚିକିତ୍ସା ହେଲା । ମାତ୍ର ନାରଣରେ ସେ ରୋଗ ଭଲ ହେଲାନି । ହାର ଜାଣି ପାରିଲା, ନାରଣ ଦିନୁ-ଦିନ ପୁରୁଷପଣିଆରୁ ରହିତ ହେଲା । ଏଇଠାରୁ, ଠିକ୍ ଏଇଠାରୁ ଆରମ୍ଭ

ହେଲ ହାର ମନରେ ଅଶାନ୍ତ ।

ସେତେ ସିଏ କହଲେ ନାରାୟଣ ଷଡ଼ଙ୍ଗୀ କାହାର କଥା ଶୁଣିଲେ ନାହିଁ । ସନ୍ତ ଗୋଷ୍ଠୀରେ ମିଶିଲେ । ଶ୍ରୀରାମପୁରର ନଟେଇ ମିଶ୍ର ବାବାଜୀ— କୃଷ୍ଣଙ୍କ ପର ଲମ୍ବ ବାଳ, ଅଲ୍ପ ଘନ ଦାଢ଼ୀ, ଗେରୁଆ ଲୁଗା ମାଇପିଙ୍କ ପର ପିନ୍ଧନ୍ତ । ଗୋରା ତକ୍‌ତକ୍ ଚେହେରା । ହାତରେ ସବୁବେଳେ ବଂଶୀ ଧର ବଷ୍ଟହେଉଥାନ୍ତ । ଜାଣିବା ଲୋକେ କହନ୍ତ ଯେ ବାବାଜୀଙ୍କର ଗୋପିକା ଦୀକ୍ଷା । ନଗ୍ରାଣ ଶାସନରେ ଯେତେବେଳେ ହଇଜା ଲଗିଲ, ବାବାଜୀ ଆସିଲେ ହଇଜା ଛାଡ଼ିବା ବେଳକୁ । ଜାଉଁଲୀ ବେତ ଧର ଗାଁ ଦାଣ୍ଡରେ ପରସ୍ତେ 'ହରବୋଲ' କହ ଦୌଡ଼ିଲେ । ହଇଜା ଛାଡ଼ିଅସୁଥିଲ, ଛାଡ଼ିଗଲ । ବାବାଜୀ କଚ୍ଛ ଦନ ଗାଁରେ ରହଗଲେ । ଗୋଟିଏ ଗୋଷ୍ଠୀ ଗଢ଼ିଲେ । ନାରଣ ମିଶିଲେ ଏଇ ଗୋଷ୍ଠୀରେ ।

ହାର ଶୁଣିଥାଇଲ ବାବାଜୀ ତାଙ୍କ ମହମା ବଳରେ ବାଞ୍ଝ ସ୍ତ୍ରୀ ଲୋକଙ୍କୁ ପୁତ୍ର ଦାନ କରୁଛନ୍ତ । ଖାଲ ମହମାରେ, ମନ୍ତ୍ର ବଳରେ କଣ ସତରେ ପୁଅ ହୁଏ ? ହଁ, ହୁଏନ ଆଉ କ'ଣ ? କେତେ ଏହପର ପାଇଲେଣି ନା । ଘୁଡ଼ିଆଘର ବୋହୂର ଏବେ ଆଜଯାଏ ପିଲ ହେଉନଥିଲ—ପୁଣି ତ ସନ୍ତ ଗୋଷ୍ଠୀରେ ମିଶି ବାବାଜୀଙ୍କ ସେବା କଲରୁ ଏଇନେ ଏବେ—। ନିଃଶ୍ୱାସ ମାରଲ ହାର ।

ନା, ହାର ନଷ୍ଟପୁ ସେବା କରବ ସନ୍ତ ଗୋଷ୍ଠୀର । ସେ ଦନ ଜଣେ ଆସି ହାର କାନରେ ବାବାଜୀଙ୍କ ବରୁଦ୍ଧରେ ଫୁସ୍ ଫୁସ୍ କର କହୁଥିଲ । ସେ କଥା କଣ ସତ ? ଛୁଅଛୁଆ—ସେମାନେ ସବୁ ପାପୀ ଜନ । ପାପକଥା ତୁଣ୍ଡରେ ଧରନ୍ତ । ବାବାଜୀ ମହାତ୍ମା ପୁରୁଷ । ତାଙ୍କ ନାମରେ ପାପ କଥା ତୁଣ୍ଡରେ ଧରଲେ ତୁଣ୍ଡ ଫାଟିଯିବ । କୁଳରେ କେହୁ ରହବେ ନ । ଏମିତ ଅନେକ ଅଘଟନ ଘଟଣ ହାର ବହୁବାର ଶୁଣିଛୁ । ନା, ହାର କାହାର କଥା ଶୁଣିବ ନାହିଁ । ସନ୍ତ ଗୋଷ୍ଠୀର ସେବା ସେ କରବ । ଏ ବାଞ୍ଝ ଦୋଷରୁ ସେ ନ ଉଧୁରଲେ ତାର ଆଉ ତ୍ରାଣ ରହବନ ।

ହାରର ମନେପଡ଼ିଲ—ସେଦନ ସେ ଯାଇଥିଲ ତ୍ରହଗ୍ରାଜଙ୍କ ଘରକୁ

ଭୁଲି । ପ୍ରହଲ୍ଲାଦ ଘରର ବୋହୂ—ସାତ ପନ୍ଦରେ ପନ୍ଦ—ହାରଠାରୁ ବୟସରେ ନଅ ବରଷରୁ କମ୍ ସାନ ହେବନି । କିନ୍ତୁ ତା କୋଳରେ ପୁଅ—ବର୍ଷକର ହୋଇଛି । ବୋଉ ତାର ତାକୁ ଟିକି ନାଲି କୁରୁତାଟିଏ ପିନ୍ଧେଇ-ଦେଇଛି—ଅଣ୍ଟାରେ ଗ୍ରେଟ ପେଣ୍ଟଟିଏ, ଗୋଡ଼ରେ ହଳେ କୁନକୁନ ଯୋତା । ମୁଣ୍ଡରେ ଝାଲର ଦିଆ ଟୋପିଟିଏ । ଖୁବ କଉତୁକିଆ ପିଲାଟିଏ ଏକା ! ହାର ଗଲାକ୍ଷଣି ପିଲାଟିକୁ ହାର ହାତକୁ ବଢ଼େଇଦେଲି । ପିଲାଟି ବି ଚହ୍ନା ଅଚହ୍ନା ବାଛିଲା ନାହିଁ—ଫକ୍‌କିନା ହାର କୋଳକୁ ଡେଇଁପଡ଼ିଲା । କେଡ଼େ ସୁନ୍ଦର ଗୁଲୁଗୁଲୁ ହସ । ଗୋଟିଏ ନାଁ ଯୋଡ଼ାଏ ଦାନ୍ତ ଉଠିଛି । ମାଉଁସିଆ ହୋଇ କୋଅଳ ପିଲାଟିଏ—ମଇଦା ପିଣ୍ଡୁଳାଟିଏ— ରବର କୁଣ୍ଢେଇଟିଏ । ହାର ତାକୁ ଛାତିରେ ଚପିଧରିଲା । ଆଃ ! କଣ ଲାଗୁଛି ! ଖାଳିପାରିଲାନି ହାର ତାକୁ କିପରି ଲାଗୁଛି ବୋଲି । ଛାତି ତାର ଶିରଶିର ଡାକିଲା । ଛୁଡ଼ପଡ଼ିବ କି ଆଉ ? ପିଲାଟି ବି ଅତି ଆରାମରେ ହାର ଛାତି ଉପରେ ମୁଣ୍ଡ ଗୁଞ୍ଜିଲା । ନାଁ—ଭାଙ୍ଗି ପଡ଼ିବ ତା ଛାତି । ଆଉ ସେ ସହି ପାରିଲାନି । ମାଆଲେ ! ପିଲାଟି କି ଓଜନିଆ ଲାଗିଲା ତାକୁ ସେତିକିବେଳେ ! ହାଲହାଲରେ ପିଲାଟା କାହିଁକି କାନ୍ଦିଉଠିଲା । ତା ବୋଉ ପରିହାସ କରି କହିଲା—"ଏତିକିକି ତୁମର ନଉନି ହାର, ପୁଅ କଣ ରଖିବ । ପୁଅଟିଏ ପାଇଁକି ତ ଆଖିକି ତମର ନିଦ ନାହିଁକି ପେଟକୁ ଭୋକ ନାହିଁ !" ଶୁଖିଲା ହସ ହସି ହାର କହିଲା, "ହଅ—ପୁଅ ଦବ—ତମ ମୁହଁରୁ ଦିଶୁଛି ଏକା ! ହଇରେ, ଯିବୁ ଆମ ଘରକୁ ?" ପିଲାଟିର ନରମା ଓଠ ଦୁଇଟିରେ ହାର ଚୁମା ଖାଇଲା । ଏତକି କହିଲା ସିନା, ହେଲେ ତାକୁ ଖୁବ ହିନିମାନ ଲାଗିଲା ଏ କଥା ଶୁଣି । ସେ ମାଆ ହୋଇ ପାରିନି ସତ, କିନ୍ତୁ କଅଣ ହେଲା ? ସେ ମାଆ ନ ହେଲେ କଅଣ କାହାକୁ ପିଲା ମାଗିଛି ? କାହାଠୁଁ ଦାନ ଅନୁଗ୍ରହ ଖୋଜିଛି ? ତାକୁ ଦୟା ଦେଖାଇବାକୁ, ସହାନୁଭୂତି ଦେଖାଇବାକୁ ଏମାନଙ୍କର କିଆଁ ଏତେ ଗରଜ ? ଏ ପ୍ରକାର ପରିହାସମିଶ୍ର ସହାନୁଭୂତି ହାରର ଅତି ଅସହ୍ୟ ହୋଇପଡ଼ିଲା ।

କାନ୍ଦକାନ୍ଦ ପିଲାଟା ବାନ୍ତି କରି ପକାଇଲା—ଧଳାଧଳା ଦୁଧ ଛେନା ପରି ବାନ୍ତି—ଆମ୍ବିଳା ଗନ୍ଧ । ସେଇକ୍ଷଣିକା ଦୁଧ ପିଇଥିଲା କନା ? ପିଲାର

ବାସ୍ନ ! ଆମ୍ବିଳା ଗନ୍ଧ ହାରର ନାକରେ ବାଜିଲା । ଆଃ, କି ଲୋଭନୀୟ ସୁନ୍ଦର ମଚାଣିଆ ଗନ୍ଧ ତାର ! ତାର ମନେହେଲା ଏଇ ବାସ୍ନଗୁଡ଼ିକ ସେ ଦେହରେ ବୋଳି ହୋଇ ପଡ଼ନ୍ତା କି ? ଆଉମାନଙ୍କୁ ହୁଏତ ଗନ୍ଧ ଗୁଡ଼ିକ ଥିବ, କିନ୍ତୁ ହାର ଯେପରି କି ଏଇ ବାସ୍ନ ଶୁଙ୍ଘିବ ବୋଲି ଏଠାକୁ ଆସିଛି ! ପିଲା ବାସ୍ନରେ ପୁଣି ଏଡ଼େ ସୁନ୍ଦର ଗନ୍ଧ ! କାହିଁ, ବୋତଲ ବୋତଲ ଫୁଲ୍‌ର ତେଲ ତ ହାର ମୁଣ୍ଡରେ ଲଗେଇ ସାଉଛି—କାହାର ଗନ୍ଧ ତ ତାକୁ ଏଡ଼େ ପାଗଳ କରି ଦେଉନି !! ଓଃ, ହାରର ନିଃଶ୍ୱାସ ପ୍ରଶ୍ୱାସ ବୋଧେ ବନ୍ଦ ହୋଇଯିବ । ପିଲାଟିକୁ ତା ମା କୋଳରେ ଦେଇ ମୁହଁ ଶୁଖାଇ ହାର ଘରକୁ ଫେରିଆସିଥିଲା ।

ତା ପରେ ? ହଁ ତା ପରେ, ହାରର ପିଲା ନାହିଁ, ପୁଅ ହେଉନି, ହବାର ଆଉ ଆଶା ବି ଦିଶୁନି । "କୋଇଲି ଲୋ ଫଳିବାର ନାହିଁ ମୋର ଆଶ—" ଫଳିବାର ଆଶା ଥିଲେ ବି ଫଳେଇବାର ଆଶା ତୁଟିଛି । ସେ ସୁନ୍ଦରୀ, ସ୍ୱାସ୍ଥ୍ୟବତୀ । ତାର ଯୌବନ ଏ ଯାବତ୍ ବି ତାର ଦେହର ମୋହ ଗୁଡ଼ାପାଶିନି । କିନ୍ତୁ କାମଦେବର ପଞ୍ଚବାଣକୁ ତାର ଡ଼ର ନାହିଁ ସିନା, ଡର ରହିଛି କେବଳ ତାର ପୁଅ ନାହିଁ । ସେ ବାଞ୍ଝ । ସମସ୍ତେ କଣ ଏ ଦୁଃଖ ବୁଝି ପାରନ୍ତି ? ତାରି ଗିରସ୍ତ ଭଲା ଏ କଥା ଜାଣିପାରୁଛି ? ସେ ଦିନ କଣ ଟିକେ ଖିଟ୍‌ଖାଟ ଲଗିବାରୁ ହୁଁ କିନା ମୁହଁ ହୁଡ଼ି କହି ପକାଇଲେ, "ବାଞ୍ଝ ରୁ, ତୋର କେଉଁଠି ସଦ୍‌ଗତି ଅଛି ?" ହାର ମନରେ ଚଅଁ ଦେଇଛି ଏ କଥା ପଦକ । ଏହିପରି କେତେ ଥର ବି କହିଲେଣି, କିନ୍ତୁ ସେଥିପାଇଁ ଦାୟୀ କିଏ ? ତାକୁ କଣ ବାଞ୍ଝ ହେବାକୁ ଖୁସି ଲାଗୁଛି ? ଯାଉଣୁ ଆସୁଣୁ ସାହି-ପଡ଼ିଶାଏ କଣ ଟିକେ କଳି ଲଗିଲେ 'ଆଣ୍ଟୁ କୁଡ଼ି' ବୋଲି ଗାଳି ଦିଅନ୍ତି । ହାରକୁ ବି ବଡ଼ ବିକଳ ଲଗେ । କାମରେ ମନ ଲଗାଇବାକୁ ହାଣ୍ଡିଶାଳ ଘରୁ ହାଣ୍ଡି ଆଣି ଧୋଇବସେ । ଦୁଆରେ ହାଣ୍ଡି ଧୋଇଲା ବେଳେ ବିଲେଇ ଛୁଆଟା ଆସି ଗୋଡ଼ରେ ଘଷିହୁଏ । ନଳାମୁହଁ ପାଖରୁ ଛୁଆଲଗା ପୋଷା ନେଉଳ ଛୁଟିଆସେ—ହାର ମୁହଁକୁ ନାଲି ନାଲି ଆଖି କରି ଅନେଇ ରହେ । ହାର ଅନ୍ୟମନସ୍କ ହୁଏ । ବେଳେ ବେଳେ କାନ୍ଦ ବି ଲାଗେ । ଏଇ ନେଉଳଟାଠାରୁ ସେ ସିନା ହୀନ !

ଘର ଧାଡେଓ୍ଵାଲୁ ଲଗି ଯେଉଁ ବାଉଁଶ କଣି ବାଡ଼, ସେଥିରେ ହିରା-ମାଆ ଆସି ତା' ପିଲଙ୍କ ଗୁହମୁତ କନା ଧୋଇ ଶୁଖାଏ । ହାଣ୍ଡି ଧୁଆ ପାଣି ସେଇଠି ପକାଇବାର କଥା । ବାଡ଼ ଦେହରୁ ଫୁରୁକୁଟିଆ ମୁରୁଗା ଗନ୍ଧ ଆସେ, ପିଲାଳିଆ ମୂତ । ହାରକୁ ସେ ଗନ୍ଧ କପରି ଅପୂର୍ବ ଲଗେ । ହାର ଥରକୁ ଥର ସେ ଗନ୍ଧରେ ପାଗଳ ହୋଇ ଉଠେ । ଗନ୍ଧ ହୁଏ ଅବଶ୍ୟ— କିନ୍ତୁ ସେ ଗନ୍ଧରେ ଯେପରି କିଛି ବିଶେଷତ୍ୱ ଅଛି । ହାର କିଛି ବୁଝି-ପାରେନା । କିନ୍ତୁ ଭିତରର ମାତୃତ୍ୱ ଅସମ୍ଭାଳ ହୁଏ ଗୁପ୍ତ ଭିତରେ ।

× × ×

କେବେ କେବେ ଉପରଓଳିଆ ଶୀତ ଦିନର ହଳଦିଆ ଖରାରେ ହାରର କାମ ନଥିଲା ବେଳେ ଯଦି ସେ ବସିଥାଏ ଧାଡେଓ୍ଵା ପାଖ ଦୁଆର ମୂହଁରେ ମୁହଁ ଶୁଖାଇ—ସଞ୍ଜ ବଳିବା ବେଳେ ନଜର ପଡ଼େ ଲୋକା ମହାପାତ୍ର ଘର ଢିଙ୍କିଶାଳ ଭିତରେ । ବୁଢ଼ୀମାଆମାନେ ଛୁଆଙ୍କୁ ହଳଦୀ ଲଗାଇ ଦେଉଥାଆନ୍ତି । ପିଲଙ୍କ କାନ୍ଦ—ପିଲଙ୍କ ହସ—ହାର ମନରେ କେମିତି ଗୋଟିଏ ସପନ ଭଳିଆ ଲଗେ...... ।

ଶାଶୁ ଶଶୁର ମଲଦିନୁ ଏବେ ଏବେ କାହିଁକ ଘରଟା ଭାରି ନିଜ୍ଜ୍ଜଟିଆ ଲଗୁଛି । ସ୍ୱାମୀ ତ ଘରେ ରହନ୍ତି ନାହିଁ । ଦିନଯାକ ମଠରେ, ରାତିରେ ବି ମଠରେ । ଯଦି କେବେ ବା ଘରେ ରହନ୍ତି—ପୂର୍ବର ସେଇ ରାଗଟା ହଠାତ୍ କେଉଁଠି ଥାଏ ବାହାରିପଡ଼େ । ଟିକିକ କଥାରେ ଚଡ଼ିଉଠନ୍ତି, ଟିକିଏ କଥାରେ 'ବାଞ୍ଝ, ଅଁଣ୍ଟୁକୁଡ଼ୀ' ଗାଳି । ହାରର ଦେହ ଚଡ଼େ । ଛୁଅନ୍ତେ !! ମଣିଷଟା ଘରେ ଗୋଡ଼ ଦେଉ ଦେଉ ତୋଡ଼ ଦେଖାଉଚ !! ତୋଡ଼ ଖାଲି କଥାରେ ନଁ । କାମରେ ବା !!

× × ×

ଏଣିକି ଏଣିକି ବାବାଜୀଙ୍କର ଗୋଷ୍ଠୀ-ବୈଠକ ହାର-ଘରର ଦାଣ୍ଡଘର କୋଠରୀରେ ହେଉଛି । ବାବାଜୀ ମହାପ୍ରଭୁଙ୍କ ଆଜ୍ଞା—ସ୍ୱୟଂ ସେ କେଉଁଠି ରାଧା, ଏ ଯୁଗରେ ଗୋପୀ ହୋଇ ମଣିଷ ରୂପ ଧରିଛନ୍ତି । ଭକ୍ତ-ମାନେ ବି ନିଜକୁ ଗୋପୀ ବୋଲି କହନ୍ତି । ଭଜନ ହୁଏ । ଭଜନ ବୋଲନ୍ତି

ନଜେ ବାବାଜୀ—ଆଉମାନେ ପାଳ ଧରନ୍ତି । ବୋଲ୍ ବୋଲ୍ ବାବାଜୀ ପାଗଳ ହୁଅନ୍ତି—ବଙ୍ଗେର ହୁଅନ୍ତି—ସଙ୍କା ହରାନ୍ତି । ଭକ୍ତମାନେ ବ ଭାବରେ ଗଦ୍‌ଗଦ୍ ହୁଅନ୍ତି । ପରସ୍ପର କୋଳାକୋଳ ହୁଅନ୍ତି—"ଆଗୋ ମିତଣି—ପ୍ରିୟ ମିତଣି ! କୁଞ୍ଜବନେ ବଂଶୀ କେ ବଜାଇଲ ?" ପରସ୍ପର ପରସ୍ପରର ଓଠ ଧରି ଏକଥା ପଚାରନ୍ତି । ଭଜ ଭଜ ଘରଣ୍ଟାକୁ ପକାନ୍ତି ଉଠାନ୍ତି । ପୁଣି ବୋଲନ୍ତି, "ଆହା କେ ବଜାଇଲ ମୋହନ ବଂଶୀ—ନୀବବନ୍ଧ ଗଲ ଖସି"—ବୋଲ୍ ବୋଲ୍ ଅଣ୍ଟାରୁ ବ ଲୁଗା ଖସିପଡ଼େ । ସେହିପରି ଅବସ୍ଥାରେ ପାଞ୍ଚ ଛ ମିନଟ ରହିବା ପରେ ପୁଣି ସମସ୍ତଙ୍କ ଧ୍ୟାନ ଭାଙ୍ଗେ—ଚେତା ପାନ୍ତି । ତାପରେ ବାବାଜୀ ବ୍ରହ୍ମତତ୍ତ୍ୱ ବୁଝାନ୍ତି, ଆତ୍ମା ପରମାତ୍ମା କଥା ବୁଝାନ୍ତି ।

ଭାତ ରାନ୍ଧସାର ହାର ଦାଣ୍ଡଘର ଦୁଆର ମୁହଁରେ ଅନ୍ଧାରେ ବସି ସବୁ ଶୁଣେ, ସବୁ ଦେଖେ । କଛି ବୁଝି ପାରେନା । କନ୍ତୁ ତାର ମନେହୁଏ, ସତେ ବା ସେଥିରୁ କଛି କଛି ବୁଝି ପାରୁଛି । ବାବାଜୀଙ୍କ ପାଟିରୁ ଅନର୍ଗଳ କଥା ବାହାରୁଥାଏ । କେତେବେଳେ ଓଡ଼ିଆ, କେତେବେଳେ ବା ଖଣ୍ଡ ଖଣ୍ଡ ବଙ୍ଗଳା । କାଲ ରାତରେ ସେ ତାଙ୍କ ଶୋଇବା ଘରେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ଦେଖିଛନ୍ତି ବୋଲ କହନ୍ତି, ନୂପୁର ଧ୍ୱନ ଶୁଣିଛନ୍ତି ବୋଲ କହନ୍ତି । ବାବାଜୀଙ୍କ ଭକ୍ତମାନଙ୍କର କାମ ମଧ୍ୟ ଅଦ୍ଭୁତ ରହସ୍ୟମୟ । ସମସ୍ତେ ଖୁବ୍ ବଡ଼ ବଡ଼ କଥା କହନ୍ତି । ସବୁ କଥା ହାରକୁ ଅଦ୍ଭୁତ ବୋଧ ହୁଏ । ବାବାଜୀଙ୍କର ହସମୁହଁ ତମ୍ବାପାଢଆ ପରି ଚେହେରା ଦେଖିଲେ ହାରକୁ ଟିକଏ ସୁଖ ବ ଲାଗେ । ସେ ଭୂମିରେ କେତେ ଗାର କାଟନ୍ତି । 'ଜୀବ' 'ପରମ' କଥା କହନ୍ତି । ହାରକୁ ସବୁ ଜାଲ୍‌ଜାଲ୍‌ଆ ଲାଗେ । ବାବାଜୀ ଯେଉଁ ରହସ୍ୟମୟ ବାୟୁମଣ୍ଡଳ ସୃଷ୍ଟି କରିବସନ୍ତି, ହାର ସେଥିରେ ନଜର ସତ୍ତା ହରାଇବସେ । ତାକୁ ଲାଗେ ବାବାଜୀ ସତେ ବା ସେତକ ମାହାତ୍ମାପୁରୁଷ ହୋଇଥିବେ ! ହୁଏତ ହାର ତାଙ୍କ ମହିମା ବୁଝିପାରୁନ !

ଝନେ ଝନେ ବାବାଜୀ ହାର ଘରେ ପ୍ରସାଦ ସେବା କରନ୍ତି । ଗୋଟିଏ ଯୋଡ଼ିଏ ଭକ୍ତ ଖାନ୍ତି ସେଦନ ତାଙ୍କ ସାଥିରେ । ହାର ସେଦନ ଭଲକରି ରୋଷେଇ କରିଥାଏ । ଖାଉଖାଉ ବାବାଜୀ ରୋଷେଇର ବହୁତ

ପ୍ରଶଂସା କରନ୍ତି । ଏଇପରି ଖାଇବା ଯେ କେତା ମୁଗରେ କେଉଁଠି ଚାଖିଛନ୍ତି ବୋଲି କୁହନ୍ତି । ଖାଇବାବେଳେ କଟଣେଇ କଟଣେଇ ତାର ଆଡ଼କୁ ନଜର ହାଣନ୍ତି । ତାରକୁ ଟିକେ ଲାଜ ଲାଗେ—ତଥାପି ସୁଖ ବି ଲାଗେ ସେ ଚାହାଣି ! ଦିନେ ଦିନେ ବି ବାବାଜୀ ସେଇ ଅଇଁଠା ହାତରେ ପାଗଳ ହୋଇଯାନ୍ତି । ରାଧା ରାଧା ବୋଲି ପାଟି କରି ଉଠନ୍ତି । ତାରକୁ ସବୁ କୁହୁକପରି ଲାଗେ । ସ୍ୱାମୀଙ୍କ ଆଦେଶରେ ବାବାଜୀଙ୍କ ଅଇଁଠା ଥାଳରେ ତାର ପ୍ରସାଦ ସେବା କରେ । ଆସ୍ତେ ଆସ୍ତେ ବାବାଜୀଙ୍କ ପ୍ରତି ତାରର କପରି ଗୋଟେ ଶ୍ରଦ୍ଧା ବି ଆସିଯାଉଚି—ଠିକ୍ 'ମୋହ' ନୁହଁ, କିନ୍ତୁ ସେ ଶ୍ରଦ୍ଧାକୁ 'ମାୟା' ବୋଲି କହିଲେ ବିଶେଷ ଭୁଲ ହେବନି । କେବେ କେବେ ଏଇ ଦୁର୍ବଳତା ବିଷୟରେ ତାର ମନରେ ପ୍ରଶ୍ନ ଉଠିଲେ, ଆପଣା ମନ ଆପଣା ମନକୁ ଭୁଲାଇଦିଏ । ସେ କିଛି ନୁହେଁ—ବରଂ ଭଲ ଲାଗେ ।

ଦିନେ ସ୍ୱାମୀ ସ୍ତ୍ରୀ ବସି ବିଚାର କଲେ—ଗୁରୁ ସେବା ନ କଲେ ତାରର ବନ୍ଧ୍ୟା ଦୋଷ କଟିବ ନାହିଁ । ସ୍ୱାମୀଙ୍କର ଗୋଡ଼ ଘସି ଦେଉ ଦେଉ ତାର ବି ନିଜର ସମ୍ମତି ଜଣାଇଲା—"ହଁଅ, ଗୁରୁ ସେବା ତ ପୁଣ୍ୟକାମ—ସେବା କଲେ କ'ଣ କିଛି ମାଗି ହୋଇ ଯାଉଛି ?"

× × ×

ସେଦିନ ତାରର ଗୁରୁନାମ ନେବା ଦିନ । ସେଦିନ ଦାଣ୍ଡ ବାଟଘର । ରାତି ଖାଇବା ପ୍ରହରଠାରୁ ବଳିଗଲାଣି । ଭଜନ ସାରି ଭକ୍ତମାନେ ଯେ ଯାହା ଘରକୁ ଗଲେଣି ଚାଲି । ବାବାଜୀ ଘର ଭିତରେ ପ୍ରଚୁର ଗଞ୍ଜେଇ ଧୂଆଁ ପିଇ ଅଚେତ ହୋଇ ସମାଧିସ୍ଥ ହୋଇଛନ୍ତି । ତାର ଘର ଭିତରକୁ ଗଲା । ହାତରେ ତୁଳସୀ, ଚନ୍ଦନ, ଚୂଆ, ଭଙ୍ଗାପାନ । ଘରେ ଗ୍ରେଟ ଦୀପଟିଏ ଜଳୁଛି । ପୂଜା ସାମଗ୍ରୀ ସେଇଠାରେ ରଖିଦେଇ ତାର କରଯୋଡ଼ ହୋଇ ଭୂଇଁରେ ସାଷ୍ଟାଙ୍ଗ ଦଣ୍ଡବତ କଲା । କିଛି ସମୟପରେ ବାବାଜୀ ସମାଧିରୁ ଉଠିଲେ । ଅଳ୍ପ ସମୟ ଗମ୍ଭୀର ହୋଇ ବସି ତାପରେ ଘର କବାଟ ଆଉଜାଇ ଆଣିଲେ । ତାର ସେହିପରି ଭୂଇଁରେ ପଡ଼ିଥାଏ । ବାବାଜୀ ଆଜ୍ଞା କଲେ—"ଉଠ ମା ଉଠ, ତୋର ବ୍ରତ ସିଦ୍ଧ ହୋଇଛି । ଅଚିରେ ତୋର ମନସ୍କାମନା ପୂର୍ଣ୍ଣ ହେବ ।"

ହାର ଉଠିଲା । ବାବାଜୀଙ୍କ କହିବା ଅନୁସାରେ ତାଙ୍କ ଆଡ଼କୁ ମୁହଁ କରି ବସିଲା । ବାବାଜୀ ଅଳ୍ପ ହସି ଆରମ୍ଭ କଲେ, "ଶୁଣ ମା, ତୋର ଦୁଃଖସବୁ ଧ୍ୟାନ କରି ଜାଣି ପାରିଛି । ସବୁ ଦୂର ହୋଇଯିବ ମା' କିଛି ଚିନ୍ତା କର ନା । ତୋର ସଦ୍‌ଜ୍ଞାନ ଉଦୟ ହୋଇଛି—ତୁ ଆସିଛୁ—ଖୁବ୍ ଭଲ କରିଛୁ ମା—ଭକ୍ତ ତୁ, ପ୍ରକୃତ ଭକ୍ତ ।" ହାର କିଛି କହୁ-ନଥାଏ—କିଛି ବି ବୁଝି ପାରୁ ନଥାଏ । କେବଳ ତଳକୁ ମୁହଁ କରି ବସିଥାଏ । ବାବାଜୀ ପୁଣି ଆରମ୍ଭ କଲେ—"ଚାହାଁ, ମୋର ଆଡ଼େ ଚାହାଁ-ଜ୍ଞାନ ଚକ୍ଷୁ ମେଲେଇ ଚାହାଁ । କଣ ଦେଖିପାରୁଛୁ ? ବ୍ରହ୍ମଙ୍କୁ ଦେଖି-ପାରୁଛୁ ? ଦେଖିପାରୁନୁ ? ହିଁ ନିଶ୍ଚୟ ଦେଖିପାରୁଛୁ ! କହ, 'ହିଁ'—କହ, 'ହିଁ' ।" କଥାର ଜୋର୍‌ରେ ହାର ଚମକିପଡ଼ି କହିଲା—"ହିଁ" ।

"ବାସ୍ ବାସ୍—ପ୍ରକୃତ ଭକ୍ତ ତୁ ମା ! ସେଇ ବ୍ରହ୍ମଙ୍କୁ ସେବା କରି ପାରିଲେ ତୋର ମନସ୍କାମନା ପୂର୍ଣ୍ଣ ହେବ । ପାରିବୁ ଏ ବ୍ରହ୍ମର ସେବା କରି ? କହ 'ହିଁ'—କହ 'ହିଁ' ।"

ଏଥରକ ବି ହାର ବୁଝି ନପାରି କହିଲା "ହିଁ" ।

ବାବାଜୀ ହସିଲେ । ଖୁବ୍ ଆଗ୍ରହରେ ହାରର ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଆଉଁଷି ଦେଇ କହିଲେ—"ଠିକ୍ ବୁଝିଛୁ ମା—ଠିକ୍ ବୁଝିଛୁ । ତୁ ପ୍ରକୃତରେ ଭକ୍ତ । ଆଗ ଜନ୍ମରେ ତୁ ବୃନ୍ଦା ଥିଲୁ—ହିଁ ବୃନ୍ଦା ଥିଲୁ । ମୋର ଠିକ୍ ମନେପଡ଼ୁଛି—ତୁ ବୃନ୍ଦା ଥିଲୁ ।"

ହାର କିଛି ବୁଝିପାରୁନି । ତାର ତ କାହିଁକି କିଛି ମନେପଡ଼ୁନି ! ଗୁରୁନାମ ପ୍ରକୃତରେ ବଡ଼ ଗହନ କଥା । ସେ ତ କଣ କିଛି ବୁଝିପାରୁନି ! ସେ ନିଶ୍ଚୟ ପାପିନୀ ! ଓଃ, କି ଗୋଳମାଳ ହୋଇଯାଉଚି ମନ ଭିତରେ । ଦେହଟା ବି କାହିଁକି ଥରି ଥରି ଲାଗୁଚି ବାବାଜୀଙ୍କ ହାତ ସ୍ପର୍ଶରେ । ନିଶା ଗର୍ଜୁଛି । ଚାରିଆଡ଼ ଶୁନଶାନ୍ । ଗୋଟିଏ କବାଟବନ୍ଦ ଘରେ ହାର ଓ ବାବାଜୀ । ହାରର ଦେହଟା ଶୀତେଇ ଉଠିଲା ! ଓଃ, ହଠାତ୍ ବାବାଜୀ ହାରର ବେକରେ ନିଜର ବାହୁ ଦୁଇଟି ବେଷ୍ଟନ କଲେ । ଛି ଛି କଅଣ ଇଏ ? ହାରକୁ କାହିଁକି ଭଲ ଲାଗିଲାନି । ଆଖି ଯୋଡ଼ାକ ତାର ଦାଉ

ଦାଉଁ ହୋଇ ଜଳ ଉଠିଲା । ମୁହଁଟା ଲାଲ ପଡ଼ିଗଲା । କିନ୍ତୁ ଦେହଟା ଯେ ଥରି ଥରି ଯାଉଛି ! ଛି, ଛି—ବାବାଜୀର ହାତ ଦୁଇଟାକୁ ହାରି ଜୋର୍‌ରେ ଛଡ଼ାଇଦେଲା । "ଏ କଣ ମହାପ୍ରଭୁ ? ଇସ୍ କି ପାପ କଥା ଏ ?" ବାବାଜୀଙ୍କ ଆଡ଼କୁ କଟମଟ କରି ଗ୍ରହିଁଲା ହାରି ।

ବାବାଜୀଙ୍କ ଆଖି ଦୁଇଟା ବଡ଼ ମଇଳା ଓ ବଡ଼ ଖୋଲଲା ହୋଇ-ପଡ଼ିଛି । ପାଟିଟା ଗେଣ୍ଡା ଖୋଲପରି ମେଲା ହୋଇଯାଇଛି । ଜିଭ ବାହାରିପଡ଼ିଛି ଅଳ୍ପ । ହାରି ଦୁଆର ଫିଟେଇ ଦେବାକୁ ଯାଉଥିଲା । ବାବାଜୀ ତାକୁ ଧରିପକେଇଲେ—"ଆଃ ! ଏ କଅଣ ମା ? ତୋର ପାପ ମନ ଏ ପର୍ଯ୍ୟନ୍ତ ବି ଯାଇନି ? ଏଇଥିପାଇଁ ଭଗବାନ ତୋ କୋଳରେ ପିଲା ଦେଇନାହାନ୍ତି । ତୁ ପାପୀ, ବ୍ରହ୍ମକୁ ନିନ୍ଦା କଲୁ । ଦେଖ, ତୋର ମଙ୍ଗଳ ହେବନି । କହୁଦଉଛି—ତୋର ଅମଙ୍ଗଳ ହେବ···ତୁ ଭକ୍ତି ମାର୍ଗ କଣ ଜାଣିନୁ । ଆଗ ପ୍ରେମ, ତାପରେ ଭକ୍ତି । 'କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ତାରେ ବଲି ପ୍ରେମ୍'—ସେଥିପାଇଁ କୃଷ୍ଣ ଥିଲେ ନିଜ ମାଇଁ ସଙ୍ଗରେ—।" ଏଇ ପର୍ଯ୍ୟନ୍ତ କହି ବାବାଜୀ ହାରିର ବକ୍ଷ ଦେଶରେ ନିଜର ହସ୍ତ ସ୍ଥାପନ କଲେ ଖୁବ୍ ଦୃଢ ଭାବରେ ।

ସେଇ ଗୋଲମାଳିଆ କଥା । ହାରି କିଛି ବୁଝିପାରୁନି । କିନ୍ତୁ ଦେହଟା ଯେ ଥରି ଥରି ଯାଉଛି । ଆଉ ସେ ଠିଆହୋଇ ପାରୁନି । ଗୋଡ଼ ଆଣ୍ଠୁ ବଳ ଖସିଆସୁଛି । ଏ କଣ ? ଏ କଣ ଗୁରୁସେବା ? ଏଇ କଅଣ ପୁତ୍ରଲାଭର ଏକମାତ୍ର ପବିତ୍ର ଉପାୟ ? ବାବାଜୀ କଅଣ କହୁଛନ୍ତି ! ଓଃ, ହାରିର ମୁଣ୍ଡ ଘୂରୁଛି । ଦେହ ତମାମ ଝାଳ । ପୁଣି ବାବାଜୀଙ୍କ ହାତ ଇସ୍ କି କଥା ଏ ? ପ୍ରଭୁ ହେ ! ଏ ତୁମରି କି ପରୀକ୍ଷା ! ହାରିର ସର୍ବାଙ୍ଗ ଥରିଲା । ସେ କଣ କରୁଛି ବୁଝିପାରୁନି । ଲାଭ ହାନି, ଭଲ ମନ୍ଦର କିଛି ଜ୍ଞାନ ନାହିଁ ତାର । ଶେଷକୁ ଦମ୍ଭ ଟିକକ ବି ଗ୍ରୁଲିଯାଉଛି ଆସ୍ତେ ଆସ୍ତେ ।

ବାବାଜୀ ଦୁଇ ହାତରେ ହାରିକୁ ନିଜ ଆଡ଼କୁ ଆଉଜେଇ ନେଲେ । ଏ କଣ ? ହାରି ତ କାହିଁକି ନିଜ ଦେହକୁ ଏ ବାବାଜୀର ବାହୁ ବନ୍ଧନ

ଭିତରୁ ମୁକୁଳାଇ ପାରୁନ ? ନାଁ ନାଁ, ଏଥିରୁ ଖସିଗଲେ ତାର କିଛି ଲାଭ ହେବନାହିଁ । ତାର ପୁଅ ହେବ ଯେ···ଙ୍କୁ ସେବା ନ କଲେ ବ୍ରହ୍ମବାବା ରାଗିପାରନ୍ତି ! ଓଃ, ପ୍ରହ୍ଲାଦଙ୍କ ଘର ସାନ ପୁଅର ବାନ୍ତିର ଆମ୍ବିଳା ଗନ୍ଧ— ଆଉ ମା ପିଲାର ମୂତଭିଜା ଗନ୍ଧ ତାର ନାକ ଭିତରେ ଲାଗିରହିଛି । ଦେହ ପୁଣି ଅଳସ । ନାଃ, ଆଉ ସେ ପାରିବ ନାହିଁ । ଆଣ୍ଠୁ କୁଞ୍ଚି ସେ ହୋଇପାରିବନି । ଯାହା ହେବାର ହେଉ ପଛେ । ତାର ସନ୍ତାନ ଦରକାର—ପୁଅ ଦରକାର ।



# ପ୍ରେମ ଓ ବଲଡଆଳୁ

ଚାରିଆଡ଼େ ରାଷ୍ଟ୍ର ହୋଇଗଲା ଯେ, ଏ ବୟସରେ ବି ଓକିଲ ଧନୁର୍ଦ୍ଧର ମଙ୍ଗରାଜ ତାଙ୍କର କନ୍ୟା ବୟସର ଗୋଟିଏ ଝିଅ ସଙ୍ଗେ ପ୍ରେମ କରୁଛନ୍ତି । ଆମ ପାଖରେ ଆଜିକାଲି କେବଳ ସେଇ ଚର୍ଚ୍ଚା । ପ୍ରେମ ତ ଆମ ପାଖରେ ବହୁତ ଲୋକ କରୁଛନ୍ତି । ମାତ୍ର ଧନୁର୍ଦ୍ଧର ମଙ୍ଗରାଜଙ୍କ ପରି ପଚାଶ ବର୍ଷର ପ୍ରୌଢ଼—ଖ୍ୟାତନାମା ଓକିଲ—ଗାର୍ଲସ୍କୁଲର ସେକ୍ରେଟେରୀ ହୋଇ ପୁଣି ସେଇ ସ୍କୁଲର ଜଣେ ନବାଗତା ଷୋଳବର୍ଷର ତରୁଣୀ ଶିକ୍ଷୟିତ୍ରୀଙ୍କ ସଙ୍ଗେ ପ୍ରେମ କରିବା କଥା ଯେ ଶୁଣୁଛି ସେ ଆଗ୍ରହରେ ଶୁଣୁଛି ଓ ଶୁଣିସାରି ବହେ ଆଶ୍ଚର୍ଯ୍ୟ ହେଉଛି—ଏବଂ ସେଇ କଥାକୁ ରଙ୍ଗୀନ କରି ଅନ୍ୟ ଜଣକୁ ଶୁଣାଉଛି । ଆମ ପାଖରେ ଏ ଘଟଣା ଶୁଣି କେତେକ ଉତ୍ତ୍ୟକ୍ତ ହେଉଛନ୍ତି—କେତେକ ନିନ୍ଦା କରୁଛନ୍ତି, ଆଉ କେତେକ କଥାଟାକୁ ଶୁଣିସାରି ମନ୍ତବ୍ୟ ଦେଉଛନ୍ତି—"ହଉ ହେ ! ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବଞ୍ଚି ରହିଲେ ଆଉ କେତେ ନୂଆ ଆଶ୍ଚର୍ଯ୍ୟ କଥା ଶୁଣିବ । ପାଞ୍ଚବର୍ଷ ମଧ୍ୟରେ ଫେର୍ ଶୁଣିବ ସୂର୍ଯ୍ୟ ପଶ୍ଚିମରୁ ଉଦୟ ହେଉଛି ।"

ଲୋକେ ତ ଯାହା କୁହାକୋହି ହେଉଛନ୍ତି—ମୁଁ ନିଜେ ମଧ୍ୟ ଆଉ ରାତିରେ ଶୋଇପାରୁନାହିଁ । ମୋ ଗୃହିଣୀ ପ୍ରତି ରାତିରେ ଏଇ ଘଟଣା ସମ୍ବନ୍ଧେ ଅଧିକ ଗୋଟିଏ ଦୁଇଟି ନୂତନ ତଥ୍ୟ ସହ ପୁନଶ୍ଚ ଆମୂଳଚୂଳ ସମଗ୍ର ଘଟଣାଟିକୁ ମୋ କାନପାଖେ ବଖାଣ କରୁଛନ୍ତି ।

ଧନୁର୍ଦ୍ଧର ବାବୁ ମୋର ବାଲ୍ୟବନ୍ଧୁ । ଦୁହେଁ ପରସ୍ପରକୁ ଖୁବ୍ ଭଲପାଉ । ତାଙ୍କ ସମ୍ବନ୍ଧେ ବହୁ ଘଟଣା ମୁଁ ଶୁଣିଛି । ବଡ଼ ଚତୁର ବ୍ୟକ୍ତି । ବଡ଼ ମହତ୍ ଆଦର୍ଶର ଲୋକ । ଓକିଲାତିରୁ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରନ୍ତି । ବହୁ ସାମାଜିକ


Digitized by srujanika@gmail.com

ଅନୁଷ୍ଠାନର କର୍ତ୍ତା ସେ । ବହୁ ଅନୁଷ୍ଠାନ ଓ ଅଭାବଗ୍ରସ୍ତ ଲୋକଙ୍କୁ ସେ ବହୁ ଅର୍ଥ ସାହାଯ୍ୟ କରନ୍ତି । ଲୋକଟାର ରସବୋଧ ଅଛି । ହସହସ ମୁହଁ । ଆଖିର ଚାହାଣିରେ ସବୁ ଦୋଷକୁ କ୍ଷମା କରିବାର ଓ ସବୁ ଲୋକଙ୍କୁ ଆପଣାର କରିବାର ସମ୍ମୋହନକର ଚାହାଣି । ସବୁ କଥାକୁ ହସରେ ଉଡ଼ାଇ ଦିଅନ୍ତି । ଦେଖିବାକୁ ବଳିଷ୍ଠ—ସୁପୁରୁଷ । ମାତ୍ର କୌଣସି ପ୍ରକାରର ଭାବପ୍ରବଣତା, ସଂବେଦନଶୀଳତା ବା ମୋହାସକ୍ତି ତାଙ୍କଠାରେ କେହି କେବେ ଦେଖିନାହିଁ । ଧନୁର୍ଦ୍ଧର ଥିଲେ ଯଥାର୍ଥରେ ମୋହମୁକ୍ତ ନିର୍ଲିପ୍ତ ବ୍ୟକ୍ତି । ତାଙ୍କର ମନୋରମା ଭାର୍ଯ୍ୟା, ପୁତ୍ର, କନ୍ୟା, ଭୃତ୍ୟ, ଅର୍ଥ ଓ ଯଶ ସବୁ ଥିଲା । ମାତ୍ର ଧନୁର୍ଦ୍ଧର ଏସବୁ ଭିତରେ ଥାଇ ମଧ୍ୟ କେଉଁଥିରେ ମିଶୁ ନଥିଲେ । କୌଣସି ପ୍ରକାରର ହୃଦୟଦୌର୍ବଲ୍ୟ ତାଙ୍କୁ ବିଚଳିତ କରୁ-ନଥିଲା । ଜନ୍ମରେ ସେ ଉଲ୍ଲସିତ ନୁହନ୍ତି କି ମୃତ୍ୟୁରେ ବି ସେ ବ୍ୟସ୍ତ ବିକଳ ହୋଇ ପଡ଼ନ୍ତି ନାହିଁ । ସାମାଜିକ ଜୀବନରେ ସେ ଥିଲେ ଜଣେ ନିଷ୍ଠାପର ଓ ନିର୍ଭରଯୋଗ୍ୟ ବ୍ୟକ୍ତି । ପରର ଉପକାର କରିବାକୁ ସେ ସବୁବେଳେ ଆଗ୍ରହଶୀଳ—ମାତ୍ର "ପରୋପକାରାୟ ସ୍ୱର୍ଗାୟ" ନୀତିବାକ୍ୟ ପ୍ରତି ଏକ ଭାବପ୍ରବଣ ଆସ୍ଥା ପୋଷଣ କରି ନୁହେଁ, ସେ ସବୁ କଥାକୁ କର୍ତ୍ତବ୍ୟ ବୋଲି ମନେ କରନ୍ତି । ଏପରି କି ତାଙ୍କ ସ୍ତ୍ରୀଙ୍କ ସଙ୍ଗେ ପ୍ରେମାଳାପ କରିବାକୁ ଓ ତାଙ୍କ ଝିଅପୁଅର ନରମ ଗାଲରେ ଚୁମା ଦେବାକୁ ବି ସେ କର୍ତ୍ତବ୍ୟ ଦୃଷ୍ଟିରୁ କରନ୍ତି—ଅନ୍ତତଃ ସେ ଏହି କଥା କହନ୍ତି ।

ଧନୁର୍ଦ୍ଧର ଭିତରେ ବଡ଼ ଉଦାସୀ । ମାତ୍ର ଉପରେ ତାଙ୍କର ମୁଖ-ରୋଚକ ରସିକତା, ହାସ ପରିହାସ ଓ ଉଦ୍ଦାମ କର୍ମଚଞ୍ଚଳ ପ୍ରକୃତି ଦେଖି ତାଙ୍କ ଭିତରର ଉଦାସୀ ଓ ନିର୍ଲିପ୍ତ ଲୋକଟିକୁ ଚିହ୍ନିବା ସାଧାରଣ ଲୋକ ପକ୍ଷେ କଷ୍ଟକର ହୋଇଥାଏ । ଧନୁର୍ଦ୍ଧର ଯେ କାହିଁକି ଏପରି ନିର୍ଲିପ୍ତ, ଉଦାସୀ ଓ ଅନାସକ୍ତ ହୋଇପଡ଼ିଛନ୍ତି ତାର ବହୁ କାରଣ ଅଛି । ଧନୁର୍ଦ୍ଧରଙ୍କ ଜୀବନରେ ବହୁ ଧରଣର ଘଟଣା ଘଟିଛି ଯାହା ସର୍ବ-ସାଧାରଣରେ ପ୍ରକାଶ୍ୟ ନୁହେଁ । ମୁଁ ନିଜେ ମଧ୍ୟ ସବୁ କଥା ଭଲଭାବରେ ଜାଣିନାହିଁ । ତେବେ ଏଇ ଧନୁର୍ଦ୍ଧର ବାବୁ ଯେ ପୁଣି ଏ ବୟସରେ

ତାଙ୍କର କନ୍ୟା ବୟସର ଗୋଟିଏ ତରୁଣୀ ଶିକ୍ଷୟିତ୍ରୀ ସଙ୍ଗେ ପ୍ରେମ କରୁଚନ୍ତି —ଏକଥା ବନ୍ଧୁବାର ଶୁଣି ମୁଁ ମଧ୍ୟ ଟିକେ ବିଚଳିତ ହୋଇପଡ଼ିଚି । ତାଙ୍କ ଜୀବନରେ ନାନା ବିଚିତ୍ର ଘଟଣାବଳୀ ମଧ୍ୟରୁ ଗୋଟିଏ ଘଟଣା ମୁଁ ଭିନ୍ନ-ଭାବରେ ତାଙ୍କ ଠାରୁ ଶୁଣିଛି । ଏହା ଗୋଟିଏ ପ୍ରେମ ବ୍ୟାପାର । ଏଇ ଗୋଟିଏ ମାତ୍ର ପ୍ରେମ ଘଟଣା ତାଙ୍କ ଜୀବନରେ ପ୍ରଥମ ଓ ଶେଷ ଏବଂ ଏଇ ଘଟଣାଟି ପରେ ଏ ପ୍ରେମଫ୍ରେମ ବ୍ୟାପାରରେ ସେ ବଡ଼ ନିଷ୍ଠୁର ଭାବେ ଅନାସକ୍ତ । ଘଟଣାଟି କହେଁ —

ଧନୁର୍ଦ୍ଧରବାବୁ ଯେତେବେଳେ ନଅବର୍ଷ ବୟସର ବାଳକ, ସେତେ-ବେଳେ ସେ ଖୁବ୍ ଭାବପ୍ରବଣ ଥିଲେ । ଟିକିଏ କଥାରେ ସେ କାନ୍ଦି-ପକାଉଥିଲେ ଏବଂ ତାଙ୍କଭିତରେ ଏକ କବିସୁଲଭ କୋମଳ ଓ ରସାଳ ହୃଦୟ ଥିଲା । ଗଳ୍ପ, କବିତା, ନାଟକ ଆଦି ଯେ କୌଣସି ବହି ତାଙ୍କ ଆଗରେ ପଡ଼ିଥିଲା ସେ ଏକା ନିଃଶ୍ୱାସରେ ସେସବୁ ପଢ଼ି ସାରଦେଉଥିଲେ । ସେ ସବୁ ଭଲଭାବରେ ନ ବୁଝି ପାରୁଥିଲେ ବି ତାଙ୍କର ଜନ୍ମଗତ ଗଭୀର ରସବୋଧ ବଳରେ ସେ କିଛି କିଛି ନିଜର ସ୍ୱପ୍ନିଳ ଆବେଶ ଓ ସଂବେଦନ-ଶୀଳତାରୁ ଧରି ନେଇ ପାରୁଥିଲେ । ତେବେ ସବୁଠାରୁ ସେ 'କେଦାର-ଗୌରୀ' ଗୀତାଭିନୟଟିକୁ ପଢ଼ିବାକୁ ଖୁବ୍ ଭଲପାଉଥିଲେ ଏବଂ ନିଜକୁ 'କେଦାର' ସ୍ଥାନରେ ରଖି ସେ କଳ୍ପନା ଓ ସ୍ୱପ୍ନରେ ତାଙ୍କର ମାନସୀ ଗୌରୀଟିକୁ ଖୋଜିଲାଗିଥିଲେ । ସେଇ ସ୍ୱପ୍ନଚାରିଣୀ, ଅଣଦେଖା, ଭାବପ୍ରସୂତା ଅନାଗତା 'ଗୌରୀ'ଟି ଲାଗି ଧନୁର୍ଦ୍ଧର ବାବୁ ପିଲାଦିନେ ବଡ଼ ବିରହ ବ୍ୟଥା ଭୋଗିଛନ୍ତି । ଶୀତଦିନେ ବଡ଼ଭୋରରୁ ନିଦ ଭାଙ୍ଗିଯାଏ । ରେଜେଇ ଭିତରେ ଅଧାନିଦ ଓ ଅଧାଚେଁଆ କଣ୍ଠରେ ସେ ଗୀତାଭିନୟର ଗୋଟିଏ ଧାଡ଼ି ବିଳିବିଳେଇ ଉଠନ୍ତି —"ଗୌରୀ ! ଗୌରୀ ! ମୋର ହୃଦୟର ରାଣୀ—ତୁମେ କୁଆଡ଼େ ଗଲ ?" ତାଙ୍କର ନିଦ ଭାଙ୍ଗିବାମାତ୍ରେ ସେ ଅନୁଭବ କରନ୍ତି—ସତେଯେବା ଗୌରୀ ତାଙ୍କ ପାଖେ ଏଇ ରେଜେଇ ଭିତରେ ଶୋଇଥିଲା, ମାତ୍ର ତାଙ୍କ ଅଜାଣତରେ ତାଙ୍କୁ ଛାଡ଼ି କୁଆଡ଼େ ପଳାଇ-ଯାଇଛି !! ଧନୁର୍ଦ୍ଧରଙ୍କର ମଧୁର କଳ୍ପିତ ହୃଦୟଟି ବେଦନାରେ

ଲ୍ପମୁଗଉଠେ—"ଗୌରୀ ! ମୋର ପ୍ରାଣପ୍ରିୟା ଗୌରୀ ! ତୁମେ କେଉଁ-
ଠାରେ ଅଛ ? ଭଲ ଥରେ ଦେଖା ଦେଇ ଏ ଦଗ୍ଧ ପ୍ରାଣକୁ ଶୀତଳ
କର ।" ରେଳେଇ ଭିତରେ ସକାଳୁଆ ଅନ୍ଧାର ଘରେ ଶୋଇରହି
ଧନୁର୍ଦ୍ଧର ମନେ କରନ୍ତି—ସେ ଘୋର ଜଙ୍ଗଲ ମଧ୍ୟରେ ଗୌରୀଙ୍କୁ ଖୋଜି
ଲଗିଛନ୍ତି ଏବଂ ହଠାତ୍ ଏକ ହିଂସ୍ର ବ୍ୟାଘ୍ରର ଭୟଙ୍କର ଗର୍ଜ୍ଜନ ଶୁଣି-
ପାରୁଛନ୍ତି । ଧନୁର୍ଦ୍ଧର ଭୟରେ ହାତମୁଠା ବନ୍ଦ କରନ୍ତି ଏବଂ ପ୍ରସ୍ତୁତ
ହୋଇଯାନ୍ତି ଖଣ୍ଡାରେ ବାଘଟିକୁ ମାରିବେ ବୋଲି । ଏହି ଅବସ୍ଥାରେ
ପୁଣିଥରେ ତାଙ୍କୁ ନିଦ ଲାଗିଯାଏ । ଆଉ ସକାଳ ଆଠଟାରେ ସ୍କୁଲକୁ
ଯାଇ ସେ ବିଳମ୍ବ ଉପସ୍ଥିତ ହୋଇଁ ମାଷ୍ଟରଙ୍କଠାରୁ ବେଶ୍ ବେତ ପାହାର
ଗୁଡ଼ାଏ ସହ୍ୟ କରନ୍ତି । ଧନୁର୍ଦ୍ଧର କିନ୍ତୁ ମନେକରନ୍ତି—"ସବୁ କଷ୍ଟ ସିନା
ସେଇ ପ୍ରାଣପ୍ରିୟା ଗୌରୀ ଲାଗି !! କିନ୍ତୁ ସେ ଗୌରୀ କାହିଁ ?" ଧନୁର୍ଦ୍ଧର
ମନ ଭିତରେ ସେଇ ଅନାଗତା ମାନସୀ ଗୌରୀ ଲାଗି ବିଳାପ କରନ୍ତି,
"ଗୌରୀ—ଗୌରୀ—କାହିଁ ସେହି ଗୌରୀ ?"

ଦିନେ କିନ୍ତୁ ଗୌରୀ ସତକୁସତ ଧନୁର୍ଦ୍ଧରଙ୍କ ଆଖି ଆଗକୁ ଆସିଲା—
ଅବଶ୍ୟ ଶ୍ରୀମତୀ ପ୍ରଭାତୀ ସୁନ୍ଦରୀ ଦେଈ ରୂପରେ । ନଅ ଦଶ ବର୍ଷର
କିଶୋରୀଟିଏ. ପାତଳ ମୁହଁଟି—ସରୁ ସରୁ ଭୂରୁ ଦୁଇଟି—ଲମ୍ବା ନାକଟିଏ ।
ଅଳ୍ପ ଢେଙ୍ଗୀ ହୋଇ ପାତଳ ଝିଅଟିଏ । ଦୁଧ ଅଳତାରେ ଗାଧୋଇଲା
ପରି ଦେହର ରଙ୍ଗ । ସରୁ ଲମ୍ବ ନାକଟିରେ ଗୋଟିଏ ସୁନାର ମାଛି ।
ମଲ୍ଲୀ ଫୁଲ ପରି ହସି ହସି ଧନୁର୍ଦ୍ଧରଙ୍କୁ ପଚାରିଲା—"ମୋର ସାହିତ୍ୟ ବହି
ନାହିଁ । ଆଜି ମତେ ଟିକେ ତମ ବହିରେ ପଢ଼ାଇବ ? ମୋ ବହି
ପଅରଦିନ ଆସିବ କଟକରୁ । ଆଜି ତ ମୋ ନାଁ ଲେଖା ହେଲା !"

ଧନୁର୍ଦ୍ଧରଙ୍କ ପାଟିରୁ ବଚନ ବାହାରିଲା ନାହିଁ । ତାଙ୍କର କଣ୍ଠ
ରୁଦ୍ଧ ହୋଇ ଆସିଲା । ଆଖି ଛଳଛଳ ହୋଇ ଉଠିଲା । ଆବେଗ ଓ
ଉନ୍ମାଦନାର ବେଦନାତିଶଯ୍ୟରେ ତାଙ୍କର ମନେହେଲା, ସତେ ବା ତାଙ୍କ
ଦେହ ଫୁଲିଉଠୁଛି । ସେ ଅନୁଭବ କଲେ—ସତେ ବା ବେଶୀ ପବନଦିଆ
ବେଲୁନ୍ ପରି ସେ ଫୁଲି ଫୁଲି ହାଲୁକା ହୋଇ ଉଡ଼ିଯିବେ !! ସେ ଭାବିଲେ

ସେ ବୋଧେ ଫାଟିଯିବେ ! କେତେ ସମସ୍ତ ଏହ୍ପ ଭଳ କହିଲ । ତାଙ୍କର ମନେହେଲ—ଏଇ-ଏଇ ତେବେ ତାଙ୍କର ପ୍ରାଣପ୍ରିୟା ଗୌରୀ ?? ଏତେ ଦନେ—ଏତେ ଦନେ ସେ ତାଙ୍କୁ ଦେଖାଦେଇଛ ?

ନ୍ଦଳନ୍ଦଳ ଆଖିରେ ଧନୁର୍ଦ୍ଧର ହସିଉଠିଲେ । ବେଦନା ଓ ଆନନ୍ଦର ମିଶ୍ରିତ ଆବେଗରେ ଧନୁର୍ଦ୍ଧର ଝିଅଟିର ହାତ ଧର ତାଙ୍କର ବସିବା ଜାଗାକୁ ନେଲେ । ଦୁହେଁ ଏକାଠି ଜାକଜକ ବସିଲେ । ସାହତ୍ୟ ପିଣଅଢ଼ରେ ଧନୁର୍ଦ୍ଧର ଆଗ୍ରହରେ "ଆଦର୍ଶ ପାଠ" ବହି ମେଲଇ ପ୍ରଭଶ୍ର ଆଖି ଆଗରେ ଟେବୁଲ ଉପରେ ରଖିଲେ । ସେଦନର ପାଠ୍ୟ ବଷୟ ଥିଲ "ବଲଡଆକ୍ରୁ" ।

ନୂଆ ପାଠ ପଢ଼ାଇବା ଆଗରୁ ମାଷ୍ଟ୍ରେ ପୁରୁଣା ପାଠରୁ ପ୍ରଶ୍ନ କଲେ । ତା ପୁର୍ବଦନ "ଧଳା ଭାଲ୍" କଥା ପଢ଼ାହୋଇଥିଲ । ମାଷ୍ଟ୍ରେ ପଗ୍ଭରଲେ—"ଧଳା ଭାଲ୍ କେଉଁ ଅଞ୍ଚଳରେ ଦେଖାଯାନ୍ତି ?"

ପ୍ରଶ୍ନଟା ହେଲ ପ୍ରଭଶ୍ରକୁ । ସେ ଜାଣିନଥିଲ । ଧନୁର୍ଦ୍ଧର ତା' କାନରେ କହଦେଲେ—ଉତ୍ତର ମେରୁ ଅଞ୍ଚଳ । ପ୍ରଭଶ୍ର କହଦେଇ ଆନନ୍ଦରେ ହସିପଡ଼ିଲ ଏବଂ ବଡ଼ ଦର୍ପଣସମାନ ଆଖିରେ ଗୃହିଁରହ ସେ ତା ପାଖକୁ ଲଗିକର ବସିଲ ।

ହଠାତ୍ ଧନୁର୍ଦ୍ଧରଙ୍କର ମନେହେଲ—ଏହ୍ପ ପ୍ରଭଶ୍ରସୁନ୍ଦରୀଟି ସତେ ଅବା ଉତ୍ତର ମେରୁର ସେଇ 'ଧଳାଭାଲ୍'—ତାର ଗୋରା ତକ୍‌ତକ୍ ଦେହ କଅଁଳ ହାତ ଓ ଜଙ୍ଘ ।

ଧନୁର୍ଦ୍ଧର ଭାବଲେ—ଉତ୍ତର ମେରୁର ସେଇ ରୁମାଳିଆ ସୁନ୍ଦର ଧଳା ଭାଲ୍‌ଟିକୁ ସେ ଜାକ ଧର ବସିଛନ୍ତି । ସହଜେ କୁହୁଡ଼ିଆ ଶୀତଦନ । ପ୍ରଭଶ୍ର ସୁନ୍ଦରୀର ଦେହର ସ୍ୱରୂପ—ନିଜ ମନର ଉତ୍ତେଜନା ଓ ଉତ୍ତର ମେରୁର କଳ୍ପନାର ଧଳାଭାଲ୍—ସବୁ ମିଶି ଧନୁର୍ଦ୍ଧରଙ୍କ ହୃଦୟରେ ଏକ ଅଦ୍ଭୁତ ଆଲୋଡ଼ନ ସୃଷ୍ଟି କଲ । ଘରେ ତୂଳାଦଆ ନରମ ଓ ଗରମ ରେଜେଇ ଯେତେବେଳେ ବୋଉ ତା'ର ଦେହ ଉପରେ ପକାଇ ଦଅନ୍ତି, ଧନୁର୍ଦ୍ଧରର ମନେପଡ଼ିଯାଏ ତୁନ୍ଦ୍ରା ଅଞ୍ଚଳର ସେଇ ଏସ୍କିମୋ ଆଉ ଧଳା

ଖୁଲ୍‌ମାନଙ୍କ କଥା—ଯାହା ବିଷୟରେ ସେ ବହିରେ ପଢ଼ିଛନ୍ତି । ଅଜି ପ୍ରତିଭାସୁନ୍ଦରୀର ନରମ ଗରମ ସ୍ପର୍ଶ ସଙ୍ଗେ "ଧଳା ଖୁଲ୍" ପ୍ରସଙ୍ଗ ମିଶି ତାର ଅବଚେତନ ମନରେ ଏକ ସୁଖାନୁଭୂତିର ସୂକ୍ଷ୍ମ ସ୍ତୁପ ରହିଗଲା ।

ପୁଣି ସେ ଦିନ ପଢ଼ାଗଲା "ବଲଡଅାଳୁ" ପାଠ ଗୋଟାଏ ଅତି ନୀରସ ବିଷୟ । କିନ୍ତୁ ଧନୁର୍ଦ୍ଧରଙ୍କୁ ସେ ଦିନ ତାହା ବଡ଼ ସରସ ବୋଧ ହେଲା । ପାଣି ଭିତରେ ଅନେକ ଦିନ ଧରି ପଥର ପଡ଼ି ରହିଲେ ପଥର ଗୁଡ଼ିକରେ ବି କୋମଳ ଶିଉଳି ଲାଗିଯାଏ । ଧନୁର୍ଦ୍ଧରର ଭାବସମୁଦ୍ରରେ ପଡ଼ି 'ଧଳା ଖୁଲ୍' ଓ 'ବଲଡଅାଳୁ' ପାଠ ପ୍ରେମ ପକ୍ଷେ ଅବାନ୍ତର ଓ ନୀରସ ବସ୍ତୁ ଦୁଇଟିରେ ବି ଭାରି ଶିଉଳି ଲାଗି ରହିଲା । ସେଇ ଭାଙ୍ଗିଆ ଡେସ୍କ—ଭଙ୍ଗା କାନ୍ଥ—ବୁଢ଼ା ମାଷ୍ଟ୍ରେ—ଶୀତ ସକାଳ—ଧଳା ଖୁଲ୍ ଓ ବଲଡଅାଳୁ ପାଠ ମଧ୍ୟ ପ୍ରତିଭାସୁନ୍ଦରୀ ସଙ୍ଗେ ମିଶି ଧନୁର୍ଦ୍ଧରଙ୍କ ମନରେ ଏକ ଅପୂର୍ବ ଶିହରଣ ଆଣିଲା ।

ସେହି ଦିନଟି ଧନୁର୍ଦ୍ଧରଙ୍କ ଜୀବନରେ ଏକ ସ୍ମରଣୀୟ ଦିବସ । ସେହି ଦିନଟିକୁ ଆଜି ମଧ୍ୟ ଧନୁର୍ଦ୍ଧର ଏକ ଅଧାଭୁଲା ସୁନ୍ଦର ସ୍ୱପ୍ନ ଭଳି ମନେ-ରଖିଛନ୍ତି । ଏବେ ବି କେନିତାଲ ଆଳୁର ଦମ୍ ଖାଇଲା ବେଳେ ମନେ ପଡ଼େ—'ଆଦର୍ଶ ପାଠ'—'ଶୀତ ସକାଳ'—'ଭଙ୍ଗା କାନ୍ଥ'—'ଖାଲ ଢିପ ଚଟାଣ'—'ବୁଢ଼ା ମାଷ୍ଟ୍ରେ'—'ଭାଙ୍ଗିଆ ଡେସ୍କ'—'ଧଳା ଖୁଲ୍'—'ବଲଡ-ଅାଳୁ'—ଆଉ ସେଇ ଗୋରା ତକତକ୍ ତନୁପାତଳୀ ହସକୁଡ଼ୀ ଝିଅଟି—ଶ୍ରୀମତୀ ପ୍ରତିଭା ସୁନ୍ଦରୀ ଦେଈ—ଯାହାର ସରୁ ଲମ୍ବା ନାକଟିରେ ଜକ୍‌ଜକ୍ ଗୋଟିଏ ସୁନାର ମାଛି !!

ଏବେ ଥରେ ଧନୁର୍ଦ୍ଧରବାବୁଙ୍କର ଆଠ ବର୍ଷର ଝିଅ ଆସି ତାଙ୍କୁ ପଚାରିଲା—"ବାପା ! ଧଳା ଖୁଲ୍ କଣ ଆମ ଦେଶରେ ନାହାନ୍ତି ?" ଧନୁର୍ଦ୍ଧର ବାବୁ ଚମକି ପଡ଼ିଲେ—'ଧଳା ଖୁଲ୍ ??' ତାପରେ ଦୁଇ ମିନିଟ କାଳ ସେ ଘୁମ୍‌ମାରି ବସିପଡ଼ିଲେ । ତାଙ୍କ ମୁଣ୍ଡ ବୁଲେଇଦେଲା । ସାନ ଝିଅଟି ଚିତ୍କାର କରି ଉଠିଲା । —ଶ୍ରୀ ଅନଙ୍ଗମଞ୍ଜରୀ ଦୌଡ଼ିଆସିଲେ । ପାଣି ଛିଞ୍ଚା ହେଲା, ନାକରେ ଅଦାରସ ଟେଣ୍ଡାଗଲା । ଚେତା ପାଇ ଉଠି-

ବସି ଯେ ବଡ଼ ଅପ୍ରସ୍ତୁତ ହେଲେ । କେହ୍ନ ଜାଣୁ କାରଣ ବୁଝି ପାରିଲେ ନାହିଁ । ସାନ ଝିଅଟି ଅଶ୍ରୁପୂର୍ଣ୍ଣ ହୋଇ ତାଙ୍କ କୋଳକୁ ଆସି ପଚାରିଲା—"ବାପା ! ତୁମକୁ କଣ 'ଧଳା ଭାଲୁ' ଖବର ଡର ଲଗେ ?"

× × ×

ସେ ଦିନ ଗଲା । ମାସେ ଗଲା । ଧନୁର୍ଦ୍ଧର ପ୍ରଭାସ ସୁନ୍ଦରଙ୍କୁ ଖୁବ ଭଲ ପାଇ ବସିଲେ । ଦୁହେଁ ଏକା ସଙ୍ଗେ ବସନ୍ତି—ଏକା ବେଞ୍ଚରେ ପଢ଼ନ୍ତି । ବ'ସନ୍ତରେ ବଗିଚା ଲଗିବା ପାଇଁକି କେତେ ଗୌରୀ ଗୀତାଭିନୟ ହେଉ କେତେ ଗୌରୀ ପାର୍ଟ ଅଭିନୟ କରନ୍ତି । ଆଉ କର୍ଣ୍ଣକ ମଧ୍ୟରେ ସେମାନେ ସତ୍ୟ କରିନେଲେ ଯେ ସେମାନେ ପରସ୍ପରକୁ ବାହା ହେବେ । ଯଦି ଉଭୟ ପକ୍ଷର ବାପ ମାଆ ମନା କରନ୍ତି, ତେବେ ସେମାନେ ଦିନେ ରାତିରେ କୁଆଡ଼ େ କଣ ଘରୁ ବାହାରିଯିବେ ଘୋର ବନସ୍ତକୁ । ପ୍ରଭାସଠାରୁ ସମ୍ମତି ପାଇଲା ପରେ ଧନୁର୍ଦ୍ଧରଙ୍କ କଳ୍ପନାରେ ଡେଣା ଲଗିଗଲା । ନାଃ—ଆଉ ବୃଥା ବିଳମ୍ବରେ ପ୍ରୟୋଜନ କଣ ? କେଉଁଦିନ ରାତିରେ କେତେବେଳେ ସେମାନେ ଘର ଛାଡ଼ିବେ ? କେଉଁ ଜଙ୍ଗଲକୁ ପଳାଇବେ ସେମାନେ ? ସେ କୌଣସି ଜଙ୍ଗଲ ଦେଖି ନ ଥିଲେ । ତାଙ୍କ ଘରର ଅଳ୍ପ ଦୂରରେ ଗୋଟିଏ ନିପଟ୍ଟ ଆମ୍ବତୋଟା । ନେତଳାଟୀ, କେନ୍ଦୁ, ବଡ଼ ବଡ଼ ଉଇହୁଙ୍କା, ସାନ ସାନ କଣ୍ଟା ବାଉଁଶ ବୁଦା, କେତୋଟି ଶୃଗାଳ ଆଉ ଗୋଟିଏ ଦୁଇଟି ଗଧିଆଙ୍କର ସେହିଠାରେ ବାସସ୍ଥଳୀ । ଧନୁର୍ଦ୍ଧର ଏହାକୁହିଁ ମହା ଅରଣ୍ୟ ବୋଲି ମନେ କରିଥିଲେ ।

ଗୌରୀଙ୍କୁ ସଙ୍ଗରେ ନେଇ ଏହି ଅରଣ୍ୟକୁ ବନସ୍ତକୁ ପଳାଇବା ଲାଗି ତାଙ୍କର ମନ ଅସ୍ଥିର ହୋଇ ଉଠିଲା । ସେ ଖିଆ ପିଆ ଭୁଲିଗଲେ । ପାଠ ପଢ଼ାରେ ମନ ଲାଗିଲା ନାହିଁ । ସର୍ବଦା ପଳାୟନ ଚିନ୍ତା । ରାତିରେ ତାହାହିଁ ସ୍ୱପ୍ନ ଦେଖିଲେ ।

ଦିନେ ପ୍ରଭାସଙ୍କୁ ଡାକି ଧନୁର୍ଦ୍ଧର ବ୍ୟାକୁଳ କଣ୍ଠରେ ପ୍ରସ୍ତାବ ଦେଲେ—"ପ୍ରଭାସ ! ଆଜି ରାତିରେ ଆମେ ବାହାରିବା । ମୁଁ ଆସି ଏଇ ବୁଲାପାଖେ ଅପେକ୍ଷା କରିଥିବି । ତୁ ଆସିବୁ ତ ?"

ପ୍ରଭାସ ହସିଦେଲା । ସେ କହିଲା—"ନାଁ, ମୋତେ ଡର ଲଗିବ ।

ତୁମେ ଯଦି ଅମ ବାଡ଼ି ପାଖକୁ ଆସିବ, ତେବେ ମୁଁ ଦିବ ।"

ଚଞ୍ଚଳ ପାଦ ପକାଇ ଧନୁର୍ଦ୍ଧର ଘରକୁ ଆସିଲେ । ସନ୍ଧ୍ୟା ହେଲା । ଅନ୍ଧାର ହେଲା । ଶୁଣଆଡ଼େ ନିସ୍ତବ୍ଧ । ଧନୁର୍ଦ୍ଧର ଦାଣ୍ଡକୁ ଆସିଲେ । କିଛି ବାଟ ବି ଆଗେଇ ଗଲେ । ଘରର ସବୁ ମାୟା ମମତା ସେ ଛାଡ଼ିଛନ୍ତି । ଛାତି ଦମ୍ ଦମ୍ ପଡ଼ୁଛି । ଧନୁର୍ଦ୍ଧର ଆଗକୁ ଗୁଳିଲେ । ଗୋଟିଏ କାଳିଆ କୁକୁର ଅନ୍ଧାର ଭିତରୁ ସାଁ ସାଁ ହୋଇ ତାଙ୍କ ଆଡ଼କୁ ମାଡ଼ି ଆସିଲା । ଧନୁର୍ଦ୍ଧର ଭୟରେ ଚିତ୍କାର କରି ପଛକୁ ବୁଲିପଡ଼ି ଘର ଅଡ଼କୁ ଦୌଡ଼ିଲେ । ତାଙ୍କ କକେଇ ଧନୁର ଏଭଳି ଅବସ୍ଥା ଓ ଚିତ୍କାର ଦେଖି ରାଗରେ ତାଙ୍କର କାନ ଧରି ମାରିଲେ ଦୁଇଟା ବ୍ରହ୍ମ ଚାପୁଡ଼ା—"ବଦମାସ ପିଲା—ପାଠ ପଢ଼ାର ନାଁ ଗନ୍ଧ ନାହିଁ—ଅନ୍ଧାରରେ ଦଉଡ଼ୁଛୁ ଖେଳିବାକୁ ।"

ଧନୁର୍ଦ୍ଧର କାନ୍ଦି କାନ୍ଦି ଘର ଭିତରେ ପଶିଲେ । ସେ ଖାଇସାରି ଶୋଇଲେ । ଶେଯ ଉପରେ ପଡ଼ି ସେ କେବଳ ସେଇ କଥା ଭାବିଲେ । ଅହା—ପ୍ରିୟତମା ଆସି କେତେବେଳୁ ତା' ବାଡ଼ିରେ ଠିଆ ହୋଇ ଏକାଏକା ତାଙ୍କୁ ଅପେକ୍ଷା କରିଥିବ !! ଏତେ ଡେରି ହେଲଣି—ସେ କଣ ଘରକୁ ଫେରିଯାଇ ନଥିବ ? ଆହା ! ତାକୁ ଯଦି ତା' ବାପା ଏହିପରି ପିଟିଥିବେ ! ସେ ତ କେତେ ବିକଳରେ କାନ୍ଦିକାନ୍ଦି ମୋତେଇ ମନ ଭିତରେ ଗାଳି ଦେଉଥିବ ! ଆହା—ପ୍ରାଣପ୍ରିୟା ମୋ ଲାଗି କେତେ କଷ୍ଟ ସହୁଥିବ !! ଧନୁର୍ଦ୍ଧର ତକିଆରେ ମୁହଁମାଡ଼ି କହଁକହଁ ହୋଇ କାନ୍ଦି ଲାଗିଲେ ।

ତାଙ୍କ ମା' କହିଲେ—"ଦେ-ଖୁନ-ହ ! କକେଇ ତ ଗୋଟେ ମାଇଲେ—ସେତେବେଳେ ଯାଇ ମାରିଥିଲେ—ତୁ ପୁଣି ଏତେବେଳେ ଆଉ କାନ୍ଦୁଛୁ କାହିଁକି ?"

ଆହା ! କିଏ ବୁଝି ପାରନ୍ତା ଧନୁର୍ଦ୍ଧରଙ୍କ ସେତେବେଳର ମନର ବେଦନା ! ଧନୁର୍ଦ୍ଧରଙ୍କର କାନ୍ଦଣା ??

ଧନୁର୍ଦ୍ଧରଙ୍କୁ ନିଦ ହୋଇଗଲା । ଗୋଟାଏ କଣ ପର୍ବ ଯୋଗୁଁ ସ୍କୁଲ ଦୁଇଦିନ ବନ୍ଦ ଥିଲା । ସ୍କୁଲ ଖୋଲିଲା—ସେଦିନ ସକାଳୁ ଉଠି ସେ ସ୍କୁଲକୁ

ଗଲେ । ମାତ୍ର ପ୍ରତିଭା କାହିଁ ? ସ୍କୁଲ ଛୁଟି ହେଲା ତଥାପି ସେ ଆସିଲାନାହିଁ । କଣ ହେଲା ତାର ? ସେ କଣ ଅଭିମାନରେ ଆସୁନାହିଁ ? ହାୟ—ହାୟ ! ଧନୁର୍ଦ୍ଧର ବ୍ୟସ୍ତ ହୋଇ ପଡ଼ିଲେ । ଏକଲା ଯାଇ ସେ ବାଲିଗୁଡ଼ ଉପରେ ବସି କାନ୍ଦିବାକୁ ଲାଗିଲେ । ସେ କଣ ଆଉ ଆସିବ ନାହିଁ ? ହଁ ହଁ—ମୋର ତ ସବୁ ଦୋଷ । ମୁଁ କଥା ଦେଇ କଥା ରଖିପାରିଲି ନାହିଁ । ସେ ପ୍ରତିଭାକୁ ଭେଟିବା ଲାଗି ତାଙ୍କ ଘରକୁ ଗଲେ । ପ୍ରତିଭାର ବାପା ସ୍ଥାନୀୟ ଡାକ୍ତରଖାନାର ଡାକ୍ତର । ଧନୁର୍ଦ୍ଧର ଅଣନିଶ୍ୱାସୀ ହୋଇ ତାଙ୍କ ଘର ଭିତରକୁ ପଶିଲେ । ମାତ୍ର ଏ କଣ ? ଏମାନେ କଏ ? ତା ବାପା ବୋଉ କାହାନ୍ତି ? ତାର ସାନ ଭାଇଭଉଣୀ କାହାନ୍ତି ? କେହି ଜଣେ ଚଷମାଧାରୀ ଅଚିହ୍ନା ପେଟୁଆ ଲୋକ ପାଟିକରି ଉଠିଲା—"ହେ-ହେ-ହେ ଟୋକା, କୁଆଡ଼େ ସିଧା ଭିତରକୁ ପଶି ଯାଉଚୁ ?" ଧନୁର୍ଦ୍ଧର ଲାଜେଇ ହୋଇ ଘର ଭିତରୁ ପଦାକୁ ବାହାରି ଆସିଲେ ।

ଧନୁର୍ଦ୍ଧର ବୁଝିଲେ—ପ୍ରତିଭାର ବାପା ଏ ଡାକ୍ତରଖାନାରୁ ବଦଳି ହୋଇ ଅନ୍ୟ ଜାଗାକୁ ଗଲେଣି । ତାଙ୍କ ଜାଗାରେ ନୂଆ ଡାକ୍ତର ଆସି ତାଙ୍କ ଘରେ ରହିଲେଣି ।

ପ୍ରତିଭା ଆଉ ଆସିବ ନାହିଁ ? ଆଉ ସେ ତାକୁ ଦେଖି ପାରିବେ ନାହିଁ ? ନାହିଁ ? ସେ ଏଡ଼େ ନିଷ୍ଠୁର ? ସେ ଗଲାବେଳେ ଟିକେ ଆଗରୁ କହିକରି ଗଲା ନାହିଁ ? ଦୁଃଖ, ଅଭିମାନ, କାରୁଣ୍ୟ ଓ ବ୍ୟର୍ଥତାରେ ଧନୁର୍ଦ୍ଧର ଭାଙ୍ଗି ପଡ଼ିଲେ । ଅନେକ ଦିନ ପର୍ଯ୍ୟନ୍ତ ପ୍ରତିଭାକୁ ଝୁରିଝୁରି ନୀରବରେ କେବଳ ସେ ଲୁହ ଢାଳିଛନ୍ତି ।

× × × ×

ସେଇ ଦିନଠାରୁ ଦଶବର୍ଷ ପରେ—

ଧନୁର୍ଦ୍ଧର ବେଶ୍ ବଡ଼ ହୋଇଗଲେଣି । କଲେଜରେ ପଢ଼ୁଛନ୍ତି । ବଡ଼ଦିନ ଛୁଟିରେ ଘରକୁ ଆସିଥାନ୍ତି । ଶୀତଦିନ । ସକାଳୁ ଉଠି ଧନୁର୍ଦ୍ଧର ନଦୀକୂଳକୁ ବୁଲି ବାହାରିଲେ । କୁହୁଡ଼ିରେ କିଛି ସ୍ପଷ୍ଟ ଦେଖା-ଯାଉନାହିଁ । ବୁଲିବୁଲି ତାଙ୍କ ପିଲାଦିନର ପରିଚିତ ସେଇ ପାଠଶାଳା

ନକଟକୁ ଆସିଲେ । ସବୁ ବଦଳଗଲଣି । ଭଙ୍ଗାକାନ୍ଥ ପୁଣି ଥରେ ଇଟାରେ ତଆର ହୋଇଛୁ । ଟିଣ ଛପର ଘର । କାନ୍ଥରେ ନୂଆ ଧଉଳା ହୋଇଛୁ । ତାଙ୍କ ସମସ୍ତଙ୍କୁ ମନେପକାଇବା ଲାଗି କୌଣସି ପୁରାତନ ସ୍ମୃତି ମଧ୍ଯ ଆଉ ନାହିଁ । କନ୍ତୁ ଅଛୁ ଗୋଟିଏ ଗୁଳୁଣ୍ଡା ଗଛ । ଧନୁର୍ଦ୍ଧରଙ୍କ ସମସ୍ତରେ ଏଇ ଗଛଟି ଲଗା ହୋଇଥିଲା । ପାଣି ବୋହି ବୋହି ହାତରେ ଫଣ୍ଟି ବସିଥିଲା । ସେ ଗଛ ଏବେ ବଶାଳ ଦ୍ରୁମରେ ପରଣତ ହେଲଣି । ଧନୁର୍ଦ୍ଧର ସେ ମୂଳକୁ ଗଲେ । ଗଛଟିକୁ ଆଉଁସିଲେ । ତାକୁ କୁଣ୍ଢାଇଧର ନଜ ଗାଲକୁ ସେଠି ଘଷିଲେ । ହାସ୍ୟ-ହାସ୍ୟ—କେତେ ଦନର କଥା—ଗୋଟିଏ ମ୍ରୀ ପରି ଲାଗୁଛୁ । ସେପର ଗୋଟିଏ ସ୍ୱପ୍ନ !!

ହଠାତ୍ ପଛୁଆଡୁ କାହାର ଶବ୍ଦ ଶୁଣି ଧନୁର୍ଦ୍ଧର ଚମକ ପଡ଼ିଲେ । ଆଗନ୍ତୁକଟି ଡାକ୍ତରଖାନାର ମେହେନ୍ତର ।

"ଆଜ୍ଞା ! ଦେଈ ଡାକୁଛନ୍ତି—ଟିକେ ଆସନ୍ତୁ !"

"ଦେଈ ? କଏ ସେ ଦେଈ ?"

"ଏଇ ଆମ ଡାକ୍ତର ବାବୁଙ୍କର ବଡ଼ ଝିଅ ।"

"ଡାକ୍ତର ବାବୁ ? କଏ ଅବନାଶ ବାବୁ ? ସେ କଣ ଏଠିକି ପୁଣି ବଦଳି ହୋଇ ଆସିଛନ୍ତି ?"

ହଠାତ୍ ଧନୁର୍ଦ୍ଧର ପାଗଳ ପର ହେଲେ । ତାଙ୍କ ଭିତରେ ଅତୀତର ସ୍ମୃତି ଫେଣେଇ ହୋଇ ଉଠିଲା । ସେ ସବୁ ଭୁଲିଗଲେ—ତାଙ୍କ ବୟସ—ଉଚ୍ଚତା—ତାଙ୍କ ଜାତି—ଆଉ ତାଙ୍କ ଜ୍ଞାନ—ବୁଦ୍ଧି ସବୁକିଛୁ । ଆନନ୍ଦରେ ଉତ୍ଫୁଲ୍ଲ ହୋଇ ସେ ଦୌଡ଼ିବାକୁ ଆରମ୍ଭ କରିଦେଲେ । ପ୍ରତିଭା ଆସିଚ—ପ୍ରତିଭା ? ସତେ ସେ ଆସିଚ ? ସେଇ ହସକୁଡ଼ୀ ପାତଳୀ ହୋଇ ଝିଅଟି—ନାକରେ ତାର ଜୁଳୁଜୁଳୁ ହୋଇ ସୁନା ମାଛୁଟିଏ—ତାର ପ୍ରାଣପ୍ରିୟା ଗୌରୀ ! ତାର କଳ୍ପନାର ମାନସୀ !! ତାର ସ୍ୱପ୍ନର ଅଲଅଳି ରାଜକୁମାରୀ !!!

ଧନୁର୍ଦ୍ଧର ବାଲରେ ଧଇଁସଇଁ ଦୌଡ଼ୁଛନ୍ତି । ଶୀତ ସକାଳର କୁହୁଡ଼ି ଭଲିଆରେ ଗ୍ରୁଡ଼ିକ । ମନେ ପଡ଼ୁଛୁ—ମନେ ପଡ଼ୁଛୁ—ସାଇବେରି-

ଆଉ ଧଲାଗଲ୍—ବଲଡ ଆଳୁ—ବୁଢ଼ାମାଷ୍ଟ୍ରେ—ଭଙ୍ଗାକାନ୍ଥ—ଉଇଖିଆ ଡେସ୍କ—ଆଉ ଶ୍ରୀମତୀ ପ୍ରତିଭା ସୁନ୍ଦରୀ ଦେଈ । ଧନୁର୍ଦ୍ଧର ନଅ ବର୍ଷର ପିଲଟିଏ ବାଲି ଉପରେ ଡେଇଁ ଡେଇଁ ଧପାଳନ୍ତି । ଆଖି ଆଗରେ ତାଙ୍କର ନାଚୁଛି ସେଇ ପାତଳୀ ହସକୁଡ଼ୀ ଗୋଟି ଝିଅଟି—ନଅବର୍ଷର ପ୍ରତିଭା ସୁନ୍ଦରୀ ଦେଈ—ହସି ହସି ସେ ଆଗେ ଅଗେ ଦୌଡ଼ୁଛି !

"ମତେ ଛୁଇଁ ପାରିବ ?"

"ମତେ ଧରି ପାରିବ ?"

"ପାରିବ ?"

"ପାରିବ ?"

"ପାରିବ ମତେ ଧରି ?"

ଧନୁର୍ଦ୍ଧର ପ୍ରାଣମୂର୍ଚ୍ଛା ଦୌଡ଼ ଲଗାଇଛନ୍ତି । ହଠାତ୍ ଖିଲଖିଲ ହସରେ ଧନୁର୍ଦ୍ଧର ଚମକି ପଡ଼ି ଥକ୍କା ହୋଇ ଠିଆ ହୋଇଗଲେ । ବାଉଳାରେ ସେ ଡାକ୍ତରଘରକୁ ପାରି ହୋଇ ଦଉଡ଼ି ଯାଇଚନ୍ତି ଆଗକୁ । ପଛରୁ ସମ୍ମିଳିତ ନାରୀ କଣ୍ଠରୁ ଉପହସିତ ଆହ୍ୱାନ ।

"ଆରେ, ଏଣେ ଆସ—ଏଣେ ଆସ—ତେଣେ କୁଆଡ଼େ ଦଉଡ଼ୁଛ ? କଣ ବ୍ୟାୟାମ କରୁଛ ନା କଣ ?

ଧନୁର୍ଦ୍ଧର ପୁଣି ପଛକୁ ଦଉଡ଼ିଲେ । ଏକା ଝେପାକେ ମାରିଲେ ଡିଆଁ ଡାକ୍ତରଙ୍କ ଘର ଦାରଣ୍ଡା ଉପରକୁ । ଝିଅମାନେ ଦୃଷ୍ଟିଗଲେ । ସମସ୍ତେ ହଠାତ୍ ନୀରବ ହୋଇ ଗମ୍ଭୀର ହୋଇଗଲେ ।

"କାଇଁ—କାଇଁ—ପ୍ରତିଭା କାଇଁ ?"

ଧନୁର୍ଦ୍ଧର ଢାଡ଼ା-ଚପଳ ଆଖିରେ ସବୁ ତରୁଣୀଙ୍କ ମୁହଁକୁ ଅନାଇଁ ଗଲେ । ଦୁଇଟି ତରୁଣୀ ଅପମାନିତ ହେଲି ପରି ଘର ଭିତରକୁ ପଶିଗଲେ । ଘର ଭିତରେ ପଶୁ ପଶୁ ଜଣେ ମନ୍ତବ୍ୟ ଦେଲ—"ଲୋକଟାର ବୁଦ୍ଧିଆଣିଟା ଅନେକଟା ଗୋଧିର ବୁଦ୍ଧିଆଣି ଭଳି—ନୁହେଁ ଲୋ ଶାନ୍ତି ?"

"ମତେ ଥରେ ଗୋଟିଏ ଏଣ୍ଡୁଅ ଏହ୍ୱପର ସ୍ବୃହିଁଥିଲ"—କେହ୍ବ ଜଣେ ଉତ୍ତର ଦେଲ ।"

ଧନୁର୍ଦ୍ଧର ସ୍ତମ୍ଭିତ ହୋଇ ଠିଆ ହୋଇଛନ୍ତି । ପାଟିରୁ ବଚନ ବାହାରୁ ନାହିଁ । ଆଗରେ ତାଙ୍କର ତରୁଣୀଟିଏ ଠିଆ ହୋଇଛି । ଖୁବ୍ ଚୋଖା । ଗାଲ ଦୁଇଟି ଦୁଧ କଳ୍କୁ ଓହ୍ଲାଇ ପଡୁଛି । ଅଣ୍ଟା ଆଉ ପେଟ ବାରି ହେଉ ନାହିଁ । କାନକୁ ଢାଙ୍କି ରହିଛି ଘନକେଶ । ଧନୁର୍ଦ୍ଧରଙ୍କ ଦେହର ଦୁଇ ଗୁଣ ମୋଟ ଏଇ ଝିଅଟିକୁ ଦେଖି ଧନୁର୍ଦ୍ଧର ଆଉ ସିଧା ଠିଆ ହୋଇ ନପାରି କାନ୍ଥକୁ ଆଉଜି ପଡ଼ିଲେ ।

"ଧନୁ ! ତୁମେ ତ ଜଣେ ଯେମିତି ଥିଲ ସେମିତି ଅଛ ? ଟିକିଏ ହେଲେ ବଢ଼ିନାହିଁ ? ଆସ-ଆସ; ଘର ଭିତରକୁ ଆସ ? ଦୂରରେ ସେଇ ସ୍ବକୁଣ୍ଡା ଗଛ ମୂଳରେ ଠିଆ ହୋଇ କଣ କରୁଥିଲ ? ସେଠୁ ବି ତୁମକୁ ଚିହ୍ନି ପକାଇଲି । ମେହେନ୍ତରକୁ ପଚାରିଲି—ସେ କିଏ ? ସେ କହିଲା—ଧନୁର୍ଦ୍ଧର ବାବୁ ।" ତୁମେ ଏମିତି ଦଉଡୁଥିଲ କାହିଁକି ? ଅଜଯାଏ ତୁମର ସେଇ ପାଗଳ ସ୍ବଭାବ ଯାଇନାହିଁ ?"

ହାତ ଧରି ପ୍ରତିଭା ତାଙ୍କୁ ଘର ଭିତରକୁ ଟାଣିନେଲ । ଧନୁର୍ଦ୍ଧର ପଛେ ପଛେ ଗଲେ । ପ୍ରଥମ ଦେଖାରୁ ଧନୁର୍ଦ୍ଧରଙ୍କର ଅଧେ ସ୍ୱପ୍ନ ଭାଙ୍ଗି ଯାଇଛି । ତା' କଣ୍ଠର ମୋଟା ଆବାଜ ଶୁଣି ଧନୁର୍ଦ୍ଧରଙ୍କର ଆଉ କିଛି ସ୍ୱପ୍ନ ବ କଟିଗଲ । ତଥାପି ସ୍ୱପ୍ନ ଭାଙ୍ଗି ନାହିଁ ପୂରାପୂରି—ମନରୁ ଭୂତ ଓହ୍ଲାଇ ନାହିଁ—ଆବେଶ କଟି ନାହିଁ ସମ୍ପୂର୍ଣ୍ଣ ଭାବେ । ପ୍ରତିଭା ତାଙ୍କ ହାତ ଧରି ଜୋର୍‌ରେ ଟାଣି ନେଉଛି । ଧନୁର୍ଦ୍ଧରଙ୍କ ଆଙ୍ଗୁଠି କଟକଟ ଡାକିଲଣି । ପ୍ରଥମେ ଦୁଆର ବନ୍ଧକୁ ଝୁଣ୍ଟି ଲେ । ପ୍ରତିଭା ଟାଣି ନେଉଛି । ଦୁଇଟି ଘର ପାର ହୋଇ ପ୍ରତିଭାର ଶୟନ କକ୍ଷ । ବାରଣ୍ଡାରେ ବୁଢ଼ୀଟିଏ ଠିଆହୋଇଛି ।

"ବୋଉ ଦେଖିଲ୍—ଧନୁ ଯେଉଁକିଟିଏ ଥିଲା ସେଉଁକିଟିଏ ହୋଇ ନାହିଁ ? ଜମା ବଢ଼ିନ ବୋଉ !"

ବୁଢ଼ୀଟି ଉତ୍ତର ଦେଲେ—"ଅଉ ତୁ ତ ଯାହା ବଢ଼ିଛୁ—ଗ୍ରୁଡ଼ ।"

ପ୍ରତିଭାର ଶୟନ କକ୍ଷ । ଧନୁର୍ଦ୍ଧରଙ୍କୁ ନେଇ ସେ ଖଟ ଉପରେ ବସାଇଲା । ତଳେ ପାନ ଭାଙ୍ଗି ବସିଲା । ଧନୁର୍ଦ୍ଧର ଖଟରୁ ଓହ୍ଲାଇ ଆସି ତଳେ ବସିଲେ । ଏତେ ବେଳକୁ ତାଙ୍କ ମୁହଁ ଖୋଲିଲା । "ଅଚ୍ଛା ପ୍ରତିଭା ! ତୁ କେଡ଼େ ମୋଟା ହୋଇ ଯାଇଛୁ, ନାଁ ? ଅଚ୍ଛା—ତୋର ସବୁ ମନେ ପଡ଼େ ? ମନେ ପଡ଼େ ତୋର ଅତୀତ ? ସେଇ ପିଲା ଦିନର କଥା ? ସେଇ ବୁଢ଼ା ମାଷ୍ଟ୍ରେ ? ସେଇ ଧଳାଭାଲ୍ ? ସେଇ ବଲାତ ଅଲୁ ? ମନେ ପଡ଼େ ? ମନେ ପଡ଼େ ତୋର ?"

ଧନୁର୍ଦ୍ଧର ପ୍ରତିଭାର ମୋଟା ବାହୁକୁ ଧରି ଦୋହଲାଇ ଦେଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ପ୍ରତିଭା ସଙ୍କୋଚରେ ତାଙ୍କ ହାତକୁ ଟେଳିଦେଇ ଟିକେ ଦୂରେଇ ଗଲା । ଆଉ ମୁହଁରେ ଶୁଖିଲା ହସ ଫୁଟାଇ କହିଲା—"ଯା'ସ—ପାଗଲାଟା । ତୋର ସେଇ ପାଗଳାମୀ ଗଲାନାହିଁ । ଧଳାଭାଲ୍ କଣରେ ? ଧଳାଭାଲୁ କଣ ଏଠି ଅଛନ୍ତି ?"

ଧନୁର୍ଦ୍ଧର ତାର ମୁହଁ ପାଖକୁ ମୁହଁ ନେଇ ଦୃଢ଼ ଅଥଚ ସ୍ୱପ୍ନିଳ କଣ୍ଠରେ କହିଲେ—"ଅଚ୍ଛା—ବଲାତଅଲୁ ?"

ହସି ହସି ପ୍ରତିଭା ଗଡ଼ିଗଲା ।

"ବିଲାତ ଅଲୁ ? ବୋଉକୁ କହିବ ଦିଟା ଭାଜି ଦେବ ? ଖାଇବୁ ଅଜି ଆମ ଘରେ ?......ହଁ, ଶୁଣ୍ ସ ଧନୁ ! ସେ ପାଗଲା କଥା ଛାଡ଼ । ଗୋଟିଏ ସଙ୍ଗୀତ ମାଷ୍ଟର କେଉଁଠୁ ଯୋଗାଡ଼ କରିଦେଲୁ । ଆଚ୍ଛା ମଫସଲକୁ ବାପାଙ୍କର ବଦଳି ହେଲା ସେ ଭଗ୍ୱାନ୍ଟା ସେମିତି ଥିଆ ହୋଇ ହୋଇ ଉଡ଼ି ଖାଇବ । ପିପିଲିରେ ଦୁଇଟା ମାଷ୍ଟର ମୋ ଲଗି ଠିକ୍ ହୋଇଥିଲେ । ଜଣେ ନାଚ ଶିଖାଉଥିଲା—ଆଉ ଜଣେ ସଙ୍ଗୀତ ଆଉ ହାର୍ମୋନିୟମ । ଏଠି ? ଛି ଛି, ଏଡ଼େ ମଫସଲ ଜାଗା ଏଇଟା ? ଦେ'ତ ଭାଇ ଗୋଟେ ମାଷ୍ଟର ଯୋଗାଡ଼ କରି !!"

ସ୍ୱପ୍ନ କଟି ନାହିଁ । ଧନୁର୍ଦ୍ଧର ତଥାପି କହି ଚାଲିଛନ୍ତି—"ଅଚ୍ଛା ! —ତୋର ବଲାତଅଲୁ କଥା ମନେ ପଡ଼େ ନାହିଁ "

ପ୍ରତିଭା ବିରକ୍ତ ହେଲା ।

"ଶୁଣ ମ—ସବୁ କଥାକୁ ତୁ ଏମିତ ପରିହାସ କରୁଚୁ । ହଉରେ, ତୋତେ ଗୋଟେ କଥା ପଚାରିବି—କିଛି ଭାବିବୁ ନାହିଁ । ତୁ ଚନ୍ଦ୍ରଶେଖର ପଟ୍ଟନାୟକଙ୍କୁ ଚହ୍ନିଚୁ ? ତୁମ କଲେଜରେ ଏମ୍. ଏ. ପଢ଼ୁଛନ୍ତି ମ ! ତୋର ତ ଆଇ. ଏ. ହେଲ ପରା ? ତାଙ୍କର ସାଙ୍ଗରେ ମୋର ବାହାଘର ନିର୍ବନ୍ଧ ହୋଇଛି—ଦୁଇମାସ ହେଲ । ତାଙ୍କର ଫୋଟୋ ଜିଦ୍ ମୁଁ ନାଚ ଗୀତ ଶିଖିବି । ହଉରେ ଧନ୍—ତୁ କେଉଁ ଦିନ କଲେଜକୁ ଫେରୁଚୁ ? ଗଲ ଦିନ ମୋଠାରୁ ଖଣ୍ଡେ ଚିଠି ନେଇ ଦିବୁ ? ଦେଖ, କାହା ଆଗେ କିଛି କହିବୁ ନାହିଁ । ମୁଁ ଦୁଇ ଖଣ୍ଡ ଚିଠି ଦେଲଣି । ସେ ଲେଖୁଛନ୍ତି ସେ ଜମା ଚିଠି ପାଉ ନାହାନ୍ତି ବୋଲ । ଡାକରେ ଚିଠି ଦେଲେ ତୁମ କଲେଜ ପିଲଗୁଡ଼ାକ ଯେଉଁ ବଜାଙ୍କ କେଉଁଠେ ଚିଠି ସବୁ ପଢ଼ି ଗଡ଼ପ୍ କରିଦେଉଛନ୍ତି । ତୁ ଗଲ ଦିନ ଆମ ଘରକୁ ଟିକେ ଆସିବୁ ? ଭାଇଟା ପରା, କିଛି ଭାବିବୁ ନାହିଁ । ଗଲଦିନ ମୋଠାରୁ ଚିଠି ଖଣ୍ଡିକ ନିଶ୍ଚୟ ନେଇ ଦିବୁ । ନବୁ କି ନାହିଁ କହୁ ମ—ଧନ୍ ! କହ ମ !!"

ଧନୁର୍ଦ୍ଧରଙ୍କ ମୁଣ୍ଡ ବୁଲଇ ଦେଲଣି । ତାଙ୍କର କଣ୍ଠ ଶୁଖିଗଲଣି । ସେ ଦେଖୁଛନ୍ତି—ବାହାରେ ଟାଣ ଖରା ପଡ଼ିଲଣି । କୃଷ୍ଣଚୂଡ଼ା ଶୁଖି ଗଲଣି । ତାଙ୍କ ଆଗରେ ଗୋଟେ ମୋଟୀଟିଏ । ତା'ର ଦେହ ମୋଟା—ବୁଦ୍ଧି ମୋଟା—ହୃଦୟଟା ବି ମୋଟା । ସେ ପୁଣି ନାଚେ ଗାଏ—ଆଉ ବଜାଏ ଏବଂ ତାଙ୍କ କଲେଜର ଚନ୍ଦ୍ରଶେଖର ପଟ୍ଟନାୟକଙ୍କୁ ବାହା ହବା ପୂର୍ବରୁ ଚିଠି ଦେବାକୁ ଚାହେଁ—ପୁଣି ଧନୁ ହାତରେ । ସେଠି ଧଳାଭାଲୁ ନାହିଁ —ବଲଡଆଲ୍ଟ ନାହିଁ—ବୁଢ଼ା ମାଷ୍ଟ୍ରେ ନାହାନ୍ତି—କିଛି ନାହିଁ ।

ଧନୁର୍ଦ୍ଧର ତଳକୁ ମୁହଁ ପୋତି ସେଠୁ ଫେରିଆସିଲେ । ତାପ୍— ସେଇଦିନୁ ସେ ଆଉ ମୁହଁ ଉପରକୁ କରିନାହାନ୍ତି—ଆଉ କେଉଁ ଝିଅକୁ ବି ଚାହିଁ ନାହାନ୍ତି । ପ୍ରେମ ଫ୍ରେମ କଥା ପଡ଼ିଲେ ସେ କହନ୍ତି, "ପ୍ରେମଟା ନିହାତି ଗୋଟିଏ ପିଲଳିଆ ଖେଳ—ଗୋଟେ ଅଯଥା ଭାବପ୍ରବଣତା । ବୟସ ହେଲେ ଓ ଦେହରେ ଚର୍ବି ଲଗିଗଲେ ପ୍ରେମ ରୋଗ ଶୁଖିଯାଏ । ତା' ଛଡ଼ା କାହାକୁ ବା ପ୍ରେମ କରିବ ?"

× × × ×

ଆଜି ସେହି ଧନୁର୍ଦ୍ଧର ବାବୁ ବୟାଳିଶି ବର୍ଷ ବୟସରେ ତାଙ୍କର କନ୍ୟାପ୍ରତିମ ଝିଅଟିର ପ୍ରେମରେ ପଡ଼ିଛନ୍ତି ଶୁଣି ମୁଁ ତ ପ୍ରଥମେଇ ବେଶୀ ଆଶ୍ଚର୍ଯ୍ୟ ହେବାର କଥା । ଉପରଓଳି କାମରୁ ଫେରି ମୁଁ ଧନୁର୍ଦ୍ଧର ବାବୁଙ୍କ ଘରକୁ ଗଲି । ତାଙ୍କ ଦାଣ୍ଡ ମେଲରେ ଅପେକ୍ଷା କଲି । ଦଶ ପନ୍ଦର ମିନଟ ପରେ ଧନୁର୍ଦ୍ଧର ବାବୁ ଆସିଲେ । ସାଙ୍ଗରେ ତାଙ୍କର ସେହି ତରୁଣୀ ଶିକ୍ଷୟିତ୍ରୀ ଟି । ବାଃ—ବାଃ ! ଚମତ୍କାର ସୁଯୋଗ । ଠିକ୍ ବେଳାରେ ପହୁଁଚିଛୁ—କଥାଟା ପରିଷ୍କାର ବୁଝାପଡ଼ିଯିବ । ଧନୁର୍ଦ୍ଧର ବାବୁ ଘରେ ପଶୁ ପଶୁ ମୋତେ ଦେଖି ଚିତ୍କାର କଲେ—"ଆରେ—ଆରେ ଏ ଅଘଟଣ କିଣିଆ କଣ ଆଜି ଆମ ଘରେ ? ଆଲୋ ଲିଲି ! ମଉସା ଆସିଚନ୍ତି ଲୋ—ଗ୍ଲାସ ଆଣ—ପାନ ଆଣ । ବୁଝିଲ ଧରଣୀ ! ଏଇ ଝିଅଟି କିଏ ଚିହ୍ନିଛ ?"

ମୁଁ କହିଲି—"ମଳ—କି କଥା କହୁଚ ? ତାଙ୍କୁ ଚିହ୍ନି ନାହିଁ ? ସେ ଆମ ଗାର୍ଲ୍ସ ସ୍କୁଲର ନୂଆ ମିଷ୍ଟ୍ରେସ୍ ଟିକି ?"

"ଆରେ ଯାଃ—ଏତିକି ଚିହ୍ନିଚ ମୋତେ ?"

ଧନୁର୍ଦ୍ଧର କସିପଡ଼ିଲେ । ଝିଅଟି ମଧ୍ୟ ଗମ୍ଭୀର ହୋଇ ବସି ପଡ଼ିଲା । ପାତଳୀ ହୋଇ ଗୋରା ଝିଅଟି—ବେଶ୍ ସୁନ୍ଦର । ଧନୁର୍ଦ୍ଧର ଲିଲିକୁ କହିଲେ, "ଲିଲି—ନମସ୍କାର କର । ଏ ମଧ୍ୟ ତୋର ମଉସା ହେବେ ।" ତା ପରେ ମୋତେ ବୁଝାଇ କହିଲେ "ତୁମର ମନେ ପଡ଼ୁଚି ଧରଣୀ—ଧଳାଗ୍ରାମ୍ ? ବଳଭଦ୍ରଆଳୁ ? ଶ୍ରୀମତୀ ପ୍ରତିଭା ସୁନ୍ଦରୀ ଦେଈ ? ତାଙ୍କରି ଝିଅ ଏ । ଏ ବର୍ଷ ମାଟ୍ରିକ ପାସ୍ କରି ଏଠି ଚାକିରୀ କରୁଛି । ବାପା ମରିଗଲେଣି ଦୁଇ ବର୍ଷ ହେବ । ଭଲ ପଢ଼ୁଥିଲା ପିଲାଟି । ପଇସା ଅଭାବ ହେଲା । ପ୍ରତିଭା ମୋ ପାଖକୁ ଲେଖିଲା ଗୋଟିଏ ଲମ୍ବା ଚିଠି, ସବୁ ଦୁଃଖ କଥା ବର୍ଣ୍ଣନା କରି—ଲିଲି ତୁମ ଝିଅପରି । ଶୁଣିଲି ତୁମେ ଗାର୍ଲ୍ସ ସ୍କୁଲର ସେକ୍ରେଟାରୀ । ତା'କୁ ଚାକିରୀ ଟିକିଏ ଦିଅ । ତା'ର ଇଚ୍ଛା ବର୍ତ୍ତମାନ

ସ୍ତ୍ରୀକଷ୍ଟ କର, ଟିଉସନ କର କିଛୁ ଟଙ୍କା ହେଲେ ପୁଣି କଲେଜରେ ନାମ ଲେଖାଇବ । ମୁଁ କାଲୁ କଣ କହୁଛି ଜାଣିଛ ? ମୁଁ କହୁଛି—ପଢିବ ତ ଯାଅ ପଢ଼—ସ୍ତ୍ରୀକଷ୍ଟଟି ଗ୍ଭଡ଼ । ଯାହା ଟଙ୍କା ଦରକାର ହେବ ଦେଖାଯିବ । ପ୍ରଭତ୍ତ ତ ପିଲାଦିନେ ଠିକ୍ ଏମିତ ପାଗଳା ଥିଲ !! ଅବକାଳ ଏଇମିତ ଥିଲ ଦେଖିବାକୁ । ବୁଝିଲ୍, ଲଲ, ତୁ ଏଇ ଜୁଲାଇ ମାସରେ କଲେଜରେ ନାମ ଲେଖା । ଟଙ୍କା କଥା ମୁଁ ବୁଝିବି । ନା' କଣ କହୁଚ ଧରଣୀ ?''

ମୁଁ ଆଉ କଣ କହିଥାନ୍ତି ? ମୋର କି ଆଉ ବୁଝିବାକୁ ଡାକ ଥିଲ ? ମୁଁ ଖାଲି ଭାବୁଥାଏ—ପ୍ରେମଟା ପ୍ରକୃତରେ ଗୋଟେ ଧଳାଭଲ୍ ବଲଡଅଲ୍ଡ ଆଉ ଧନୁର୍ଦ୍ଧର ମଙ୍ଗଳମୟ ବ୍ୟାପାର । ହାସ୍ତ୍ୱ ପୁରୁଷ ! ତୁମର ଜୟ ହେଉ । ଜୟ ହେଉ ତୁମର ପ୍ରେମର, ତୁମର ସ୍ମୃତିର ଆଉ ତୁମର ଭାବ-ପ୍ରବଣତାର !!!

କାହିଁ ପ୍ରଭତ୍ତସୁନ୍ଦରୀ ଦେଈ !

କାହିଁ କାଳ ସମୁଦ୍ରରେ ହଜି ଯାଇଥିବା ୩୦ ବର୍ଷ ତଳର ଗୋଟିଏ ସରଳ ତରଳ ଗ୍ରେଟ ଝିଅ !!

ଆଉ, କାହିଁ ଷୋଳ ବର୍ଷ ବୟସର ଲଲ ମର୍ଦ୍ଦରାଜ !!!



## ଚପଳା ସମ୍ୱର ଇତକଥା

ଏ ଦୁନିଆଁରେ ସବୁ ପ୍ରେମିକ ଗୋଟିଏ କଥାରେ ଏକମତ ଯେ, ସେମାନଙ୍କର ପ୍ରେମିକାଟି ଏକାନ୍ତ ଭାବରେ ସେହିମାନଙ୍କର ଅନୁରକ୍ତା ବା ଅନୁଗତା ହେଉ । ଯଦି ଦୈବାତ୍ ଅନ୍ୟ କୌଣସି ପ୍ରେମିକ ପ୍ରତି ସେମାନଙ୍କ ପ୍ରେମିକାଟିର କିଞ୍ଚିତ ଅନୁରକ୍ତି ପ୍ରକାଶ ପାଏ, ତେବେ ତାର ପରିଣତି ହୁଏ ଅତି ବିଷମୟ ବା ଦୁଃଖମୟ ।

ଶୁଭକାନ୍ତ କିନ୍ତୁ ଏହି ବ୍ୟାପାରଟିରେ ଭିନ୍ନ ମତ ପୋଷଣ କରନ୍ତି । ସେ କହନ୍ତି, ଯେଉଁ ନାରୀଟି ଏକାନ୍ତ ଭାବରେ ଆପଣଙ୍କର ଅନୁରକ୍ତା, ସେ ଆପଣଙ୍କର ପ୍ରେମିକା ହୋଇ ନ ପାରେ । ସେ ଭଳି ନାରୀଟିକୁ ବିବାହ କରି ସ୍ୱଚ୍ଛନ୍ଦରେ ଘର କରିହୁଏ, ପ୍ରେମ କରି ହୁଏ ନାହିଁ । ପ୍ରେମ କରିବାଲାଗି ଆପଣ ଏଭଳି ନାରୀଟିଏ ବାଛନ୍ତୁ ଯାହା ପଛରେ ଆପଣଙ୍କଭଳି ବହୁ ପୁରୁଷ ଗୋଡ଼ାଉଥିବେ, ସେ କେତେବେଳେ କାହାକୁ ଧରା ଦେଉଥିବ, ପୁଣି କାହାର ଆଲିଙ୍ଗନ ଫାଶ ଛଡ଼ାଇ ଦଉଡ଼ିଥିବ ଆଗକୁ ଅମୁହାଁମୁହାଁ । ତା ପଛରେ ଧାବମାନ ବହୁ ପୁରୁଷଙ୍କ ସଙ୍ଗେ ଦଉଡ଼ାରେ ପ୍ରତିଦ୍ୱନ୍ଦ୍ୱିତା କରି ଆପଣ ବେଶ୍ କିଛି ଉତ୍ତାପ ଆପଣଙ୍କ ଦେହ ଓ ମନ ଭିତରେ ସଞ୍ଚୟ କରି-ପାରିବେ । ଏହି ଉତ୍ତାପଟି ହେଉଛି ପ୍ରକୃତ ପ୍ରେମର ଉତ୍ତାପ । ଆଉ ପ୍ରକୃତ ପ୍ରେମ ହେଉଛି ଏହିଭଳି ଏକ ପ୍ରକାର ଉଦ୍ଦୀପ୍ତ ଅନୁଭୂତି, ଆଉ ପ୍ରକୃତ ପ୍ରେମିକା ହେଉଛି ସେହି, ଯେ ଆପଣଙ୍କ ହୃଦୟରେ ଏହି ଅନୁଭୂତିର ଉତ୍ତାପ ଭରି ଦେଇପାରେ ।

ଚିରନ୍ତନ ପ୍ରେମ ଉପରେ ମଧ୍ୟ ଶୁଭକାନ୍ତର ବିଶ୍ୱାସ ନାହିଁ । ସେ କହେ ପ୍ରେମରେ ଚିରନ୍ତନ ବୋଲି କିଛି ନାହିଁ । ଚନ୍ଦ୍ର ଉଦୟ ଆ

ବାଣ ଦେଖିଛ ? ଫାନ୍ଦିକନା ଜଳେ ଆଉ ଫାନ୍ଦିକନା ଲଭେ । ଯେଉଁ ପ୍ରେମ ସମ୍ଭୂନେଲେ ଜଳୁଛ ବୋଲି କହୁଚ ସେ ଜମା ଜଳେ ନାହିଁ—ସେ କେବଳ କୁହୁଳେ । ସେଥିରେ ନିଆଁ ନାହିଁ—ଖାଲି ଧୂଆଁ । ମନେକର ସେ ଏକ ଅପଲ୍ସରା ଖାଲି ଛିପ ପଡ଼ିଆ—ମାଇଲ ମାଇଲ ଧରି ତା'ର ବିସ୍ତୃତ—ଆଖି ଧାଉନାହିଁ । ଜଣକୁ ଲକ୍ଷ୍ୟକରି ପାଇବା ଆଶାରେ ତୁମେ ଦଉଡ଼ିଛ । ତୁମକୁ ପ୍ରତିଦ୍ୱନ୍ଦ୍ୱିତାରେ ହଟାଇ ବିଜୟ ଲଭ କରିବାକୁ ବହୁ ପ୍ରତିଦ୍ୱନ୍ଦ୍ୱୀ ତୁମ ସଙ୍ଗେ ଦଉଡ଼ିଛନ୍ତି । ଯାହାକୁ ଆଶାକରି ତୁମେ ଦଉଡ଼ିଛ ସେ ତୁମ ସମସ୍ତଙ୍କ ମଧ୍ୟରେ କାଟକାଟି ଦୌଡ଼ିଛି—ଘୂରି ଘୂରି । କେତେବେଳେ ତୁମ କଡ଼େ କଡ଼େ—କେତେବେଳେ ତୁମ ପଶ୍ଚାତରେ—କେତେବେଳେ ତୁମର ସମ୍ମୁଖରେ । କେବେ ସେ ଆକାଶରେ ଉଡ଼ୁଛି—କେବେ ବା ଭୂମି ଉପରେ ଗଡ଼ି ଗଡ଼ି ଦଉଡ଼ୁଛି ।

ତାକୁ ପାଇବା ଲଗି ଲକ୍ଷ କୋଳାହଳ—ଲକ୍ଷ ଦାଧାଦ୍ୱନ୍ଦ୍ୱ— ଲକ୍ଷ ପ୍ରତିଦ୍ୱନ୍ଦ୍ୱୀଙ୍କର ପ୍ରତିଯୋଗିତା ମଧ୍ୟରେ ହଠାତ୍ ତୁମେ ତାକୁ ଧରିପକାଇଲ । ତା ପରେ ତୁମ ଚାରିପଟେ ପ୍ରତିଯୋଗୀମାନେ ଏହି ଅପ୍ରତ୍ୟାଶିତ ଘଟଣାରେ ହଠାତ୍ ନିର୍ବାକ ଭାବେ ଠିଆ ହୋଇଗଲେ । ତା'ପରେ—ତା'ପରେ ଏହି ଲକ୍ଷ କ୍ଷୁଧାକାତର ଆଖିତଳେ—ଲକ୍ଷ ପ୍ରେମଲୋଲୁପ ହୃଦୟରେ ଈର୍ଷାର ଅଗ୍ନି ଲଗାଇଦେଇ ତୁମେ ତୁମର ପ୍ରେମିକାଟିକୁ ଅତି ନିବିଡ଼ ଭାବରେ ଆଲିଙ୍ଗନ କଲ—ତୁମ ଶରୀରର ସମସ୍ତ ଶକ୍ତି ପ୍ରୟୋଗ କରି, ମନର ସମସ୍ତ ଆବେଗ ବା ଉନ୍ମାଦନା ସହ ଆତ୍ମାର ସମସ୍ତ ଉତ୍ତାପ ସଞ୍ଚରିତ କରି ।

କିନ୍ତୁ ବନ୍ଧୁ, ତୁମ ଶରୀରର ସେହି ଶକ୍ତି ସଂପୂର୍ଣ୍ଣ ନିଃଶେଷ ହୋଇଯିବା ପୂର୍ବରୁ—ତୁମ ମନର ସମସ୍ତ ଆବେଗ ଲୋପ ହେବା ପୂର୍ବରୁ—ତୁମ ଆତ୍ମାର ସମସ୍ତ ଉତ୍ତାପ ଶୀତଳ ହେବା ପୂର୍ବରୁ ମୋଟ ଉପରେ ତୁମ ଆଲିଙ୍ଗନର ସୁଦୃଢ଼ ବନ୍ଧନ କ୍ରମ ଶିଥିଳ ହେବା ପୂର୍ବରୁ ସେହି ପ୍ରେମିକାଟି ତୁମର ଆଲିଙ୍ଗନରୁ ପାଶମୁକ୍ତ ହୋଇ ପୁଣି ସେହି ଅପଲ୍ସରା ଭିତରେ ଦଉଡ଼ିବାକୁ ଲଗିଲା ଅମୁହାଁମୁହାଁ । ଆଉ ତାକୁ ପୁଣି ଥରେ ଧରିବା ଲଗି ତା'ପଛେ ପଛେ ଛୁଟି ଚାଲିଲେ ପୁଣି ସେହି ପ୍ରତିଦ୍ୱନ୍ଦ୍ୱୀ'ର ଦଳ । ମୁହୂର୍ତ୍ତିକ ଲଗି ପାଇ ତୁମେ ତାକୁ ପୁଣି ଛାଡ଼ିଦେଲ । ମୁହୂର୍ତ୍ତିକ ଲଗି ଧରାଦେଇ ସେ ତୁମକୁ ପୁଣି ଛାଡ଼ିଦେଲା ।

ଆହା ବନ୍ଧୁ—ସେହି ମୁହୂର୍ତ୍ତିଟି—ସେହି ମୁହୂର୍ତ୍ତିଟି—ଅନନ୍ତ ଶୀତଳ କାଳ-ସମୁଦ୍ରରେ ସେହି ଉତ୍ତପ୍ତ ମୁହୂର୍ତ୍ତିର ଢେଉଟି—ଅନନ୍ତ ନିସ୍ତବ୍ଧ କାଳ ମଧ୍ୟରେ ସେହି ସଙ୍କିପ୍ତ ମୁହୂର୍ତ୍ତିଟି—ଅନ୍ଧକାରପୂର୍ଣ୍ଣ ଅନନ୍ତ କାଳ-ଯାମିନୀ ମଧ୍ୟରେ ସେହି ଉଜ୍ଜ୍ୱଳ ଆଲୋକିତ ମୁହୂର୍ତ୍ତିଟି ପ୍ରେମର ମୁହୂର୍ତ୍ତି । ବନ୍ଧୁ ! ସାର୍ଥକ ପ୍ରେମର ମୁହୂର୍ତ୍ତି ! ଆଉ ସେହି ମୁହୂର୍ତ୍ତିଟିର ନାୟିକା ହିଁ ତୁମର ସାର୍ଥକ ପ୍ରେମିକା । ମୁହୂର୍ତ୍ତିକର ବିଜୟରେ ତୁମେ ଆତ୍ମହରା ହୋଇପଡ଼ୁଛ । ଆଉ ଏକଥା ବି ତୁମେ ଜାଣ ଯେ, ଆସନ୍ତା ମୁହୂର୍ତ୍ତିରେ ତୁମେ ତୁମର ଏହି ବିଜିତ ସାମ୍ରାଜ୍ୟଟିକୁ ହରାଇ ବସିବ—ଆଉ ହରାଇ ବସିବ ବୋଲି ହିଁ ତୁମର ସେହି ମୁହୂର୍ତ୍ତିଟିର ଆଲିଙ୍ଗନ ଏତେ ଦୃଢ଼—ଏତେ ଉତ୍ତପ୍ତ—ଆଉ ଏତେ ପ୍ରାଣବାନ୍—ନୈଷ୍ଠିକ । କାରଣ ଯେଉଁଠି ହରାଇବାର ଭୟ ନାହିଁ ସେଠି ଟାଣି ରଖିବାର ଦୃଢ଼ତା ବି ନାହିଁ । ଏଭଳି ଜୀବନରେ ଲକ୍ଷ କୋଟି ମୁହୂର୍ତ୍ତିର ବିଜୟରେ ଯେ ବିଜୟୀ ଆଉ ପରାଜୟରେ ଯେ ପରାହତ—ମୁଁ ତାକୁ ହିଁ କହିବି ସେ ପ୍ରେମିକ । ବରଂ ପ୍ରେମ ରାଜ୍ୟରେ ଚିରନ୍ତନ ବିଜୟର କ୍ଳାନ୍ତି ଅପେକ୍ଷା ମୁଁ ମୁହୂର୍ତ୍ତିକର ପରାଜୟ, ପର ଉତ୍ସାହ-ପ୍ରବଣ-ସଂଗ୍ରାମଶୀଳତାକୁହିଁ ବେଶୀ କାମନା କରେ ।

× × ×

ଶୁଭକାନ୍ତ ମୋର ବନ୍ଧୁ—ମାତ୍ର ସେ ମୋର ଉପରିସ୍ଥ କର୍ମଚାରୀ । ପିଲାଦିନେ ଏକା ସାଙ୍ଗରେ ପାଠ ପଢ଼ୁଥିଲୁ । ସେହି ଦିନୁଁ ଆମେ ପରସ୍ପରର ଘନିଷ୍ଠ ବନ୍ଧୁ । ଲୋକଟା ବୁଦ୍ଧିମାନ୍, ପ୍ରଗତିଶୀଳ, ସ୍ନେହୀ ଆଉ ଅନେକାଂଶରେ ଭାବପ୍ରବଣ । ଆଫିସିକ ବା ଆନୁଷ୍ଠାନିକ ବ୍ୟାପାରରେ ତାର ତୀକ୍ଷ୍ଣ ବୁଦ୍ଧି ହିଁ ତାର କ୍ରିୟାକଳାପକୁ ନିୟନ୍ତ୍ରିତ କରେ । ତେଣୁ ଭଲ,ଦକ୍ଷ, ଚିନ୍ତାଶୀଳ ଓ ପୋଖତ ଅଫିସର ରୂପେ ତାର ଖ୍ୟାତି ଥିଲା ପ୍ରଚୁର । କିନ୍ତୁ ସେ ଯେ କେତେ ଭାବପ୍ରବଣ, ହୃଦୟବାନ୍ ଓ କରୁଣାକୋମଳ ତା' ଅନ୍ୟ-ମାନଙ୍କ ଅପେକ୍ଷା ମୁଁ ଜାଣେ ବେଶୀ ।

ସନ୍ଧ୍ୟାବେଳେ ଅଧିକାଂଶ ଦିନ ନଦୀ କୂଳକୁ ନଚେତ୍ ପାର୍କ ଭିତରକୁ ଏକାକୀ ବୁଲିଯାଉ ଏବଂ ସେ ତାର ଜୀବନର ଆବେଗଭରା କାହାଣୀସବୁ କ

ସୁନ୍ଦର ନାଟକୀୟ ଭଙ୍ଗୀରେ ମୋ ନିକଟରେ ପ୍ରକାଶ କରେ ! ଅବଶ୍ୟ ସେ ସବୁ କାହାଣୀଗୁଡ଼ିକ ତାଙ୍କର ବହୁତ ଦିନ ତଳର ଅଭିଜ୍ଞତା—ପ୍ରାୟ କଲେଜରେ ପଢ଼ିବା ବେଳର ବା ନୂଆ ହୋଇ ଚାକିରି କରିବା ବେଳର କାହାଣୀ । ଶୁଭକାନ୍ତର ବିଶ୍ୱାସ, ତିରିଶ ବର୍ଷ ବୟସ ପୂର୍ବରୁ ଯେ ପ୍ରେମ କରିନାହିଁ ସେ ଆଉ ପ୍ରେମ କରିପାରିବ ନାହିଁ । ତିରିଶ ପରେ ଯେଉଁ ପୁରୁଷ ନାରୀବନ୍ଧୁ ଖୋଜେ ସେ କେବଳ କାମନା ଚରିତାର୍ଥ କରିବା ଲାଗି ଖୋଜେ । ଉତ୍ତର ତିରିଶିର ପ୍ରଣୟ ପୁରୁଷ ପକ୍ଷରେ କାମନା ଚରିତାର୍ଥତା । ସେଥିରେ ନାହିଁ ପୁରୁଷୋଚିତ ଆବେଗ ବା ଉନ୍ମାଦନା—ଅଛି କେବଳ ହିସାବୀ ବୁଦ୍ଧିରେ ଭୋଗ କରିବାର କୁତ୍ସିତ ବାସନା ।

ଶୁଭକାନ୍ତର ସ୍ତ୍ରୀ ବିନୋଦିନୀ ଦେବୀଙ୍କ କଥା ଏଠି କିଛି ନ ଲେଖିଲେ ଅସୁବିଧା ପଡ଼ିପାରେ । ବିନୋଦିନୀ ଦେବୀ ଅତି ଚମତ୍କାର ଭଦ୍ର ମହିଳା । ସୁନ୍ଦରୀ, ଶିକ୍ଷିତା, କର୍ମପ୍ରବୀଣା ଆଉ ଆଦର୍ଶ ଗୃହିଣୀ ହିସାବରେ ସେ ଅମ କଲୋନୀର ସମସ୍ତଙ୍କର ସମ୍ମାନର ପାତ୍ରୀ । ଶୁଭକାନ୍ତଙ୍କର ଗୃହସ୍ଥଳୀକୁ କମନୀୟ, ମଧୁମୟ ଓ ଶୃଙ୍ଖଳିତ କରିବାରେ ବିନୋଦିନୀ ଯଥାର୍ଥରେ ଆଦର୍ଶ ହିନ୍ଦୁ ଗୃହିଣୀ ।

ଶୁଭକାନ୍ତ ଘର ସଙ୍ଗେ ମୋ ଘରର ଚଳପ୍ରଚଳରେ କୌଣସି ସାମାଜିକ କଟକଣା ନାହିଁ । ବିନୋଦିନୀଙ୍କ ସଙ୍ଗେ ମୁଁ ଖୁବ୍ ନିକଟ ସମ୍ପର୍କରେ ଆସିଛି । କାୟ, ମନ ଓ ବାକ୍ୟ କୌଣସିଟିରେ ମୁଁ ଏହି ଆଦର୍ଶ ନାରୀଟିର ସ୍ଖଳନ ବା ଦୋଷ କେବେହେଲେ ଦେଖି ନାହିଁ । ଶୁଭକାନ୍ତ ମଧ ବିନୋଦିନୀଙ୍କୁ ଖୁବ୍ ସ୍ନେହ ତ କରେ, ସମ୍ମାନ ବି ଦେଖାଏ । ତିନୋଟି ସନ୍ତାନର ଜନନୀ ଏହି ବିନୋଦିନୀଙ୍କୁ ନେଇ ଶୁଭକାନ୍ତ ବେଶ୍ ଗର୍ବ କରେ, ଆଉ ମୋ ମନରେ ତା'ର ସ୍ତ୍ରୀ ପ୍ରତି ସମ୍ଭ୍ରମବୋଧ ଜାଗ୍ରତ କରିବା ସଙ୍ଗେ ସଙ୍ଗେ କିଛି ପରିମାଣରେ ନିର୍ଦ୍ଦୋଷ ଈର୍ଷା ମଧ ସଞ୍ଚାରିତ କରାଏ ।

ବିନୋଦିନୀ ମଧ ସବୁ ପ୍ରକାରେ ସ୍ୱାମୀଙ୍କୁ ଭଲପାନ୍ତି—ଯଦିଓ କାନ୍ତ ହିସାବରେ ଶୁଭକାନ୍ତ ଯଥାର୍ଥରେ ଶୁଭକାନ୍ତ ନୁହେଁ । ନାରୀ ସମ୍ପର୍କୀୟ

ବ୍ୟାପାରରେ ମଝେ ମଝେ ଶୁଭକାନ୍ତ କିଛୁ କିଛୁ ବଦ୍‌ନାମ ମଧ୍ୟ ଅର୍ଜନ କରୁଥିଲେ । ବିନୋଦିନୀ ସ୍ୱାମୀଙ୍କର ଏହି ସବୁ ବଦ୍‌ନାମରେ ଭିତରେ ଯେ ଖୁବ୍ ବିଚଳିତ ହୋଇ ଉଠୁଥିଲେ ଏ କଥା ଯଦିଓ ତାଙ୍କର ଭଦ୍ର, ନମ୍ର ଓ ସଂଯତ ବ୍ୟବହାର ମଧ୍ୟରୁ ଜାଣିବା କଷ୍ଟକର, ତଥାପି ତାଙ୍କ ମୁଖ-ମଣ୍ଡଳରୁ ମୁଁ କିନ୍ତୁ ଏ କଥା ବେଶ୍ ଶୀଘ୍ର ବୁଝିପାରୁଥିଲି । ବନ୍ଧୁମାନେ ଶୁଭକାନ୍ତଙ୍କୁ ନେଇ ଥଟ୍ଟା କରନ୍ତି—ଆଉ ବନ୍ଧୁପତ୍ନୀମାନେ ବିନୋଦିନୀଙ୍କ ଆଗରେ ଶୁଭକାନ୍ତର ବଦ୍‌ନାମ ବିସ୍ତାର କରନ୍ତି । ବିନୋଦିନୀଙ୍କର ଦୁଃଖ ମୁଁ ବେଶ୍ ସହାନୁଭୂତିର ସହିତ ବୁଝିପାରେ ଏବଂ ଶୁଭକାନ୍ତଙ୍କୁ ଭବିଷ୍ୟତରେ ଏ ସବୁ ବିଷୟରେ ସାବଧାନ ହେବାକୁ ସତର୍କ କରେ । ମାତ୍ର ଶୁଭକାନ୍ତ କଣ କହନ୍ତି ଜାଣନ୍ତି ? ସେ କହନ୍ତି—"ବୁଝିଲ ବନ୍ଧୁ ! ସେ ମୋର ଦୁର୍ଭାଗ୍ୟ । ଏ ସଂସାରରେ ସ୍ନେହ କରନ୍ତି ଦଳେ, ମାତ୍ର ଅପବାଦ ମୁଣ୍ଡାଏ ଜଣେ । ଯେଉଁମାନେ ଏଭଳି ଅପବାଦ ମୋ ନାମରେ ଉଠାନ୍ତି, ସେମାନେ ଖାଇ ସ୍ନେହ—ଆଉ ମୁଁ ନ ଖାଇ ମଧ୍ୟ ସ୍ନେହ । ଏ ସବୁ ବ୍ୟାପାରରେ କାର୍ଯ୍ୟ ଅପେକ୍ଷା ମୁଁ କଥା କହେ ବେଶୀ । ତେଣୁ ମୋର ଏ ଦୁର୍ନାମ ।"

ମୁଁ କହେ—"ନିଆଁ ନଥାଇ କଣ ଧୂଆଁ ବାହାରେ ?"

"ହଁ—ଧୂଆଁ କେବଳ ନିଆଁରୁ ବାହାରେ ନାହିଁ—ବରଫରୁ ମଧ୍ୟ ବାହାରେ । ମାତ୍ର ସେ ଯାହା ହେଉ, ଅନେକ ସମୟରେ ନିଆଁ ଅପେକ୍ଷା ଧୂଆଁ ହିଁ ଅଧିକ ସତ୍ୟ ରୂପେ ପ୍ରକଟିତ ହୁଏ । ଲୋକେ ନିଆଁ ଦେଖନ୍ତି ନାହିଁ—ଧୂଆଁକୁ ହିଁ ଦେଖି କେବଳ ନିଆଁର ଅସ୍ତିତ୍ୱକୁ ଅନୁମାନ କରି ବିଶ୍ୱାସ କରନ୍ତି ।"

ମୁଁ କହେ—"ଧୂଆଁ କଣ ସମ୍ପୂର୍ଣ୍ଣ ମିଥ୍ୟା, ଶୁଭକାନ୍ତ !"

"ନାଁ, କିନ୍ତୁ ଧୂଆଁର ସତ୍ୟକୁ ନିଆଁର ସତ୍ୟ ସଙ୍ଗେ ସମାନ କଲେ ତ ଚଳିବ ନାହିଁ ?"

ମୁଁ କହେ—"ଶୁଭକାନ୍ତ, ଧୂଆଁର ସତ୍ୟଟା ନିଆଁର ସତ୍ୟ ସଙ୍ଗେ ସମାନ ନୁହେଁ—ମାତ୍ର ତା'ଠାରୁ ପୃଥକ୍ କି ?"

ଶୁଭକାନ୍ତ ଗମ୍ଭୀର ହୋଇଯାଏ । କିନ୍ତୁ ଥରେ ବଡ଼ ଆକସ୍ମିକ କାଣ୍ଡ ଘଟିଲା, ଯାହା ଫଳରେ କି ଶୁଭକାନ୍ତର ମାନସମ୍ମାନ ସହ ତାର ବ୍ୟକ୍ତିତ୍ୱ ଉପରେ ମଧ୍ୟ ବିପଦ ଘନେଇଆସିଲା । ସେ ହେଉଛି ଆମର ଲେଡ଼ି ହୋଷ୍ଟେଲ୍ ଥିଭିଜିଟର ଚପଳା ଗ୍ରହ ସମ୍ପର୍କରେ । ଅବସ୍ଥା ଯେପରି ହେଲାଣି ଶୁଭକାନ୍ତଙ୍କୁ କୋର୍ଟରେ ଆସାମୀ ରୂପେ ଠିଆ ହେବାକୁ ପଡ଼ିପାରେ । ଚାରିଆଡ଼େ ଏ ବିଷୟରେ ଜନାଯନା ଆଲୋଚନା, ଫୁସ୍ ଫାସ୍ ଚାଲିଛି ।

ପିଲାମାନଙ୍କୁ ଗ୍ରାମରେ ଛାଡ଼ିବାକୁ ମୁଁ ପନ୍ଦର ଦିନ ଛୁଟି ନେଇ ଗ୍ରାମକୁ ଯାଇଥିଲି । ଗ୍ରାମରୁ ଆସି ଏ କାଣ୍ଡ ଦେଖି ମୁଁ ଏକବାର ଅବାକ୍ ହୋଇ ଉଠିଲି । ଆମ କଲେଜରେ ଏ ବ୍ୟାପାର ନେଇ ଏକ ବିଷାଦର କଳାମେଘ ସବୁରି ମୁହଁରେ ଝଙ୍କା ହୋଇ ଯାଇଛି । ଚାରିଆଡ଼େ ଏକ ଗମ୍ଭୀର ଉତ୍ତେଜନା ଘେରିରହିଛି । ମାତ୍ର ଉତ୍ତେଜନାର ପ୍ରକାଶରେ ସମସ୍ତେ ଏତେ ସଂଯତ ହୋଇ ପଡ଼ିଛନ୍ତି ଯେ, ଯାହା ଫଳରେ କି ଅବସ୍ଥା ଆଉରି ମ୍ଳାନତର ଭାବେ ଘନ ହୋଇ ଉଠୁଛି ।

ସନ୍ଧ୍ୟା ପୂର୍ବରୁ ମୁଁ ଶୁଭକାନ୍ତ ଘରକୁ ଗଲି । କିନ୍ତୁ ଏ କଣ ? ଶୁଭକାନ୍ତ ଘରେ ଯେପରି ମୃତ୍ୟୁର ଛାୟା ଘୁରି ବୁଲୁଛି । ପିଲାଙ୍କର ସେ କୋଳାହଳ ନାହିଁ । ବିନୋଦିନୀ କାନ୍ଥକୁ ଆଉଜି ତଳେ ଗୋଡ଼ ଲମ୍ବାଇ ବସି ଆକାଶକୁ ଚାହିଁରହିଛନ୍ତି, ଆଉ ଶୁଭକାନ୍ତ ଶୋଇବା ଘରେ ଖଟ ଉପରେ ଶୋଇରହି ଛାତକୁ ଚାହିଁରହିଛି ଉଦ୍ଦେଶ୍ୟହୀନ ଭାବରେ । ମୋତେ ଦେଖି ମଧ୍ୟ କାହାର କିଛି ପରିବର୍ତ୍ତନ ହେଲାନାହିଁ । ସମସ୍ତେ ଯେପରି ପଥର ପାଲଟି ଯାଇଛନ୍ତି । ସାହସ କରି ଶୁଭକାନ୍ତର ବିଛଣା ପାଖକୁ ଗଲି । ମୋତେ ଦେଖି ସେ ହସି ଦେଲା । ମୁଁ କିନ୍ତୁ ସେ ହସରେ ଆହୁରି ବିଚଳିତ ହୋଇପଡ଼ିଲି ।

"ଶୁଭକାନ୍ତ ! କଣ ଏ କଥା ? ଘଟଣାଟା ଏତେ ଦୂର କେବେ ଆଗେଇଗଲା ? ବର୍ତ୍ତମାନ ଉପାୟ କଣ ? କଣ କରିବାକୁ ହେବ ଏ ପରିସ୍ଥିତିରୁ ଉଦ୍ଧାର ପାଇବାଲାଗି ?"

ଶୁଭକାନ୍ତ ବଛଣାରୁ ଉଠିଲା । ଟିକେ ଗୁମ୍ ହୋଇ ରହି ସେ ବାହାରକୁ ଆସିବାକୁ ମୋତେ ଇଙ୍ଗିତ ଦେଲା । ତା'ପରେ କାମିଜ୍ଞ ଗଳାଇ ସେ ଘରୁ ପଦାକୁ ବାହାରିଗଲା । କିଛି ଉଦ୍ଦେଶ୍ୟ ନ ବୁଝି ମୁଁ ତା ପଛେ ପଛେ ଗଲି । ଆମେ କ୍ରମେ ସହରର ସୀମା ଛାଡ଼ି ନଦୀ କୂଳକୁ ଗଲୁ । ନଦୀ କୂଳରେ ଗୋଟିଏ ସାନ ପାର୍କ ଭିତରକୁ ପଶି ପାର୍କର ଗୋଟିଏ ବେଞ୍ଚ ଉପରେ ବସିଲୁ । ମୁଁ ଶୁଭକାନ୍ତକୁ ଚାହିଁଲି । ଗମ୍ଭୀର କଣ୍ଠରେ ସେ ମୋତେ ପଚାରିଲା—"ସବୁକଥା ଶୁଣିଛ ତ ? ସେମାନେ ମୋତେ ଦାୟୀ କରୁଛନ୍ତି ।"

"କିନ୍ତୁ ଏଥିରୁ ଖସିବାର ଉପାୟ କଣ ଶୁଭକାନ୍ତ ?"

"ସେ କଥା ପରେ ବିଚାର କରିବା । ତୁମେ କଣ ଭାବୁଛ ମୁଁ ପ୍ରକୃତରେ ଏ ଘଟଣାରେ ଦାୟୀ ।"

ମୁଁ ବା କି ଉତ୍ତର ଦେଇଥାନ୍ତି ? ଶୁଭକାନ୍ତକୁ ମୁଁ ଚିହ୍ନେ, ଚପଳା ରାୟକୁ ବି ମୁଁ ଚିହ୍ନେ । ଚପଳା ରାୟ ଗୋଟିଏ ପିତୃମାତୃହୀନା ଶରଣାର୍ଥୀ ବାଳିକା । ଆଇ. ଏ. ପର୍ଯ୍ୟନ୍ତ ପଢ଼ିଥିଲା । ତା ପରେ ଓଡ଼ିଶାରେ ଗୋଟିଏ ଟ୍ରେନିଂ ପାଇ ସେ ଉନ ନର୍ସ ହେଲା ଏଠାରେ ଲେଡ଼ି ହେଲ୍‌ଥ ଭିଜିଟର ରୂପେ ଚାକିରୀ କରେ । ଏକୁଟିଆ ଗୋଟିଏ ଘରେ ଥାଏ । ଯେଉଁ ଦିନୁ ସେ ଏଠାକୁ ଆସିଲାଣି ସେଦିନୁ ତାକୁ ନେଇ କେତେ ଘଟଣା ଯେ ଘଟି ନ ଯାଇଛି ! ସେଇ ବାସ୍ତୁହୀନା ବଙ୍ଗଲ୍‌ର ଡାହାଣୀର ମୋହନୀୟ ଫାଶରେ ପଡ଼ି ଏଠାରେ କିଏ ଭଲା ଛଟପଟ ନହେଉଛି ? କାହାର ସୁନା ଘରକୁ ଭଲା ସେ ଚୂନା କରିନାହିଁ ? ତା ଯୋଗୁଁ ସମସ୍ତଙ୍କର ନାମରେ ଅପବାଦ—ସମସ୍ତଙ୍କ ଗୃହଶାନ୍ତି ନଷ୍ଟ । ତା'ଲାଗି ସମସ୍ତେ ବ୍ୟତିବ୍ୟସ୍ତ ହୋଇଛନ୍ତି ।

କିନ୍ତୁ ସେଇଟା ଏଡ଼େ ସ୍ୱତନ୍ତ୍ରା—କାହାଲାଗି ତାର ଅନ୍ତର କାନ୍ଦେ ନାହିଁ । କାହାଲାଗି ତାର ପ୍ରେମରେ ନିଷ୍ଠା ନାହିଁ, ଆନ୍ତରିକତା ନାହିଁ । ସେ କେବଳ ଖେଳେ । କିନ୍ତୁ ବଡ଼ ନିଷ୍ଠୁର ସେ ଖେଳ । ଡାହାଣୀ ପରି ସେ ସୁକୁମାର ପୁରୁଷଙ୍କୁ ନେଇ ଖେଳେ, ଆଉ ସେମାନଙ୍କର ରକ୍ତ ଶୋଷି

ସ୍ପେପାକର ଫିଙ୍ଗିଦିଏ । ସବୁବେଳେ ଘୋଡ଼ୀ ଭଳି ହିଁ ହିଁ ହୋଇ ହସୁଥିବ—ଡେଉଁଥିବ । ଏଡ଼େ ଲଘୁ ! ଏଡ଼େ ଚଞ୍ଚଳ ! ଏଡ଼େ ଚପଳ ସେ ଚପଳା ଗୁପ୍ତ ! ଆଗେ ତାର ନାମ ଶୁଣିଲେ ହିଁ ମୁଁ ଛେପ ପକାଏ । ସାମାଜିକତାର ଦ୍ୱାହି ଦେଇ ସେ ସମାଜ ମଧ୍ୟରେ ଭଦ୍ରଭାବରେ ବେଶ୍ୟା ବୃତ୍ତି ଚଳାଉଥିଲା । କିନ୍ତୁ ଆଜି, ଆଜି କାହିଁକି ଏହି ଆକସ୍ମିକ ଦୁର୍ଘଟଣାରେ ମୁଁ ଏ ସବୁ କଥା ମନକୁ ଆଣିପାରିଲି ନାହିଁ ।

ଶୁଭକାନ୍ତର ପ୍ରଶ୍ନରେ ମୁଁ କେବଳ ଏତିକି କହିଲି—"ଶୁଭକାନ୍ତ ! ତୁମକୁ ଚପଳା ଗୁପ୍ତ ସଙ୍ଗେ ସମ୍ପର୍କିତ କରି ଯେଉଁ ଦୁର୍ଘଟଣା ଆଜି ଘଟିଛି ତାର ବହୁ ପୂର୍ବରୁ—ମାନେ ପ୍ରାୟ ବର୍ଷକ ତଳୁ ତୁମ ନାମରେ ଏହିଭଳି ଜନରବ ଯେ ଜମିଆସୁଥିଲା ଏକଥା କଣ ତୁମେ ଜାଣିନାହଁ ? ମୁଁ ତ କେତେ ଥର ସେଥିଲାଗି ତୁମକୁ ସତର୍କ କରିଛି ! ଚପଳା ଗୁପ୍ତ ଗଣିକା । ତା ସଙ୍ଗେ ମିଶି ତୁମେ ପ୍ରେମ ପାଇବ ନାହିଁ—ପାଇବ ଅପବାଦ । କିନ୍ତୁ ତୁମେ କଣ ମୋର କଥା ଶୁଣିଲ ? ତୁମର ସେ ଯୁକ୍ତି ! ଗୁଡ଼୍—ବର୍ତ୍ତମାନ ଉପାୟ କଣ କହ ? ତୁମେ କଣ ଏ ଘଟଣାରେ ପ୍ରକୃତରେ ଦାୟୀ ?"

ଶୁଭକାନ୍ତ କିଛିକ୍ଷଣ ନୀରବ ହେଲା । ସଂଧ୍ୟା ଆକାଶରେ ଗୋଟିଏ ଦୁଇଟି ତାରା ଜକ୍ ଜକ୍ ହେଲେଣି । ଶରତ କାଳର ଆକାଶ । ସପ୍ତମୀ ଅଷ୍ଟମୀର ଚନ୍ଦ୍ର ଶରତର ଲଘୁ ଶୁଭ୍ର ମେଘର ଅବଗୁଣ୍ଠନ ମଧ୍ୟରେ ଆତ୍ମଗୋପନ କରିଛି । ପାର୍କ ଭିତରେ ସେ ଓ ମୁଁ । ସୁକର୍ତ୍ତିତ କାମିନୀ ଗଛଗୁଡ଼ିକ ନିସ୍ତବ୍ଧ ଭାବରେ ଠିଆହୋଇ ରହିଛନ୍ତି । ପାର୍କର ଆରପଟେ ନଦୀର ବିସ୍ତୃତ ବାଲୁକାଶଯ୍ୟା ଉପରେ ଶୀର୍ଣ୍ଣ ନଦୀ ଧାରଟି ସଚେତନ ଶୋଇରହିଛି ! ପ୍ରାୟ ଦୁଇ ତିନି ଦିନ ତଳେ ଭୀଷଣ ବର୍ଷା ଓ ତୋଫାନ ହୋଇଥିଲା । ତାର ଚିହ୍ନ ରହିଯାଇଛି ନଦୀ କୂଳର ବୃକ୍ଷଗୁଡ଼ିକ ଉପରେ ଓ ପାର୍କର ଲତାଗୁଡ଼ିକ ଉପରେ । ପବନ ନାହିଁ—ସମଗ୍ର ପ୍ରକୃତି ଯେପରି କିଛି ଶୁଣିବା ଲାଗି ଉଦ୍‌ଗ୍ରୀବ ଆଉ ଗମ୍ଭୀର !

ମୋର ବାହୁକୁ ଧରି ଶୁଭକାନ୍ତ କହିଲା—ସମସ୍ତଙ୍କ ପରି ତୁମର ବି

ବୋଧେ ଧାରଣା ହୋଇଥିଲ ଯେ ଚପଳା ରାୟ ମୋତେ ଫାନ୍ଦ ପକାଇ ବନ୍ଦୀ କରୁଥିଲ—ଆଉ ସବୁ ବୋକା ପୁରୁଷଙ୍କ ଭଳି ମୁଁ ତାର ମୋହନୀୟ ଫାଶ ଭିତରକୁ ଡେଇଁ ପଡ଼ୁଥିଲ—ନାହିଁ ? ସେ ଏବେ ଅନେକ ଦିନତଳ କଥା ହୋଇ ଆସିଲଣି । ଇତି ମଧ୍ୟରେ ତାକୁ ନେଇ ବହୁ ଲୋକଙ୍କ ନାମରେ ଅପବାଦ ତୁମେ ଶୁଣିଚ—ମୁଁ ବି ଶୁଣିଚି । ଆଜି କାଲି ସବୁ ଅପବାଦର ନିଷ୍ପତ୍ତି ବି ଚୂଡ଼ାନ୍ତ ହୋଇଗଲ, ଆଉ ସବୁ ଅପବାଦର ନିଷ୍ପତ୍ତି ବି ହୋଇଯିବ—ନାହିଁ ?

ଆଜି ସେମାନେ ମୋତେ ଦାୟୀ କରୁଛନ୍ତି । ମୁଁ ଜାଣେ ସେମାନେ ମୋର କିଛି କରି ପାରିବେ ନାହିଁ । ସବୁ କଥା ନିଶ୍ଚୟ ଶେଷରେ ପରିଷ୍କାର ହୋଇଯିବ । ମାତ୍ର ସବୁ କଥା ପରିଷ୍କାର କରିବା ଲଗି ଯଦି ପରିସ୍ଥିତି ଅନୁକୂଳ ନ ହୁଏ, ତେବେ ବାସ୍ତବରେ ମୋର କିଛି କ୍ଷତି ନ ହେଲେ ବି— ସାଧାରଣଙ୍କ ଧାରଣାରେ ମୁଁ ଦୋଷୀ ହୋଇ ରହିଯିବି ଚିରଦିନ । ତେଣୁ ଆଗ ତୁମକୁ ମୋର ଚପଳା ରାୟ ସମ୍ପର୍କରେ ଆସିବାର ଅଭିଜ୍ଞତା କହୁଚି, ଶୁଣ । ତା'ପରେ ଏହି ଦିନ ଚାରିଦିନ ମଧ୍ୟରେ ଯାହା ଘଟିଲା ସେ କଥାରେ ମୋର ଦାୟିତ୍ୱ କେତେ ତାହା ତୁମେ ନିଜେ ବୁଝିବ । ମୁଁ ବି କହିବି ।

ତୁମେତ ଜାଣ ଚପଳା ରାୟ କେତେ ପୁରୁଷଙ୍କ ସଙ୍ଗେ ମିଶେ ! ଫରେଷ୍ଟ ଅଫିସର ତାକୁ ଜିପ୍‌ରେ ଧରି ଶିକାର କରିବାକୁ ଯା'ନ୍ତି ଜଙ୍ଗଲ ଭିତରକୁ । ସେକେଣ୍ଡ ଅଫିସରଙ୍କର ସେ ଦିନକିଆ ଟୁର୍‌ର ସାଥୀ । ଡାକ୍ତର ମହାନ୍ତି ଦୂରକୁ ରୋଗୀ ଦେଖିବାକୁ ଗଲେ ଚପଳାକୁ ମଟରରେ ନ ବସାଇଲେ ଯାଆନ୍ତି ନାହିଁ । ବିପତ୍ନୀକ ଅବସର ପ୍ରାପ୍ତ ଏ.ଡ଼ି.ଏମ.ଙ୍କର ତ ସେ ଧରମ ଝିଅ । ପ୍ରଫେସର ମିଶ୍ର ବୁଢା ଦିନେ ଦିନେ ତାକୁ ପଢ଼ାଇବାକୁ ଆସି ତା ଘରେ ଖିଆ ଖାଇଯାନ୍ତି । ଏ ତ ଗଲା ଉପର ମହଲର କଥା । ତଳ ମହଲରେ ବି ଚପଳା ସଙ୍ଗେ ସମସ୍ତେ ମିଶନ୍ତି । ସମସ୍ତେ ଜାଣନ୍ତି ପ୍ରେମ କରିବା ଲଗି ଚପଳା ରାୟ ଏକ ଶସ୍ତା ଝିଅ । ଆଉ ଚପଳା ମଧ୍ୟ ଜାତି ଧର୍ମ ନିର୍ବିଶେଷରେ ଉଚ୍ଚନୀଚ ଶ୍ରେଣୀନିର୍ବିଶେଷରେ ଓ ବୟସନିର୍ବିଶେଷରେ ସମସ୍ତଙ୍କ ସଙ୍ଗେ ମିଶେ । ସବୁରି ସଙ୍ଗେ ଥଟ୍ଟା ହୁଏ । ସମସ୍ତଙ୍କ ସଙ୍ଗେ ହେଁ ହେଁ ଫେଁ ଫେଁ ହୁଏ । କଲେଜର ଫାଷ୍ଟ ଇୟର ଷ୍ଟୁଡେଣ୍ଟ ରଞ୍ଜନ୍‌ଠାରୁ ଆରମ୍ଭ କରି ନାଟ

କର୍ମଚାରୀଙ୍କ ପର୍ଯ୍ୟନ୍ତ—ଆଉ ଗ୍ରାମସେବକ ଜନାର୍ଦ୍ଦନ ବାବୁଙ୍କଠାରୁ ଆରମ୍ଭ କରି ଆମ ଶ୍ରେଣୀର ଉଚ୍ଚପଦସ୍ଥ କର୍ମଚାରୀଙ୍କ ପର୍ଯ୍ୟନ୍ତ ସମସ୍ତେ ଚପଲା ରାସ୍ତ ପଛରେ ଲଗିଥାଆନ୍ତି । ସୁବିଧା ପାଇଲେ କିଏ ତାର ବେଣୀ ଖୋଲିଦିଏ, କିଏ ତାର ଖୋସାରେ ଫୁଲ ଖୋସିଦିଏ, କିଏ ବା ତା ହାତରେ ହାତ ମିଳାଇ ଟିକିଏ ପ୍ରେମ ଚାପ ଦେଇ ନିଜର ଆବେଗ ପ୍ରକାଶ କରିଥାଏ ।

ଚପଲା ରାସ୍ତକୁ ସମସ୍ତେ ଚିହ୍ନନ୍ତି ସମସ୍ତେ ଜାଣନ୍ତି । ମାତ୍ର ଚପଳାର ସେଥିଲାଗି ଅବଶୋଷ ନାହିଁ—କିଛି ଚିନ୍ତା ନାହିଁ । ସବୁ କଥାରେ ସେ ହିଁ ହିଁ ହୋଇ ହସିଦିଏ, ବାସ୍—ତା' ହୃଦୟର ସମସ୍ତ ପ୍ରତିକ୍ରିୟାକୁ ବୋଧେ ସେ ଏହି ହିଁ ହିଁ ହସ ଭିତରେ ଇ ଉଡ଼ାଇ ଦିଏ ।

ପ୍ରାୟ ଦେଢ଼ ବର୍ଷ କାଳ ମୁଁ ତାକୁ ଲକ୍ଷ୍ୟ କଲି । ସେହି ଦେଢ଼ ବର୍ଷ କାଳ ଭିତରେ ବିଭିନ୍ନ ପରିସ୍ଥିତି ମଧ୍ୟରେ ସେ ମୋର ସମ୍ମୁଖୀନ ହୋଇଛି । ମାତ୍ର ମୁଁ ତା' ସଙ୍ଗେ ଖୁବ୍ ଗମ୍ଭୀର ଓ ସଂଯତ ଭାବେ ବ୍ୟବହାର କରିଛି । ସେ ମଧ୍ୟ ମୋର ଏ ଗାମ୍ଭୀର୍ଯ୍ୟର ସମ୍ମାନ ରକ୍ଷା କରୁଥିଲା । ଅତି ସାଧାରଣ ଭାବରେ ସେ ମୋତେ ବେଶ୍ କିଛି ଭୟ ମଧ୍ୟ କରୁଥିଲା । ବିଭିନ୍ନ କାର୍ଯ୍ୟରେ ସେ ଆମ ଘରକୁ ଯାଇଛି—ପିଲାମାନଙ୍କ ସ୍ୱାସ୍ଥ୍ୟ ଦେଖିବା ଲାଗି—କିମ୍ବା ମୋ ସ୍ତ୍ରୀଙ୍କ ସଙ୍ଗେ ଆଳାପ କରିବାକୁ । ମୋ ସ୍ତ୍ରୀ କିନ୍ତୁ ଚପଲାକୁ ଆଦୌ ସହ୍ୟକରି ପାରନ୍ତି ନାହିଁ—କେବଳ ଭଦ୍ରତା ଖାତିରରେ ସେ ତା' ସଙ୍ଗେ ବ୍ୟବହାର କରନ୍ତି ସିନା ! ମୁଁ କାର୍ଯ୍ୟ କ୍ଷେତ୍ରରୁ ଘରକୁ ଫେରିଲେ ଚପଲା ବିରୁଦ୍ଧରେ ବହୁ ଅଭିଯୋଗ ବିନୋଦିନୀଙ୍କଠାରୁ ଶୁଣେ । ଚପଲାର ବଦ୍‌ସ୍ୱଭାବ—ଘୋଡ଼ୀ ଭଳି ସବୁବେଳେ ହିଁ ହିଁ ହୋଇ ହସିବା—ଅନ୍ୟର ମାନସିକ ଅବସ୍ଥା ପ୍ରତି ଦୃଷ୍ଟି ନ ଦେଇ ବାଉଳାଙ୍କ ପରି କଥା ଗପିବା—ଭଦ୍ରଲୋକଙ୍କ ନାମରେ କୁତ୍ସାରଟନା କରିବା ଇତ୍ୟାଦି, ଇତ୍ୟାଦି ଅଭିଯୋଗ ଶୁଣି ଶୁଣି ମୁଁ ବ୍ୟସ୍ତ ହୋଇପଡ଼େ । ଏଣେ ପୁଣି ସବୁରିଠାରୁ ତାର କଳଙ୍କିତ ଚରିତ୍ର ବିଷୟରେ ଶୁଣି ଶୁଣି ମୁଁ ତା ପ୍ରତି ଏକ ପ୍ରକାର ବିରକ୍ତ ହୋଇ ଉଠୁଥିଲି ।

ଅଫିସରେ, ଘରେ, ବାହାରେ ଚାରିଆଡ଼େ ଚପଲା ରାସ୍ତର ଝଗଡ଼ା

ସ୍ୱଭାବ କଥା ଶୁଣି ଶୁଣି ମୁଁ ଦିନେ ହଠାତ୍ ଲକ୍ଷ୍ୟକଲି—ମୋର ଅଜାଣତରେ ମୋ ଭିତରେ ମୁଁ କିପରି ଚପଳା ପ୍ରତି ଟିକେ ଆସକ୍ତ ହୋଇ ପଡ଼ୁଛି !

ତା ପ୍ରତି ମୋର ବିରକ୍ତିର ତଳେ ତଳେ କେଉଁଠି କିପରି ଟିକିଏ ଅନୁରକ୍ତି ଯେ ଜମେ ଘନେଇ ଆସୁଛି, ଏ କଥା ମୁଁ ହଠାତ୍ ଦିନେ ଆବିଷ୍କାର କଲି । ମୋ ମନରେ ବି ଚପଳାର ସାନ୍ନିଧ ଲାଗି ଲୋଭ ଜାଗ୍ରତ ହୋଇ ଉଠିଲା ।

ସୁଯୋଗ ବି ଘଟିଲା ଦିନେ । ଗତବର୍ଷ ଶୀତକାଳର ଏକ ଅଳସ ଅପରାହ୍ନ । ସନ୍ଧ୍ୟା ସମାଗତ ପ୍ରାୟ । ଅଫିସ ଛୁଟି ହୋଇଗଲାଣି । ମୋ ଅଫିସରେ ମୁଁ ବସି ଟିପି କାର୍ଯ୍ୟ କରୁଛି । ଦେହଟା ଖୁବ୍ ମାଦା ଲାଗିଲା । ଫ୍ଲାସ୍କରୁ କିଛି ଗରମ କଫି ଢାଳି ଖାଉଛି ହଠାତ୍ ଦେଖିଲି ଦ୍ୱାରଦେଶରେ ପରଦା ଧରି ଜଣେ କିଏ ଉଙ୍କି ମାରୁଛି । ପିଅନଙ୍କୁ ଛୁଟି କରି ଦେଇଥିଲି— ଆଉ କିଏ ହୋଇ ପାରେ ? ଡାକିଲି—ଭିତରକୁ ଆସ—କିଏ ?

ସେ ଚପଳା ସ୍ୱୟଂ । ଟେବୁଲ୍ ପାଖେ ନମସ୍କାର ଜଣାଇଁ ସେ ଠିଆ ହେଲା । ଏହି ଅପ୍ରସ୍ତୁତ ମୁହୂର୍ତ୍ତରେ ହଠାତ୍ ମୋର ମନେହେଲା ସେ ଯେପରି କାମନାର ଗୋଟିଏ ଉଗ୍ର ଜୀବନ୍ତ ପ୍ରତିମୂର୍ତ୍ତି ! ତାର ପଛପଟେ ବେକ ଉପରେ ସୁନ୍ଦର ଘନ କେଶଗୁଚ୍ଛ ଏକ ଶ୍ଳଥ ଏବଂ ଲଘୁ ଭଙ୍ଗୀରେ ଫୁଲେଇ ହୋଇ ବନ୍ଧା ହୋଇଛି । ଓଠର ଲିପ୍‌ଷ୍ଟିକ ଭିତରେ ଯେପରି ଭୋଗ କାମନାର ପ୍ରମତ୍ତ ବିଲୋଳବହ୍ନିଳତା ପାଚି ଲାଲ ପଡ଼ିଯାଇଛି । ଆଉ ଏହି ନିର୍ଜ୍ଜନ ପରିବେଶ ମଧ୍ୟରେ ତାର ଆଖି ଦୁଇଟି ସତେ ବା ନେଇ ଆସିଛି କାମନା ତୃପ୍ତିର ସାଦର ନିମନ୍ତ୍ରଣ !

ମୋର ଦେହର ନିଆଁ ମୋର ଆଖି ଭିତରେ ଜଳି ଉଠିଲା । ବହୁବାର ଶୁଣିଛିଏଇ ଚପଳା ସ୍ୱୟଂ ବିଷୟରେ—ସେ କୁଆଡ଼େ ଖୁବ୍ କାମପ୍ରବଣ ! ତାକୁ ଯେ କୌଣସି ମୁହୂର୍ତ୍ତରେ ଯେ କୌଣସି ବ୍ୟକ୍ତି ଯେ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରି ପାରିବ । ସେଥିଲାଗି କୌଣସି ଯୋଜନା ବା ପ୍ରସ୍ତୁତି ବା କଳାର ଆୟୋଜନ ନାହିଁ । ଚପଳା ସ୍ୱୟଂକୁ ପୂର୍ବରୁ ଏଭଳି ନିର୍ଜ୍ଜନ

ପରିବେଶରେ ଏକୋକଣୀ କେବେ ପାଇନାହିଁ । ଆଜି ସେ ବଳେ ବଳେ ଆସିଛି ଏଇଭଳି ପରିସ୍ଥିତି ଭିତରକୁ । କଣ ଅଉ ତାର ଉଦ୍ଦେଶ୍ୟ ଥାଇପାରେ ?

ଆଉ ଗୋଟେ କଥା ବନ୍ଧୁ—ତୁମେ ବୋଧେ ଜାଣିନ ! ଗଣିକାକୁ ଭୋଗ କରିବାର କାମନା ପ୍ରାୟ ସବୁ ପୁରୁଷଙ୍କ ଭିତରେ ଅଛି । ଯାହା ଉପରେ ସମସ୍ତେ ନିଜର ଅଧିକାରର ମୋହର ମାରିଦେଇ ଯାଆନ୍ତି, ତା' ଉପରେ ନିଜର ଗୋଟାଏ ମୋହର ଛାପି ନ ଦେଲେ ମନରେ ତୃପ୍ତି ଆସେ ନାହିଁ । ଯାହା ସର୍ବସାଧାରଣର ସମ୍ପତ୍ତି ସେଠାରେ ନିଜର ଦାବୀ ସାବ୍ୟସ୍ତ ନ କଲା ପର୍ଯ୍ୟନ୍ତ—ଅର୍ଥାତ୍ ସେହି ସ୍ଥଳରେ ନିଜକୁ ସାଧାରଣ ମଧ୍ୟରେ ଜଣେ ବୋଲି ପ୍ରମାଣ ନ କଲା ପର୍ଯ୍ୟନ୍ତ ମଣିଷ ମନରେ ଶାନ୍ତି ଆସେ ନାହିଁ । ଯେଉଁ ତୀର୍ଥରେ ସମସ୍ତେ ପୁଣ୍ୟ ଅର୍ଜନ କରନ୍ତି ସେଇ ତୀର୍ଥରେ ନିଜେ ବୁଡ଼ପକାଇ ନିଜର ପୁଣ୍ୟଭାଗ ନିଜେ ଲୁଣ୍ଠନ ନ କଲା ପର୍ଯ୍ୟନ୍ତ ମନୁଷ୍ୟର ସାମାଜିକ ମନୋବୃତ୍ତିର ଆଶ୍ୱସ୍ତି ଆସେନାହିଁ । ପୁଣ୍ୟକୁଣ୍ଡ ଭଳି ପାପ କୁଣ୍ଡର ମଧ୍ୟ ଆକର୍ଷଣ କମ୍ ନୁହେଁ—ଯଦି ସେ କୁଣ୍ଡରୁ ତୁମ ଭଳି ବହୁଲୋକ ପାପବାରି ପାନ କରନ୍ତି । ଶୋଷ ହେଉ ନ ହେଉ, ଛତର କୁଣ୍ଡରୁ ଛତର ପାଣି ପିଇବା ଲାଗି ବହୁଲୋକ ଲୋଭାନ୍ୱିତ ହୋଇପଡ଼ନ୍ତି । ଏଇଟା ବୋଧେ ମନୁଷ୍ୟର ସାମାଜିକ ମନୋବୃତ୍ତିର ଅତି କୁତ୍ସିତ ଦିଗ ; କିନ୍ତୁ ଏହା ହିଁ ସତ୍ୟ ।

ଚପଳା ଗ୍ରସ୍ତ ବହୁଭୋଗ୍ୟା—ବହୁବଲ୍ଲଭା—ବହୁ ବ୍ୟକ୍ତିଙ୍କର ଅଧିକାର ମୋହରରେ ତାର ଦେହ ଲାଞ୍ଛିତ ଓ ମନ କଳୁଷିତ । ମୁଁ ଆଜି ସେଇ ସର୍ବସାଧାରଣ ସମ୍ପତ୍ତିରେ ମୋର ଭାଗ ଚିହ୍ନିତ କରିବାକୁ ଚାହେଁ । ତା' ନହେଲେ ମୁଁ ସର୍ବସାଧାରଣରେ ଜଣେ ହୋଇ ପାରିବ ନାହିଁ ।

—'କଣ ଚାହଁ ?'

—'ସାର୍ ଟିକେ କାମ ଅଛି ।'

ଚପଳା ଲାଗି ମୋର ଭିତରର ଚପଳ ଉଦ୍ଦେଶ୍ୟ ମୋର କଥାର ଚପଳତାରେ ପ୍ରକାଶ ପାଇଲା । ମୁଁ କାଣ୍ଡଜ୍ଞାନ ଶୂନ୍ୟ ହୋଇ କହିଲି—

'କାମ ନା କାମନା ?'

ଚପଳା ସ୍ୱପ୍ନ ମୋର କଥା ଶୁଣି ନିରୁଦ୍‌ବେଗ ଭାବରେ ମୋତେ ଚାହିଁଲା । ତାର ଆଖିର ଚାହାଣୀରେ ଯେପରି ନିଜକୁ ସମର୍ପଣ କରି ଦେବାର କାମନା ଫୁଟି ଉଠିଛି ! ଅଧରର ସ୍ମିତ ମଧ୍ୟରେ ଯେପରି ସେହି ସ୍ୱୀକୃତଟା ହିଁ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଛି ।

ସେ ଅଳ୍ପ ହସି ପୁଣି ଓଠରୁ ଫାଳେ ଉପର ଦାନ୍ତରେ କାମୁଡ଼ିଲା ଏବଂ ଗୋଟିଏ ଆଙ୍ଗୁଠିର ନଖକୁ ଦାନ୍ତରେ ଛୁଆଁଇ ଛୁଆଁଇ ମୋ ଆଡ଼କୁ ତୀର୍ଯ୍ୟକ ଦୃଷ୍ଟି ନିକ୍ଷେପ କରି ବେଶ୍ ଗୋଟିଏ କାମାର୍ତ୍ତିନୀ ବ୍ରୀଡ଼ା ଦେଖାଇ କହିଲା—'ସାର୍ !'

ମୁଁ କହିଲି 'ହଁ। ଏଣିକି ଆସ—ଏକଡ଼କୁ—ହଁ।—ବାସ୍ ।'

ସେ ମୋ କଡ଼କୁ ଲଗି ଆସିଲା । ମୁଁ ତାର କଟୀଦେଶରେ ମୋର ହାତକୁ ଜଡ଼ାଇ ତାକୁ ବେଶ୍ ଟୋଟାଏ ଉତ୍ତପ୍ତ ଚାପ ଦେଲି । ସେ ସମ୍ମୋହିତ ହେଲପରି ମୋର ଅର୍ଦ୍ଧ ଆଲିଙ୍ଗନ ମଧ୍ୟରେ ଠିଆ ହୋଇ ରହିଲା । ତାପରେ ମୁଁ ନିଜେ ଠିଆହୋଇ ତାକୁ ଚୁମ୍ବନ ଦେଲି ।

ମାତ୍ର ସେ ଖାଲି ହସିଲା—ହିଁ ହିଁ ହିଁ ହିଁ ହିଁ ହିଁ ହିଁ ହିଁ ହିଁ ।

ବାପ୍‌ରେ—ସେ ଏକପ୍ରକାର ଭୟଙ୍କର ହିଷ୍ଟୋରିକ ହସ !

କିନ୍ତୁ ବନ୍ଧୁ—ସେହି ଘଟଣାଟି ପରେ ଆଉ ଯେତେଥର ସେହି ଘଟଣାଟିର ପୁନରାବୃତ୍ତି ହୋଇଛି, ସବୁଥର ଝୋଡ଼ୀ ଭଳି ସେ କେବଳ ଏହିପରି 'ହିଁ ହିଁ ହିଁ' ହସ ମୋତେ ଶୁଣାଇଛି । ପ୍ରଥମେ ପ୍ରଥମେ ନିଜର ଆବେଗରେ ମୁଁ ଅନ୍ଧ ଥିଲି—ନିଜର ପ୍ରଚଣ୍ଡ କାମନାର ନିଆଁ ଭିତରେ ମୁଁ ତାତିକରି ଥିଲି । କେବଳ ନିଜେ ଭୋଗ କରିବାର ଆତୁରତାରେ ମୁଁ ନିଜେ ଥିଲି ମୂଢ଼ ।

ମାତ୍ର କ୍ରମେ ଦେହରୁ ମୋର ଯେତେବେଳେ ଏହି ତାତି ଖସି ଆସିଲା ଆଉ ମନରୁ ଲିଭି ଆସିଲା କାମନାର ନିଆଁ, ସେତେବେଳେ ଏହି ବ୍ୟାପାରରେ ମୁଁ ସଜାଗ ହେଲି । ମୋର ମନ ଭିତରେ ପ୍ରଶ୍ନ ଉଠିଲା—

ମୋର ଏତେ ନିବିଡ଼ ଆଲିଙ୍ଗନର, ଏତେ କାମନାତପ୍ତ ଉଷ୍ଣ ଚୁମ୍ବନର କି ପ୍ରତିଦାନ ଦିଏ ଏଇ ଚପଳା ଗ୍ରସ୍ତ ?

ଅଣ୍ଡା—ବନ୍ଧୁ ଅଣ୍ଡା—ବରଫ ପରି ଅଣ୍ଡା—ମଲା ମଣିଷର ଦେହ ପରି ଅଣ୍ଡା—ହେମାଳ ! ଯେତେବେଳେ ମୋର ଓଠରୁ କମି ଆସିଲା ଉଷ୍ଣତା, ମୁଁ ଅନୁଭବ କଲି ଚପଳା ଗ୍ରସ୍ତର ଅଣ୍ଡା ଓଠ, ଆଉ ତାର ସଂସ୍ପର୍ଶରେ ଆସି ମୋର ଓଠ କ୍ରମଶଃ ବରଫ ପାଲଟି ଯାଉଛି । ମୁଁ ଅନୁଭବ କଲି ଚପଳା ଗ୍ରସ୍ତର ନିର୍ବେଦ ନିଷ୍କ୍ରିୟ ଦେହ—ଯାହା ମଲା ମଣିଷର ଦେହଭଳି ହିମ-ଶୀତଳ, ଆଉ ଯାହାର ସଂସ୍ପର୍ଶରେ ଆସି ମୋର ଦେହ କ୍ରମଶଃ ତାର ସ୍ୱାଭାବିକ ଉତ୍ତାପ ହରାଇବସୁଛି ।

ଇଏ କଣ ? ହଠାତ୍ ଚପଳା ଗ୍ରସ୍ତର ଓଠରେ ଚୁମା ଦେଇ ମୁହଁ ଉଠାଇ ନେଉ ନେଉ ମୁଁ ଦେଖିଲି ସେ ଚୁମ୍ବନରେ ଆଉ ଶବ୍ଦ ନାହିଁ ! ଶବ୍ଦ ଆସୁଛି ବରଂ ଚପଳା ଗ୍ରସ୍ତର କଣ୍ଠରୁ । ସେଇ 'ହି ହି ହି, ହି ହି ହି' ।

ପ୍ରେମ ହେଉ ବା କାମ ହେଉ ତାକୁ ଏକା ଏକା କେବଳ ଗୋଟିଏ ପକ୍ଷ ଭୋଗ କରି ହୁଏ ନାହିଁ ବନ୍ଧୁ ! ମୁଁ କିନ୍ତୁ କ୍ରମେ ବୁଝିଲି ଚପଳା ଗ୍ରସ୍ତର ନିଜର ଭୋଗସ୍ପୃହା ନାହିଁ । ସେ କେବଳ ମାଟି ପ୍ରତିମାଭଳି ଅନ୍ୟର ବାହୁବେଷ୍ଟନୀରେ ଢଳିପଡ଼େ । ମୁଁ ବେଶ ଜାଣିଛି—କୌଣସି ଦିନ କେବେ-ହେଲେ ବି ସେ ତା' ଆଡ଼ୁ ଏସବୁ ବ୍ୟାପାରରେ କୌଣସି ପ୍ରତିକ୍ରିୟା ଦେଖାଇ ନାହିଁ । ଆଶ୍ଚର୍ଯ୍ୟ ଭାଇ, ଏଭଳି ଉତ୍ତାପବିବର୍ଜିତା ନାରୀ କେବଳ ଏହି ଯୁଗରେ ହିଁ ସମ୍ଭବ ! ସେ ନିଜେ କାମନାର ପ୍ରତିମୂର୍ତ୍ତି ଅଥଚ ତାର ନିଜର କାମନା ନାହିଁ । ଅନ୍ୟଠାରେ ସେ କାମନା ଜାଗ୍ରତ କରେ—ମାତ୍ର କିଏ ତା'ଠାରେ କାମନା ଜାଗ୍ରତ କରି ପାରିଛି ? ସେ ହେଉଛି ଜଳ—ଅନ୍ୟକୁ ତୃଷାର୍ତ୍ତ କରାଏ—ମାତ୍ର ନିଜର ତାର କୌଣସି ତୃଷ୍ଣା ନାହିଁ ।

ପ୍ରକୃତରେ ଭାଇ, ଚପଳା ଗ୍ରସ୍ତ ହେଉଛି ଜଳବତ୍ ତରଳ ନାୟିକା । ତାର ଗତି ଅଛି—ହୋଇପାରେ ସେ ନିମ୍ନଗତି । କାହାର ଉତ୍ତାପରେ ସେ ଉତ୍ତପ୍ତ ହୁଏ ନାହିଁ । କାହା କାମନାର ପ୍ରତିବିମ୍ବ ତା ଭିତରେ ସ୍ଥାୟୀ ହୋଇ ସ୍ପଷ୍ଟ ହୋଇ ରହିପାରେ ନାହିଁ । ସେ କେବଳ ଉପରୁ ନିମ୍ନକୁ ବହିଯାଏ ।

ମଝିରେ ଅଧବାଟରେ ଅଟକି ରହି କିଛି ସମୟ ଭାବିବାକୁ ସେ ଇଚ୍ଛା କରେ-ନାହିଁ—ଅନୁଭବ କରିବାର ଆବଶ୍ୟକତା ଅନୁଭବ କରିନାହିଁ ।

ତା ପ୍ରତି କ୍ରମେ ମୋର ବୈରାଗ୍ୟ ଆସିଲା । ଛି ! ଛି !! ଚପଳା ରାୟ ସଙ୍ଗେ ସମ୍ପର୍କ—କାଠ କୁମ୍ଭୀର ସଙ୍ଗେ ସମ୍ପର୍କ—ପ୍ରଭେଦ କେଉଁଠି ? କ୍ରମେ ତାକୁ ଆଲିଙ୍ଗନ କରିବାରେ ମୋର ମନରୁ ସମସ୍ତ ଆବେଗ ଲୋପ ପାଇଲା ଓ ବାହୁ ବନ୍ଧନରେ ଆସିଲା ଶୈଥିଲ୍ୟ ।

ଏ ବୈରାଗ୍ୟ କିନ୍ତୁ ଘୃଣାରୁ ନୁହେଁ ବନ୍ଧୁ ! ଚପଳା ରାୟ ପ୍ରତି ଘୃଣା ବଦଳରେ ବରଂ ମୋର ମନରେ ଆସିଲା ଏକ ପ୍ରକାର କରୁଣ ସହାନୁଭୂତି । ଆହା ବିଚାରି ଚପଳା ରାୟ—ଦୁନିଆଁ ବିଷୟରେ କଣ ସେ ବୁଝିଛି ? ସବୁରି ମନ ରଖି, ସବୁରି ହାତ ପାଆନ୍ତାରେ ଧରିଦେଇ, ବଦଳରେ କଣ ବିଚାରି ସେ ପାଇଛି—ଲାଞ୍ଛନା, ଘୃଣା, ଅପବାଦ ! ଚପଳା ସଙ୍ଗେ କାମଲାଳସାସିକ୍ତ ସମ୍ପର୍କ ରଖିଛନ୍ତି ଯେଉଁମାନେ ସେମାନେ କି କେବେ ହେଲେ ଚପଳାର ଏହି ନିଷ୍କାମ, ଚପଳ, ନିର୍ଲିପ୍ତ ଉନ୍ମାନସିକତା ଲକ୍ଷ୍ୟ କରିପାରିଲେ ? ଚପଳାକୁ କାମନାତପ୍ତ ନିବିଡ଼ ଆଲିଙ୍ଗନ ମଧ୍ୟରେ ଧରି କେହି କି ହେଲେ ବୁଝିଲା ଯେ ଚପଳା ରାୟର ଏହି ଧରାଦେବା ଏକ ପ୍ରକାର ବାଲସୁଲଭ ବଦାନ୍ୟତା—ଏକ ପ୍ରକାର ଉଦ୍ଦେଶ୍ୟହୀନ ଖେଳ ! ବରଂ ସମସ୍ତେ କହନ୍ତି—ଚପଳା ରାୟ ଖୁବ୍ କାମପ୍ରବଣା— ତା'ଠାରେ କାମ ଅଛି ମାତ୍ର ତାର ପ୍ରବଣତା କାହିଁ ?

କିନ୍ତୁ ହାୟ ବିଚାରି ଚପଳା ରାୟ, ସେ କେବେ ବୁଝିବ ଯେ ତାକୁ କେହି ବୁଝି ନାହାନ୍ତି । ସେ କେବେ ବୁଝିବ ଯେ, ଚିରଦିନ ତାର ଏହି ଚପଳତା ରହିବ ନାହିଁ ! ଏହିଭଳି ପିଲାମି କରୁ କରୁ ଦିନେ ହଠାତ ସେ ଚମକି ପଡ଼ି ଦେଖିବ—ତାର ଆଖି ତଳେ କାଳିଆ ଦାଗ—ଆଖି କଣରେ ବନ୍ଧି ଯାଇଥିବା ସମୟର ରେଖାଲିପି—ଅଧରରେ ଗତବସନ୍ତର ମ୍ଳାନ ଗୋଧୂଳି—ଆହା ! ସେତେବେଳେ ସେ ଆତୁର ହୋଇ କାହାର ବକ୍ଷତଳେ ଆଶ୍ରା ଖୋଜିବ ? କିଏ ତାକୁ ଆଶ୍ରୟ ଦେବ ସେତେବେଳେ ? ଚପଳା ବୁଝୁ ନାହିଁ । ଅସମୟରେ ପିଲାମି ଦେଖାଇ ସେ ତାର ନାରୀତ୍ୱର ଅପଚୟ କରୁଛି । ଏହି ଅପବ୍ୟୟ ଯେତେବେଳେ ତାକୁ ସର୍ବସ୍ୱାନ୍ତ କରିବ ସେତେବେଳେ


Digitized by srujanika@gmail.com

କାହାର ଭଣ୍ଡାର ପାଖରେ ସେ ହାତପାତ ଭିକ୍ଷା ମାଗି ବସିବ ?

ଚପଳା କ ବୁଝିବ ନାହିଁ ଯେ, ଏ ସଂସାରରେ କେହ କାହାକୁ ବୁଝିନ୍ତ ନାହିଁ ? ଚପଳା ବର୍ତ୍ତମାନ ବୁଝୁନାହିଁ—କନ୍ତୁ ଯଦ ସେ ବୁଝିବ !! ଯେତେ ସେ ବୁଝିବ !!

ହାୟ, ହାୟ, କେବେ ଯେ ସେ ବୁଝିବ ??

ଏଇ—ଏଇ ସହାନୁଭୂତ ହିଁ ପରଣତ ହେଲ କ୍ରମେ ଏକ ପ୍ରକାର ନର୍ଲିପ୍ତ ଓ ନଷ୍କାମ ଭଲପାଇବାରେ ।

ଚପଳା ଗ୍ରସ୍ତ ପ୍ରତ ମୋର ହୃଦୟର ଏହ ବଗ୍ଧରପ୍ରବଣ ସହାନୁଭୂତ କନ୍ତୁ ସେ କେବେ ବୋଧେ ବୁଝୁ ନଥିଲ । କପର ବା ବୁଝିବ ? ସେ ବହୁ ପୁରୁଷଙ୍କ ସଙ୍ଗେ ମିଶିଛ, କନ୍ତୁ କେଉଁ ପୁରୁଷକୁ ମନ ଦେଇନାହିଁ, ବା କେଉଁ ପୁରୁଷର ମନ ପାଇନାହିଁ । ସେ କପର ବୁଝି ପାରବ ପୁରୁଷର ମନ ? ସେ ଦେଖିଛ, ପୁରୁଷ କେତେବେଳେ ବାଘ ଭଳ ଲୁଦାମାରେ—ଲଞ୍ଜ ପିଟେ—ପଂଝା ଘଷେ—ହେଁଟାଳ ଗ୍ରୁଞ୍ଜେ । କେତେବେଳେ ପୁଣି ଲଞ୍ଜ ହଲାଏ କୁଁ କୁଁ ହୋଇ—ନାପୁରପାପୁର ବୁଲକୁକୁର ଢୁଆଁଟି ପର ଗୋଡ଼ରେ ଘଷିହୁଏ—ଗୋଇଠା ଖାଏ—ପାଦ ଗୃଟେ ।

ଚପଳା ଗ୍ରସ୍ତଠାରୁ କ୍ରମେ ମୁଁ ଦୂରେଇ ରହବାକୁ ଚେଷ୍ଟାକଲ । ତା'ଲଗି ଆଉ ମୋର ଦୈହକ ଆକର୍ଷଣ କଛ ନ ଥିଲ । ଯାହା ବା ଆଗରୁ ଥିଲ—ସେ ବ ଯଦ ଆକର୍ଷଣ ହୋଇଥାନ୍ତା ପ୍ରକୃତରେ— ତେବେ ତାର ହେଲେ କଛ ଗୋଟାଏ ଦୁର୍ବଳ ସ୍ମୃତ ରହ ଯାଇଥାନ୍ତା । ଯେ କୌଣସି ଗାଢ଼ ଆକର୍ଷଣ ପଛେ ପଛେ ( ସେ ଦେହର ହେଉ, ମନର ହେଉ ବା ଆତ୍ମାର ହେଉ ) ବର୍ତ୍ତରହେ ଏକ ଦୁର୍ବଳ ସ୍ମୃତ । କନ୍ତୁ ଚପଳା ଗ୍ରସ୍ତ ପ୍ରତ ମୋର ଦୈହକ ଆକର୍ଷଣ ତା'ର ଦୈହକ ଜଡ଼ତାରେ ଲୋପ ପାଇ ଯାଇଥିଲ । ଆଉ ତ କଛ ନ ଥିଲ—ତେଣୁ ତା'ଠାରୁ ମୁଁ ଯେମିତ କ୍ରମେ ଦୂରେଇ ଗଲ—ତା' ବଷୟରେ ବ ସେହପର ମନରେ ଆଉ କଛ ଭାବଲ ନାହିଁ ।

ଆଉ ଗୋଟେ କଥା ଜାଣିଛ ବନ୍ଧୁ, ପୁରୁଷ ଆଖିରେ ନାରୀ ଏକ ରହସ୍ୟମୟୀ ପ୍ରକୃତ—ଏକ ପ୍ରହେଳକାପୂର୍ଣ୍ଣ କର୍ମ; ଆଉ ନାରୀ ଅଂଖିରେ ପୁରୁଷ

ଏକ ସମ୍ମାନାସ୍ପଦ ସ୍ମିତମୂର୍ତ୍ତି ଶକ୍ତିଶାଳୀ କର୍ତ୍ତୃତ୍ୱ । ନାରୀପ୍ରତି ପୁରୁଷ ପ୍ରେମପ୍ରବଣ, ମାତ୍ର ପୁରୁଷ ପ୍ରତି ନାରୀ ଭକ୍ତିପ୍ରବଣା । ନାରୀ ପ୍ରେମିକାର ଆସନରୁ ଖସିପଡ଼େ ଯେତେବେଳେ ସେ ତାର ରହସ୍ୟ ହରାଏ, ଆଉ ପୁରୁଷ ବି ପ୍ରେମିକର ଆସନରୁ ଖସିପଡ଼େ ଯେତେବେଳେ ସେ ତାର ସମ୍ମାନ ହରାଏ, କର୍ତ୍ତୃତ୍ୱ ହରାଏ । ଚପଳା ମିସ୍ ପାଖରେ ସବୁ ପୁରୁଷ ସେମାନଙ୍କର ସମ୍ମାନ ହରାଇଛନ୍ତି, ତେଣୁ କୌଣସି ପୁରୁଷ ତାର ପ୍ରେମିକ ହୋଇ ପାରି- ନାହାନ୍ତି । ଚପଳା ମିସ୍ ସମସ୍ତଙ୍କ ପାଖରେ ନିଜର ରହସ୍ୟ ହରାଇଛି । ହାୟ, ହାୟ—ସେଇଥି ଲାଗି ତ ଚପଳା ମିସ୍ ବହୁବଲ୍ଲଭା—ମାତ୍ର କାହାର ଜଣଙ୍କର ବି ସେ ପ୍ରେମିକା ହୋଇ ପାରିଲା ନାହିଁ ।

ଗୁଡ଼—ଗୁଡ଼ ବନ୍ଧୁ, ଚପଳାମିସ୍ ବିଷୟରେ ଆଉ ଥରେ କାହା ସଙ୍ଗେ କଥାବାର୍ତ୍ତା ହେବ ଏ କଥା ମୁଁ ଆଶା କରି ନଥିଲି । କ୍ରମେ ତା' ପ୍ରତି ମୋର ବ୍ୟବହାର ବେଶ୍ ସଂଯତ ହୋଇ ଆସିଲା । କିନ୍ତୁ କାହିଁକି କେଜାଣି ଚପଳା ମିସ୍ ଏଣିକି ବେଶୀ ବେଶୀ ମୋ ପାଖରେ ଅସଂଯତ ହେଲା । ତାର ବିଶୃଙ୍ଖଳ ବ୍ୟବହାରରେ ମୁଁ କ୍ରମେ ମୋର ସମ୍ମାନହାନିର ଆଶଙ୍କା କଲି । ମୋ ପ୍ରତି ତାର ଭୟ ତୁଟିଗଲା । ଅନ୍ୟମାନଙ୍କ ଆଗରେ ସେ ମୋର ପୂର୍ବ ଦୁର୍ବଳତାର ସୁଯୋଗ ନେଇ ଏଭଳି ଆଚରଣ ଦେଖାଇଲା ଯାହା ଫଳରେ ମୋର ମୁଣ୍ଡ ତଳକୁ ହେଲା । ମୋ ସ୍ତ୍ରୀ ମଧ୍ୟ ଏହି ବ୍ୟାପାରରେ ଖୁବ୍ ଉଦ୍ବିଗ୍ନ ହୋଇ ଉଠିଲେ । ସେହି ସମୟରେ ବୁଢ଼ିଆଡ଼େ ତାକୁ ନେଇ ମୋ ନାମରେ ଲୋକେ ବଦନାମ ବି ଆରମ୍ଭ କରିଦେଲେ । ମୁଁ ନିଜେ ବି ଏ ସମୟରେ ଟିକେ ଉତ୍କ୍ଷିପ୍ତ ହୋଇ ପଡ଼ିଥିଲି । ମାତ୍ର କରି ବା ଆଉ କରିପାରନ୍ତି !! ଚପଳାର ଏ ପ୍ରକାର ବ୍ୟବହାରରେ ମୁଁ ଯେତିକି ପୀଡ଼ିତ ହେଲି ସେତିକି ବିସ୍ମିତ ବି ହେଲି । ଏ କଣ ? ଚପଳା କଣ ପ୍ରତିଶୋଧ ଚାହେଁ ? ସେ କଣ ବହୁ ପୁରୁଷଦତ୍ତ ଅପମାନର ପ୍ରତିଶୋଧ ନେଉଛି ବହୁ ପୁରୁଷର ପ୍ରତିନିଧି ରୂପେ ମୋଠାରେ ? ଚପଳା ମିସ୍‌ର ଦୌରାତ୍ମ୍ୟରୁ ମୁକ୍ତି ଲାଗି ମୁଁ ବ୍ୟାକୁଳ ହୋଇ ପଡ଼ିଲି ।

ଏହିଭଳି ଅବସ୍ଥାରେ କିଛି ଦିନ କଟିଗଲା । ତା'ପରେ ଏହି ଦୁଇଦିନ

ଡଳର କଥା—ଯୋଉଥିଲାଗି ଏଭଳି ଭୟଙ୍କର ପରିସ୍ଥିତିର ସୃଷ୍ଟି ହୋଇଛି । ତୁମେ ତ ଘରକୁ ଚାଲିଗଲ ପିଲାପିଲାଙ୍କୁ ଛାଡ଼ି ଆସିବା ଲାଗି । ଏଇ ରବିବାର ଦିନ କଥା—ହଠାତ୍ ଦିନ ଦୁଇଟା ବେଳୁ ଝଡ଼ ବର୍ଷା ଆରମ୍ଭ ହେଲା । ଘରେ ରହି ଅଳସ ସମୟକୁ ଉପନ୍ୟାସ ପଢ଼ି କଟାଉଥିଲି । ଖଟ ଉପରେ ତକିଆକୁ ଆଉଜି ବସି ପଢ଼ୁଛି, ମୋର ପିଲାମାନେ ଓ ବିନୋଦିନୀ ଡାକ୍ତର ସେନାପତିଙ୍କ ଘରକୁ ବୁଲି ଯାଇଥାନ୍ତି । ବର୍ଷା ଯୋଗୁଁ ଆଉ ଫେରି ପାରି ନାହାନ୍ତି । ହଠାତ୍ ଖୁବ୍ ଜୋରରେ ବର୍ଷା ଆରମ୍ଭ ହୋଇ ଆକାଶବ୍ୟାପୀ କଳାମେଘ ଘୋଟିଗଲା । ବର୍ଷା ସଙ୍ଗେ ପବନ ବି ଜୋରରେ ପିଟୁଛି । ବର୍ଷା ପାଗର ଗୋଟେ ଏମିତି ଗୁଣ ଅଛି ବନ୍ଧୁ, ଯାହାକି ମନ ଭିତରେ ଏକ ଅଯଥା କାରୁଣ୍ୟ ସୃଷ୍ଟି କରେ—ସେ ଏକପ୍ରକାର ଅତୀନ୍ଦ୍ରିୟ ଜଗତର ଉଦାସ ଭାବ । ଜୀବନର ସମସ୍ତ ତିକ୍ତ, ମଧୁର ଭ୍ରମ ପ୍ରମାଦ ଯାହା କିଛି ହଜିଯାଇଛି ମନ ଗହ୍ୱରର ଅନ୍ତରାଳରେ ସବୁ ଯେମିତି ମନ ଭିତରେ ଚେଇଁ ଉଠେ ବର୍ଷା ବାଯୁର ସ୍ପର୍ଶ ପାଇ ।

ବହିଟିକୁ ବନ୍ଦ କରି ତକିଆ ଉପରେ ଭରା ଦେଇ ମୁଁ ଝରକା ଦାହାରକୁ ଚାହିଁ ରହିଲି । ବହୁ ଦୂରରୁ ତାଳ ବଣରୁ ନାଚି ନାଚି ବର୍ଷା ଆସୁଛି—ତୁହାକୁ ତୁହା—ଅସରାକୁ ଅସରା । ଦେବଦାରୁ ଗଛ ଉପରୁ ଶୁଭୁଛି ତାର ନୃତ୍ୟ ନିପୁଣ ପଦଯୁଗଳର ମଞ୍ଜିର ଧ୍ୱନି । ଉଦାସ ମନ କ୍ରମେ ଉଦାର ହୋଇ ଉଠୁଛି । ମନେ ହେଉଛି ଏ ଦୁନିଆଁରେ ସତେ ବା ଶତ୍ରୁ କେହି ନାହାନ୍ତି—କେହି ପର ନୁହନ୍ତି । ସବୁ ଅନ୍ୟାୟକୁ ସବୁ ଅବିଚାରକୁ ସବୁ ପାପକୁ ମୁଁ ସତେ ବା କ୍ଷମା କରି ଦେଇପାରେ ଏହି ବର୍ଷଣମୁଖର ଅପରାହ୍ଣରେ । ବର୍ଷାର ସଙ୍ଗୀତ ମଧ ଦେଇ ମୁଁ ସତେ ବା ସମଗ୍ର ପୃଥିବୀର ଉଦାସୀନ ହୃଦୟର କରୁଣ ସଙ୍ଗୀତର ମୂର୍ଚ୍ଛନା କାନ ପାରି ଶୁଣି ପାରୁଛି । ସେ ଏକ ପ୍ରକାର ବିଧୁର ବେଦନା—ବିହ୍ୱଳ ଅନୁଭୂତି ।

ହଠାତ୍ ଭିଜା ପୋଷାକର ଫଡ଼ ଫଡ଼ ଶବ୍ଦରେ ମୋର ଧ୍ୟାନ ଭାଙ୍ଗିଗଲା । ବିନୋଦିନୀ ଆସିଲେ ବୋଧେ । କିନ୍ତୁ ଏ କିଏ ?

ଝଡ଼ପରି—ଦମକାଏ ବତାସ ଭଳି—ମୋ କୋଠରୀ ଭିତରକୁ ପଶି

ଆସିଲା ଚପଲା ଗ୍ରସ୍ତ । ମୁଁ ଚମକି ପଡ଼ିଲି । ଏପରି ବେଶରେ ଏ ପୁଣି କାହିଁକି ? ଚପଲା ଗ୍ରସ୍ତ ଅବସ୍ଥାରେ ସଂପୂର୍ଣ୍ଣ ସଚେତନ ହେଲା ପୂର୍ବରୁ ସେ ମୋ ହାତରେ ଖଣ୍ଡିଏ ଲଫାପା ଗୁଞ୍ଜି ଦେଇ ପୁଣି ଝଡ଼ଭଳି ମୋ ଘରୁ ବାହାରି ଯାଇ ବାହାର ଝଡ଼ ଭିତରେ ମିଶିଗଲା । ମୁଁ ଡାକ ଛାଡ଼ିଛି "ଚପଲା—ଚପଲା—ଶୁଣ ! ଆରେ ଶୁଣିଯାଅ ।" କିନ୍ତୁ ମେଘର ବିଜୁଳି ଭଳି ସେ ଦେଖା ଦେଲା ଆଉ ହଜିଯାଇ ଗଲା । ଲଫାପା ଚିଠିଟା ପଢ଼ିଲି । ଇସ୍, ମୋର ଲୋମ ଟାଙ୍କୁରି ଉଠୁଛି, ମୋର ମୁଣ୍ଡ ବୁଲାଇ ଦେଉଛି—ନିଅ, ଚିଠିଟା ମୁଁ ପକେଟରେ ରଖିଛି । ତୁମେ ନିଜେ ପଢ଼ ।

ଏତିକି କହି ଶୁଭକାନ୍ତ ଖୁବ୍ କ୍ଳାନ୍ତ ହୋଇପଡ଼ିଲା । ସିମେଣ୍ଟ ବେଞ୍ଚ ଉପରେ ଗୋଡ଼ ହାତ ଲମ୍ବାଇ ପ୍ରାୟ ଶୋଇବା ଭଳି ପଡ଼ି ରହିଲା, ଆଉ ଖୁବ୍ ଗଭୀର ନିଃଶ୍ୱାସ ଛାଡ଼ିବାକୁ ଲାଗିଲା । ମୁଁ ଚିଠିଟାକୁ ଥରଥର ହାତରେ ମେଲି କଲି ।

ମାନନୀୟେଷୁ,

ଜୀବନରେ କେଉଁଟା ଭୁଲ ଓ କେଉଁଟା ଠିକ୍ କିଛି ଜାଣେ ନାହିଁ । ବର୍ତ୍ତମାନ ବି ବୁଝି ପାରୁନାହିଁ । କାରଣ ମୋ ଜୀବନର ବିକାଶ ସ୍ୱାଭାବିକ ପରିସ୍ଥିତି ମଧ୍ୟରେ ହୋଇନାହିଁ । ମୋର ଜନ୍ମଟା ବି ଠିକ ବାଟରେ ହୋଇଛି ନା ଭୁଲ ବାଟରେ ହୋଇଛି ଏ ବିଷୟରେ ବି ମୋର ବାପା ଓ ମାଆଙ୍କ ଭିତରେ ମନୋମାଳିନ୍ୟ ଥିଲା ।......ପିଲାଦିନୁ ବାପାଙ୍କଦ୍ୱାରା ମୁଁ ଅବହେଳିତା, କାରଣ, ତାଙ୍କର ଦୃଢ଼ ଧାରଣା ଥିଲା ଯେ, ମୋର ଜନ୍ମ ଏକ କୁତ୍ସିତ ଅନ୍ୟାୟ ଓ ପାପ ଭିତରୁ । ମୋର ଅନ୍ୟାନ୍ୟ ଭାଇ ଭଉଣୀମାନେ ମଧ୍ୟ ମୂଳରୁ ମୋତେ ସେହି ଦୃଷ୍ଟିରୁ ଘୃଣା କରି ଆସୁଥିଲେ । ବାଲ୍ୟ ଓ କୈଶୋର ଜୀବନରେ କାହାଠାରୁ ସ୍ନେହ ସହାନୁଭୂତି ପାଇ ନାହିଁ । ବାପା ମାଆଙ୍କ ମଧ୍ୟରେ ପ୍ରତିଦିନ ବାଦ ବିବାଦ । ବାପା ଶେଷ ବୟସକୁ ପ୍ରାୟ ପାଗଳ ପରି ହୋଇ ଯାଇଥିଲେ । ନିଜର କିଛି ଦୋଷ ନ ଥାଇ ମୁଁ ସର୍ବଦା ଘରେ ଦୋଷୀଟିଏ ପ୍ରାୟ ଚଳୁଥିଲି ।

ସମସ୍ତେ ମତେ ଘୃଣା କରୁଥିଲେ, କିନ୍ତୁ ସେ ଘୃଣାଟା ବରଂ ମୋ

ପକ୍ଷରେ ଭଲ ଥିଲା । କାରଣ, ମୋର ଯୌବନର ପ୍ରଥମ ଉନ୍ମେଷ ଦିନଠାରୁ ଆଜି ପର୍ଯ୍ୟନ୍ତ ମୋର ଏହି ଘୃଣ୍ୟ ଜୀବନକୁ ଘୃଣା ନକରି ସ୍ନେହ ବା ସହାନୁଭୂତି ଦେଖାଇବାକୁ ଆସିଛନ୍ତି ଯେଉଁମାନେ ସେମାନେ ତାଙ୍କର ସ୍ନେହଦ୍ୱାରା ବରଂ ମୋତେ ବେଶୀ ଘୃଣିତ କରି ଯାଇଛନ୍ତି । ......ମୋର ସ୍କୁଲ କ୍ୟାରିଅରରେ...ଓଃ ! ମୋର ମାମୁଁ ପୁଅ ଭାଇ......ବନ୍ଧୁ ନିର୍ଲ୍ଲଜ ରାତି...ଇସ୍—ଔଷଧଦ୍ୱାରା ଗର୍ଭପାତ ହେଲାପରେ ମୁଁ ବର୍ଷେକାଳ ଅସୁସ୍ଥ ରହିଲି । ସେହି ସମୟରେ ଘରେ ମୁଁ ନିଜ୍ଜ ଅତ୍ୟାଚାର ସହ୍ୟ କରିଛି । ଆଉ ସହ୍ୟ କରି ନ ପାରି ଦିନେ ସ୍କୁଲକୁ ଯାଇ ସେଠାରୁ ଆଉ ମୁଁ ଘରକୁ ଫେରିଲି ନାହିଁ ।

ମୋର ଜଣେ ଦୂରସମ୍ପର୍କୀୟ ଭଉଣୀଇ ବଦାନ୍ୟତା ଦେଖାଇ ମୋତେ ଖୁବ୍ ସାହାଯ୍ୟ କଲେ । ତାଙ୍କର ଆର୍ଥିକ ସାହାଯ୍ୟକୁ ସମ୍ବଳ କରି ମୁଁ କୌଣସି ଗାର୍ଲ ସ୍କୁଲର ହଷ୍ଟେଲରେ ରହି ଅଳ୍ପଦିନ ପରେ ମାଟ୍ରିକ ପାସ୍ କଲି । ସେତେବେଳେ ମୁଁ କିଛିଦିନ ବେଶ ନିର୍ଦ୍ଦ୍ୱନ୍ଦ୍ୱରେ ରହିଲି ଏବଂ ଦୁଇ ବର୍ଷପରେ ଆଇ. ଏ. ପରୀକ୍ଷା ଦେଲି । ପରୀକ୍ଷା ଦେଇସାରି ମୁଁ ଆଉ ଆମ ନିଜ ଘରକୁ ଗଲିନାହିଁ । କାହିଁକି ବା ଯାଆନ୍ତି ? ସେମାନେ ବି ଆଉ ମୋତେ ଡାକିଲେ ନାହିଁ, ଯଦିଓ ସେମାନେ ଜାଣିଥିଲେ ମୁଁ ଏହିଭଳି ଭାବରେ ଅଛି । ଅଗତ୍ୟା ମୋତେ କିଛିଦିନ ସେହି ଦୂରସମ୍ପର୍କୀୟ ଭଉଣୀଇଙ୍କ ଘରେ ରହିବାକୁ ପଡ଼ିଲା । ତାଙ୍କ ପିଲାମାନଙ୍କୁ ପଢ଼ାଏ, ତାଙ୍କର ଗୋଷ୍ଠିଇବାସ ମଧ୍ୟ କରେ । ସେହି ଭଉଣୀଇଙ୍କ ପ୍ରତି ତାଙ୍କର ବଦାନ୍ୟତା ଯୋଗୁଁ ମୁଁ ଖୁବ୍ କୃତଜ୍ଞ ହୋଇ ପଡ଼ିଥିଲି । ମୋର ହୃଦୟ ସର୍ବଦା ବ୍ୟାକୁଳ ହୁଏ—ଆହା, କିପରି ଏ ଋଣ ଶୁଝିପାରିବି ?

କିନ୍ତୁ ମୋତେ ବେଶୀଦିନ ଏଭଳି ଋଣଦାୟଗ୍ରସ୍ତ ହୋଇ ରହିବାକୁ ପଡ଼ି ନ ଥିଲା । ହାୟ—ହାୟ ! ତାଙ୍କର ସମସ୍ତ ଅନୁରୋଧ ମୁଁ ବିନା ସଙ୍କୋଚରେ ରକ୍ଷା କରିଛି । ସେ ଦିନ ରାତି—ଛିଃ ମେଘ ବର୍ଷୁଛି । ମୁଁ ଯେତେବେଳେ ମୋର ସେହି ଦୂରସମ୍ପର୍କୀୟ ଭଉଣୀଇଙ୍କୁ କହିଲି ଯେ ତାଙ୍କର ବଦାନ୍ୟତାର ଫଳ ଫଳିଛି ମୋର ଗର୍ଭ ଭିତରେ...ଓଃ ସେ

କ ଗୃହ ! ସେ କ ବ୍ୟସ୍ତ ହୋଇ ପଡ଼ିଲେ !! ତାଙ୍କ ସ୍ତ୍ରୀଙ୍କର ନିର୍ମମ ପ୍ରହାର—ମୋ ପିଠିରେ ଏବେ ବି ତା'ର ଚିହ୍ନ ଅଛି । ସେମାନେ ମୋତେ ଔଷଧଦ୍ୱାରା ପୁଣି ଗର୍ଭ ନଷ୍ଟ କରିବାକୁ କହିଲେ । ଓଃ—ମୋର ମନେପଡ଼ୁଛି—କେତେ ଅନୁନୟ, କେତେ ବିନୟ ! ମୋତେ ସହଜରେ ମା'ଆ ହେବାକୁ ବ୍ୟବସ୍ଥା କରିଦେଇଥିଲେ ମୁଁ ସ୍ଥିର କରିଥିଲି ସେ ଘରେ ଆଜୀବନ ଦାସୀ ହୋଇ ରହିଥାଆନ୍ତି । କିନ୍ତୁ ନାଁ—ମୋତେ ସେମାନେ ଔଷଧ ଖୁଆଇଲେ ।

କିଛି ଦିନ ପରେ ସେଠାରୁ ଗ୍ରାଳଆସି ଗୋଟିଏ ସରକାରୀ ବୃତ୍ତି ପାଇ ଟ୍ରେନିଂ ପରେ ବଲାଙ୍ଗୀରରେ ସାତ ଆଠ ମାସ ରହିବା ପରେ ଏଠାକୁ ବଦଳି ହୋଇ ଆସିଲି । ଆର୍ଥିକ ଦୃଷ୍ଟିରୁ ଅବସ୍ଥା ମୋର ଅବଶ୍ୟ ଭଲ ହେଲା । ମାତ୍ର ମୁଁ କାହିଁକି କେଜାଣି ଖୁବ୍ ଲଘୁ, ଖୁବ୍ ହାଲୁକା ହୋଇ ପଡ଼ିଲି । ଜୀବନ ହେଲା ମୋ ପକ୍ଷରେ କେବଳ ଲଘୁ ଭାବରେ କାଳ-କ୍ଷେପଣ ।

ମୁଁ ଜାଣେ, ବର୍ତ୍ତମାନ ସମସ୍ତଙ୍କ ଆଖିରେ ମୁଁ କ'ଣ । ମୋର ଏହି ଲଘୁତାର ସୁଯୋଗ ସମସ୍ତେ ନିଅନ୍ତି । ଯେଉଁମାନେ ନିଅନ୍ତି ସେହିମାନେଇ କିନ୍ତୁ ମୋର ଚରିତ୍ର ଉପରେ ବଦ୍‌ନାମ କରନ୍ତି । କିନ୍ତୁ ସେଥିଲାଗି ମଧ୍ୟ ମୋର କିଛି ଦୁଃଖ ନାହିଁ । କାରଣ ମୁଁ ବର୍ତ୍ତମାନ ବୁଝିଛି, ମୋର ଜନ୍ମ ଯେଉଁ ପଙ୍କରୁ ସେହି ପଙ୍କରେଇ ମୋତେ ଆଜୀବନ ବଞ୍ଚିବାକୁ ପଡ଼ିବ ଏବଂ ସେହି ପଙ୍କରେଇ ମୋର ଜୀବନାବସାନ ହେବ ।

ଡାକ୍ତର ସେନାପତି—ଆପଣଙ୍କର ବନ୍ଧୁ—ମୁଁ ଆସିବା ଦିନୁଁ ସମସ୍ତଙ୍କ ଅପେକ୍ଷା ସେ ଏ ବ୍ୟାପାରରେ ମୋ ସଙ୍ଗେ ବହୁତ ବାଟ ଅଗ୍ରସର ହେଲେ । ମୂଳରୁ ସେ ମୋ ପ୍ରତି ଖୁବ୍ ସହାନୁଭୂତିଶୀଳ ଥିଲେ । ମୁଁ ତାଙ୍କୁ ମୂଳରୁ ବିଶ୍ୱାସ କରିଥିଲି । ସେ ତ ଖୁବ୍ କମ୍ କଥା କହନ୍ତି—ତାଙ୍କର ଗାମ୍ଭୀର୍ଯ୍ୟ ଉପରେ ମୋର ଆସ୍ଥା ଥିଲା । ମୁହଁ ଫିଟାଇ ପରିଷ୍କାର ଭାବେ ଯଦିଓ ସେ କିଛି ନ ଥିଲେ ତଥାପି ସେ ମୋତେ ବିବାହ କରିବେ ବୋଲି ମୁଁ ଆଶା ପୋଷଣ କରିଥିଲି । ସେ କଥା ସେ ଭଲରୂପେ ଜାଣିଥିଲେ । ଜାଣି ନ

ଥିଲେ ସେ ମୋ ସଙ୍ଗେ ଏତେଦୂର ଅଗ୍ରସର ହୋଇଥାନ୍ତେ କପର ?

ଫଳରେ ତୃତୀୟ ବାର ମୁଁ...। ଦୁଇମାସ ପରେ ଯେତେବେଳେ ପରେଷ୍ଟାର ଜାଣିପାରିଲ ସେତେବେଳେ ତାଙ୍କୁ ଏ କଥା କହିଲ । ସେ ପ୍ରଥମେ ଖୁବ୍ ବରକ୍ତ ହୋଇ ଉଠିଲେ । ଧମକ ଦେଲେ—"ତୁମେ ଏ କଥା ଗୁଣଅଡ଼େ ତେଙ୍ଗୁରା ପିଟିଲେ ବ କେହି ବଶ୍ୱାସ କରବେ ନାହିଁ । ହଜାରେ ଲୋକଙ୍କ ସଙ୍ଗେ ତୁମେ ମିଶୁଚ । ମୋତେଇ ନର୍ଦ୍ଦିଷ୍ଟଭାବେ ଚିହ୍ନାଇ ଦେବାକୁ ତୁମେ ସାହସ କରୁଚ କପର ? ହଜାରେ ଘାଟରେ ତୁମେ ପାଣି ପିଉଚ । ସବୁର ଘାଟରୁ ପଙ୍କ ଆଣି ତୁମେ ମୋ ଉପରେ ଲଦି ଦେବାକୁ ବସିଚ ।" ଡାକ୍ତର ସେନାପତ ଖୁବ୍ ଉତ୍ତକ୍ଷିପ୍ତ ହୋଇ ଉଠିଲେ ।

ମୁଁ କହିଲ, "ଆପଣ ଅବବାହିତ । ଆପଣଙ୍କର ଦୁର୍ନାମ ହେବାର ଆଶଙ୍କା ନାହିଁ । ପିଲ ଜନ୍ମ ହେବା ପୂର୍ବରୁ ଆମେ ଅନ୍ତତଃ କୋର୍ଟରେ କଂଟ୍ରାକ୍ଟ ମ୍ୟାରେଜ କରଦେଇ ପାରବା ।"

ଡାକ୍ତର ସେନାପତ ଆହୁର ରାଗି ଉଠିଲେ—"ଏ ଦୁର୍ବୁଦ୍ଧି ତୁମକୁ ଦେଲ କଏ ? ଏଭଳି ନର୍ଲଜ୍ଜ ପ୍ରସ୍ତାବ ଲଗି ତୁମେ ସାହସ କରୁଚ କପର ?" ମୋ ଉପରେ ସେ ଯେ ଏହି ପାପର ସଂଘ୍ରର ଲଗି ଦାୟୀ, ଏକଥା ସେ ସ୍ୱୀକାରଇ କଲେନାହିଁ । ମୁଁ ନରୁପାୟ ଭାବେ ତାଙ୍କ ପାଦ ଧର ଚତ୍କାର କଲ, "ଡାକ୍ତର, ମାତୃତ୍ୱକୁ ବୈଧ ବୋଲ ସ୍ୱୀକାର କର ତୁମ ପିତୃତ୍ୱର ସମ୍ମାନ ରଖ; ଜୀବନ ବ୍ୟାପୀ ମୁଁ ତୁମର ଏକାନ୍ତ ହୋଇ ସେବା କରବ ।" ସେ ମୋଟେ ରାଜ ହେଲେ ନାହିଁ । ବହୁବାର ଅନୁରୋଧ କରଛୁ । ଶେଷରେ ପଥରବଳ ସେ ମୋତେ ଗର୍ଭପାତ କରବାକୁ ଔଷଧ ଦେଇଛନ୍ତ । ଏତକ କର ସେ ଏ ଦାୟିତ୍ୱରୁ ମୁକ୍ତ ହେବାକୁ ଗୁହାନ୍ତ ।

କନ୍ତୁ ଆପଣଇ କହନ୍ତୁ ସାର୍—ଥର ଥର କର କେତେଥର ମୁଁ ପ୍ରକୃତର ଏହି ମୂଲ୍ୟବାନ ପ୍ରତଶ୍ରୁତ ସବୁ ଭଙ୍ଗ କରପାରବ ? ରାକ୍ଷସୀ ଭଳ ମୁଁ ଦୁଇଥର ଏହିଭଳ ନୃଶଂସ କାର୍ଯ୍ୟ କରସାରଛୁ । ମୁଁ ଆଉ ପାରବ

ନାହିଁ···ନାଃ ! ସାର୍ ମୋତେ କ୍ଷମା କରନ୍ତୁ । ଡାକ୍ତର ମୋତେ ଔଷଧ ଦେଇ ନାହାନ୍ତି । ଦୁଃଖ, କ୍ଷୋଭ, ଲଜ୍ଜା, ଅପମାନରେ ମୋର ମୁଣ୍ଡ ଆଉ ଠିକ ନାହିଁ । ଯଦି ମୋତେ ଡାକ୍ତର କଥା ମାନି ଔଷଧ ବ୍ୟବହାର କରିବାକୁ ପଡ଼େ—ଏକଥା ବି ସାର ନିଶ୍ଚିତ ଯେ, ଯେହେତୁ ଡାକ୍ତର ଏହି ଗର୍ଭସ୍ଥ ସନ୍ତାନର ପିତୃତ୍ୱ ସ୍ୱୀକାର କରିବାକୁ ନାରାଜ, ସେ ସନ୍ତାନ ଅଜି ଧରାପୃଷ୍ଠରେ ବଞ୍ଚିରହୁ ଏ କଥା ମୁଁ ଚାହେଁନାହିଁ । ପିତାର ସ୍ୱୀକୃତ ନ ଥାଇ ଏ ସଂସାରରେ ଜନ୍ମହୋଇ ବଞ୍ଚିବାର ଅଭିଶାପ ମୁଁ ନିଜେ ଭୋଗିଛି । ଏଭଳି ଭୋଗିବାକୁ ମୁଁ ଆଉ ମୋର ରକ୍ତର ସନ୍ତାନଟିକୁ ପୃଥିବୀ ପୃଷ୍ଠକୁ ନିମନ୍ତ୍ରଣ କରି ପାରିବି ନାହିଁ । ସେ ବରଂ ଅକାଳରେ ସେଇ ଅନ୍ଧକାର ଭ୍ରୂଣ ମଧ୍ୟରେ ପଚି ସଢ଼ି ଯାଉ । ଉଃ—ମୁଁ ଆଉ ଭାବି ପାରୁନାହିଁ ସାର୍ !! କହନ୍ତୁ ସାର୍, ମୁଁ କଣ ଏ ଘଟଣା ସମ୍ଭବ ହେବା ପରେ ଆଉ ସୁସ୍ଥ ମସ୍ତିଷ୍କରେ ରହି ପାରିବି ବୋଲି ଆପଣ ଭାବୁଛନ୍ତି ? ନା ସାର୍ ନା ! ମୁଁ ଜାଣେ ସାର୍, ଆପଣ ମୋତେ କୌଣସି ପ୍ରକାର ସାହାଯ୍ୟ କରି ପାରିବେ ନାହିଁ । ମୋ ପକ୍ଷରେ କଣ କର୍ତ୍ତବ୍ୟ ସେ କଥା ମୁଁ ସ୍ଥିର କରିସାରିଛି । ମୁଁ ଜାଣେ ମୁଁ କଣ କରିବି ! ଆପଣଙ୍କ ଆଗେ ସବୁକଥା ଖୋଲି କହିବା ଲାଗି ମୁଁ କାହିଁକି ଆଜି ହଠାତ୍ ବ୍ୟାକୁଳ ହୋଇ ଉଠିଲି ? କହନ୍ତୁ ନା ସାର୍— ଆଉ କାହା ପାଖେ ମୋର ଏହି ଦୁଃଖ ମୁଁ ଖୋଲି କହି ପାରନ୍ତି ? ଆପଣଙ୍କ ସମ୍ମୁଖରେ ଖୋଲି କହିବାକୁ ଭାବିଥିଲି । କିନ୍ତୁ ନା ସାର୍—ସେ ସାହସ ଓ ମନର ସେ ବଳ ଆଉ ମୋର ନାହିଁ । କଣ ମୁଁ ଅନୁଭବ କରୁଛି ସେ କଥା ବି ମୁଁ ଲେଖି ପାରୁନାହିଁ ଭଲକରି । ମୋର ମୁଣ୍ଡ ଠିକ ନାହିଁ କିନ୍ତୁ ମୁଁ କଣ କରିବି ? କିଏ ମୋତେ କହିବ ଏହା ପରେ ମୁଁ କଅଣ କରିବି ବୋଲି ?

ନାଃ, ଅଉ କିଛି ଲେଖି ପାରୁନାହିଁ କିନ୍ତୁ ଶେଷରେ ଏତିକି ଅନୁରୋଧ ମୋର ଆପଣଙ୍କ ପାଖରେ ଏହି ଚିଠି ଯେପରି ଡାକ୍ତର ସେନାପତିଙ୍କ ବିରୁଦ୍ଧରେ ଯାଇ ତାଙ୍କର କିଛି କ୍ଷତି ନ କରେ । ମୁଁ ତାଙ୍କୁ ଭଲପାଏ ସାର୍—ସତ କହୁଛି ମୁଁ ତାଙ୍କୁ ଭଲପାଏ । ଏ ଘଟଣାରେ ତାଙ୍କର ବା

ଦୋଷ କଣ ? ସେ ମୋଠାରୁ ବୟସରେ କମ୍—ଖୁବ୍ ସୁକୁମାର ସେ । ମୋର ସ୍ୱାର୍ଥ ଦୃଷ୍ଟିରୁ ମୁଁ ତାଙ୍କୁ ମୋଆଡ଼କୁ ଆକୃଷ୍ଟ କରିଥିଲି । ପିଲାଳିଆ ସେ—ଖେଳୁ ଖେଳୁ ଏତେ ଦୂରକୁ କଥା ଯାଇପାରେ ବୋଲି ସେ କ'ଣ ଭାବିଥିଲେ ? ଏ ବିଷୟରେ ମୋର ବେଶୀ ଭାବିବା ଉଚିତ ଥିଲା । ସେ କାହିଁକି ମୋତେ ବିବାହ କରି ତାଙ୍କର ଭବିଷ୍ୟତକୁ ଧ୍ୱଂସ କରିଥାନ୍ତେ ?

ଏହି ସଂକ୍ରାନ୍ତରେ ତାଙ୍କର ସଂପର୍କେ ମୁଁ କାହା ଆଗେ ଖୋଲି କରି କହି ନ ଥାନ୍ତି । ତାଙ୍କୁ ଦାୟୀ କରି ଦୋଷୀରୂପେ ସାବ୍ୟସ୍ତ କରିବ ବୋଲି ମଧ୍ୟ ଏ ଚିଠି ମୁଁ ଆପଣଙ୍କ ପାଖକୁ ଲେଖୁନାହିଁ । ତାଙ୍କୁ ମୁଁ ଭଲପାଇଛି ସାର୍—ପ୍ରକୃତରେ ଭଲପାଇଛି—ଏହି କଥା କେବଳ ଜଣାଇବା ଲାଗି ମୁଁ ଆପଣଙ୍କ ପାଖକୁ ଏ ଚିଠି ଲେଖୁଛି । ମୋର ଆଉ କିଛି କହିବାର ନାହିଁ । ବିଦାୟ—

ଆପଣଙ୍କର
ଚପଳା ଗ୍ୱସୁ

× × ×

ଚିଠିଟି ପଢ଼ିସାରି ମୁଁ କେତେ ମିନଟ ନିସ୍ତବ୍ଧ ହୋଇ ସିମେଣ୍ଟ ଚେୟାର ଉପରେ ବସିପଡ଼ିଲି । ଏହି ଚିଠିଟି ଶୁଭକାନ୍ତ ପାଖକୁ ଲେଖି-ସାରି ଚପଳା ଗ୍ୱସୁ କଣ କଲା ତା'ତ ମୁଁ ଜାଣିଛି । ମାତ୍ର ତଥାପି ମୁଁ ସମଗ୍ର ଘଟଣାର କ୍ରମ ଜାଣିବାକୁ ପଚାରିଲି—"ଶୁଭକାନ୍ତ ! ଚପଳାର ଏଇ ଚିଠିଟି ପଢ଼ିସାରି ତୁମେ କଣ କଲ ତା ପରେ ? ତା'ପରେ କଣ କିପରି ଘଟିଲା ?"

ଶୁଭକାନ୍ତ ଗୋଟିଏ ଲମ୍ବା ନିଃଶ୍ୱାସ ଛାଡ଼ି ପୁଣି ଆରମ୍ଭ କଲା—

"ଚିଠିଟି ପଢ଼ିସାରି ମୁଁ କିଛି ସମୟ ଖଟ ଉପରେ ନିସ୍ତବ୍ଧ ହୋଇ ପଡ଼ି ରହିଲି । କଣ କରିବା ମୋର ଉଚିତ୍ ଠିକ୍ କରି ପାରିଲି ନାହିଁ । ବାହାରେ ସେହିଭଳି ବର୍ଷା ଚାଲିଛି । ଅଳିଆ ଛାଡ଼ି ଯାଉଛି—ପୁଣି ଆସୁଛି ତୁହାକୁ ତୁହା । ହଠାତ୍ ମୋ ସ୍ତ୍ରୀ ବିନୋଦିନୀ ପହଞ୍ଚିଲେ । ମୁଁ ପଚାରିଲି

—"ବିନ ! ଏ ବର୍ଷାରେ ଓଦା ହୋଇ ଆସିଲ—ପିଲାମାନେ କାହାନ୍ତି ?"

ସେ ଶାଢ଼ୀ ବଦଳାଉ ବଦଳାଉ କହିଲେ—"ସେମାନେ ହର-ମୋହନ ବାବୁଙ୍କ ଘରେ ଅଛନ୍ତି । ବର୍ଷା ଛାଡ଼ିଲେ ଆସିବେ । ଇସ୍—ଘୋର ବର୍ଷା ! ତୁମକୁ ଛାଡ଼ି ଏକା ରହି ପାରିଲି ନାହିଁ । କେମିତି ଗୋଟିଏ ଖାଲି ଉଦାସ ବୋଧ ହେଲା । ପିଲାଙ୍କୁ ଛାଡ଼ି ପଳାଇ ଆସିଲି ।"

ଏତିକି କହି ବିନୋଦିନୀ ମୋର ଖଟ ଉପରକୁ ଉଠି ଆସିଲେ । ଅବଶ୍ୟ କିଛି ସମୟ ଲାଗି ବିନୋଦିନୀଙ୍କୁ ପାଇ ମୁଁ ବାହାରର ବର୍ଷାକୁ ଭୁଲିଗଲି । କାରଣ କିଛି ସମୟ ଲାଗି ହେଉ ପଛେ ବିନୋଦିନୀ ହିଁ ମୋତେ ସମଗ୍ର ବିଶ୍ୱ ପ୍ରକୃତିକୁ ମୋ ମନରୁ ହଟାଇ ଦେବାର ବିଜୟ-ଜନିତ ତୃପ୍ତିରେ କ୍ଳାନ୍ତ ହୋଇ ଶୋଇ ରହିଲେ ନୀରବରେ । ବିଜୟର ଉଲ୍ଲାସ ତାଙ୍କ ମନରୁ କଟି ନାହିଁ, ମୁଁ କିନ୍ତୁ ଧିରେ ଧିରେ ବିନୋଦିନୀର ସୀମା ଭିତରୁ ପୁଣି ଖସି ଯାଇ ବିଶ୍ୱ ପ୍ରକୃତିରେ ଘୂରି ବୁଲିଲିଣି—ପୁଣି ଶୁଣିଲିଣି ବୃଷ୍ଟିମୁଖର ଆକାଶର କରୁଣ ଅଶ୍ରୁପାତର ନୀରବ ଧ୍ୱନି । ଏକଥା ବିନୋଦିନୀଙ୍କୁ ଜଣା ନାହିଁ । (ଏହି ସାଧାରଣ ଭୁଲଟି ବୋଧେ ସବୁ ନାରୀ କରନ୍ତି । ) କ୍ରମେ ମୋର ମନ ବିନୋଦିନୀଙ୍କର ଆଗମନପୂର୍ବ-ପ୍ରଭାବର ସୂତ୍ରକୁ ଧରି ପୁଣି ଉଦାସବିଧୁର ହୋଇ ଉଠିଲା । ଚପଳାର ଶଠି ମନରେ ଯେଉଁ ପ୍ରଭାବ ପକାଇଥିଲା ତାହା ଯେପରି ପୁଣି ଥରେ ମନକୁ ଦୁଇ ଗୁଣରେ ପୀଡ଼ିତ କଲା ।

ବିନୋଦିନୀ ଅଖିବୁଜି ନିଃଶ୍ୱାସ ଛାଡ଼ୁଛନ୍ତି—ଶାନ୍ତିର ନିଃଶ୍ୱାସ—ତୃପ୍ତିର ନିଃଶ୍ୱାସ—ବିଜୟର ନିଃଶ୍ୱାସ—ଆଉ ଶେଷରେ ଚିନ୍ତାହୀନତାର ନିଃଶ୍ୱାସ । ଆକାଶରେ ଘଡ଼ଘଡ଼—ବିଜୁଳି—ସାଇଁ ସାଇଁ ବର୍ଷା—ତୁହାକୁ ତୁହା । କିଏ ସେ କାନ୍ଦୁଛି ? ଏହି ବର୍ଷାର ବତାସ କାହାର ପ୍ରତାରିତ ଦୁଃଖର ଚଞ୍ଚଳ ହୃଦ୍‌ପିଣ୍ଡ ଅଭିଶାପ ବହନ କରି ନିଃଶ୍ୱସିତ ହୋଇ ଉଠୁଛି ? ଏହି ଘନ ନିବିଡ଼ ବର୍ଷାଧାରା କାହାର ଘନ ନିବିଡ଼ ନୟନ ପକ୍ଷ୍ମର ସେତୁ ବନ୍ଧନକୁ ଭଗ୍ନ କରି ବହି ବହି ଆସୁଛି ? ଏହି ଘଡ଼ଘଡ଼ କାହା ହୃଦୟର ଆକୁଳ ଆଲୋଡ଼ନ ଭିତରେ ଶବ୍ଦାୟିତ ହୋଇ ପଡ଼ୁଛି ? ଏହି ବିଜୁଳି କେଉଁ ଚିନ୍ତାନ୍ୱିତାର ଚିତା ବହ୍ନିର ଲେଲିହାନ ଜିହ୍ୱା ବିସ୍ତାର କରି ତାର

ଧ୍ୱଂସର ପଥକୁ ଆଲୋକିତ କରି ଦେଉଛି ? କିଏ ସେ ? କିଏ ସିଏ ? କିଏ ସିଏ କାନ୍ଦୁଛି ? ପ୍ରତିକାରହୀନ ତାର ଦୁଃଖ, ଜାଣେ । କିନ୍ତୁ କିଏ ସେ କାନ୍ଦୁଛି ? ହାୟ—ହାୟ—କାନ୍ଦିବ ବା ଆଉ ସେ କାନ୍ଦୁଛି ??

ହଠାତ୍ ବନୋଦନୀ ମୋ ଉପରେ ଭର ଦେଇ ଉଠି ବସିଲେ । ମୋର ଧ୍ୟାନ ଭାଙ୍ଗିଗଲା । ସଂବିତ୍ ଫେରି ଆସିଲା । ବନୋଦନୀଙ୍କ କେଶବାସ ଆଲୁଳାୟିତ—ବର୍ଷା ଦେଶର ଶାଢ଼ୀ ଅସଂବୃତ । ଆଳସ୍ୟ ମଧ୍ୟରେ ନିଜକୁ ସଜାଡ଼ୁ ସଜାଡ଼ୁ ସେ କହିଲେ—"ହଇଏ—ଚପଳା କଥା ଶୁଣିଚ ? ଆଜି ହରମୋହନ ବାବୁଙ୍କ ସ୍ତ୍ରୀ କହୁଥିଲେ ଯେ ତାର କୁଆଡ଼େ ଛଅମାସ ହେବ ! ଠିକ୍ ହୋଇଛି । ସେ ଯାହା ହେଉଥିଲା ନା—ଠିକ୍ ହୋଇଛି—ଏଥର ଠିକ୍ ଜବତ୍ ହୋଇଛିଦ ଯେ ।"

ହଠାତ୍ ଖୁବ୍ ଜୋର୍‌ରେ ବିଜୁଳି ମାରି ଉଠିଲା, ଆଉ ଲଗ୍ ଲଗ୍ ବିଜୁଳି ସଙ୍ଗେ ଘଡ଼ଘଡ଼ି ମାରି ଚାଲିଲା । ଯେପରି ଉଦ୍ଦାମଗତି ଚପଳା ରାସ୍ତାର ଦୁର୍ଭାଗ୍ୟର ମୁକ୍ତ ଘୋଷଣା—ରଣ ଦୁନ୍ଦୁଭି !

ବନୋଦନୀ ପୁଣି କହିଲେ—"ଡାଆଣୀକି ଠିକ୍ ହୋଇଛି । ମୁଁ ତ ମନେ ମନେ ସେଇଆ ହିଁ ଖୋଜୁଥିଲି ।"

ମୋର ମୁଣ୍ଡକୁ ପିତ୍ତ ଚଢ଼ିଗଲା । ବନୋଦନୀଙ୍କ ଗଳା ଚପି ଧରି ଘାଟି କରି କହିଲି—'ଓଃ—ରାକ୍ଷସୀ ! ବନୋଦନୀ !'

ଆକାଶରେ ଘନ ଘନ ବିଜୁଳି ଆଉ ଘଡ଼ଘଡ଼ି—ଫାଁ ଫାଁ ବତାସ । ଘରର କାଚ ଝରକାଗୁଡ଼ାକ ଘଡ଼ଘଡ଼ି ଶବ୍ଦରେ ଝଣ୍ ଝଣ୍ କରି ଉଠିଲେ । ଦମ୍କା ବତାସରେ ସମୁଦ୍ରତୀରର ଗର୍ଜନ ଭାସି ଆସୁଛି । ବନୋଦନୀ ଚିତ୍କାର କରି ଉଠିଲେ, "ଓଃ, ମରିଗଲି—ମରିଗଲି—ଓଃ, ଓଃ—ଗୁଡ଼ ଦଅ—ମତେ ଗୁଡ଼ଦିଅ ।"

କ୍ରୋଧରେ ଫାଟିପଡ଼ି ବନୋଦନୀଙ୍କୁ ଖଟ ଉପରକୁ ଢୁଙ୍ଗାଡ଼ି ଠେଲି ଦେଲି । ସେ ଖଟ ଉପରେ ପଡ଼ିଗଲେ ।

"ଇସ୍ କେଡ଼େ କୁତ୍ସିତ ତୁମେ—ତୁମେଇ ନିଜେ ବେଶ୍ୟା ।

କୁଳବଧୂର ପୋଷାକ ଭିତରେ ତୁମର ଲୁଚି ରହିଛି କୁଳଟାର ଜଘନ୍ୟ ମନୋବୃତ୍ତି । ନାରୀ ହୋଇ ତୁମେ ନାରୀତ୍ୱର ଅବମାନନା କାମନା କରୁଛ ? ମାଆ ହୋଇ ତୁମେ ମାତୃତ୍ୱର ଅସମ୍ମାନ ଦେଖିବାକୁ ତପିଛ ? ସମାଜରେ ଚପଳା ଗ୍ରସ୍ତର ଜୀବନକୁ କଳଙ୍କିତ ହେବାର ଦେଖି ତୁମେ ତୁମ ଚରିତ୍ରର ଉଜ୍ଜ୍ୱଳତା ରକ୍ଷା କରିପାରିବ ? ଏଭଳି କୁତ୍ସିତ ଚିନ୍ତା ତୁମ ମୁଣ୍ଡ ଭିତରକୁ ପଶିଲା କିପରି ? ଛିଃ-ଛି-ଛି— ।"

ବିନୋଦିନୀଙ୍କୁ ଗାଳି ଦେଇ ମୁଁ ଘର ଭିତରୁ ପଦାକୁ ବାହାରି ଆସିଲି । ଘୃଣାରେ ମୋର ଦେହ ଥରି ଉଠୁଛି—ମୁଣ୍ଡ ଗରମ ହୋଇ ଉଠୁଛି । ବିନୋଦିନୀଙ୍କୁ ମୁଁ ଖୁବ୍ ଭଲ ପାଉଥିଲି—ଖୁବ୍ ସମ୍ମାନ କରୁଥିଲି । ମାତ୍ର ଆଜି ଯେପରି ଚପଳା ଗ୍ରସ୍ତର ପ୍ରସ୍ତାବ ହିଁ ମୋତେ ତାଙ୍କୁ ଘୃଣା କରିବାକୁ ସଙ୍କେତ ଦେଲା । ସତେ ଅବା ଏକ ଅସତର୍କ ମୁହୂର୍ତ୍ତରେ ବିନୋଦିନୀଙ୍କ ଭଦ୍ର ଆଚ୍ଛାଦନ ଭିତରୁ ହଠାତ୍ ତାଙ୍କର କ୍ଷୁଦ୍ରତା ମୋର ଆଖିରେ ପଡ଼ିଗଲା ।

ଆକାଶରୁ ସେଇଭଳି ବର୍ଷା ଗଳୁଛି, ବିଜୁଳି ମାରୁଛି, ଆଉ ଘଡ଼ଘଡ଼ି ଶବ୍ଦରେ ଘର ଦିଗ ଥରି ଉଠୁଛି । ବର୍ଷା ସଙ୍ଗେ ତୁହାକୁ ତୁହା ତୋଫାନ । ସନ୍ଧ୍ୟା ହେବାକୁ ଅଳ୍ପ ସମୟ ବାକି ଅଛି । ଅନ୍ଧାର ହୋଇ ଆସିଲାଣି । ଗଛ-ଗୁଡ଼ାକ ତୋଫାନ ସଙ୍ଗେ ପ୍ରାଣପଣେ ସଂଗ୍ରାମ ଚଳାଇଛନ୍ତି । ଏ ଯେପରି ପ୍ରଳୟର ସୂଚନା !! ଚପଳା ଗ୍ରସ୍ତ ପ୍ରତି ମନ ସହାନୁଭୂତିରେ ଭରି ଉଠିଲା । ହାୟ—ହାୟ—ଚପଳା ଗ୍ରସ୍ତ ! କିଏ ଭଲ ତୁମକୁ ଶ୍ରଦ୍ଧା କରେ ? ଏ ପୃଥିବୀରେ କିଏ ଭଲ ତୁମ ପ୍ରତି ସହାନୁଭୂତିଶୀଳ ?

ସେହି ବର୍ଷାରେ ଭିଜିଭିଜି ବାହାରି ପଡ଼ିଲି । ଆକାଶର ବର୍ଷା ମୋର ଦେହକୁ ଓଦା କରୁଛି—ଆଉ ତା' ସଙ୍ଗେ ସଙ୍ଗେ ମନଟା ବି ଆର୍ଦ୍ର ହୋଇ ଯାଉଛି । ଚପଳା ପ୍ରତି ମନଟା ଅତି ମାତ୍ରାରେ କରୁଣ ହୋଇ ଉଠିଲା । ଇଚ୍ଛା ହେଲା ଚପଳା ଘରକୁ ସେଇ ମୁହୂର୍ତ୍ତରେ ଯାଇ ତାକୁ ଆଲିଙ୍ଗନ କରି କହିବି—"ଚପଳା ! ମୁଁ ତୁମକୁ ଭୁଲ ବୁଝିଥିଲି । ମୁଁ ତୁମକୁ ଶ୍ରଦ୍ଧା କରେ । ଏ ପୃଥିବୀରେ ମୁଁ ତୁମକୁ ବେଶୀ ଶ୍ରଦ୍ଧା କରେ ।"

ଲମ୍ବ ଲମ୍ବ ପାଦ ପକାଇ ମୁଁ ତାର ଘର ଆଡ଼େ ଗ୍ଲଲ । ଓଦା ହେଉଛ୍ଥି ବୋଲ ଖିଆଲ ନାହିଁ । ଏକ ପ୍ରକାର ଭାବପ୍ରବଣ ହୋଇ ଦୌଡ଼ୁଛୁ । ସାଇଁ ସାଇଁ ପବନ ମୋର ଦୁଇ ପଟରେ ବନ୍ଧ ଯାଉଛ-ଗ୍ଲଇଁ ଗ୍ଲଇଁ ମାରୁଛ ବଜୁଳ— ଛୁ ଛୁ ହୋଇ ଗର୍ଜୁଛ ଆକାଶର ମେଘ । ସମଗ୍ର ପ୍ରକୃତ ଯେପର ଆଜ ଚପଲା ଗ୍ରସ୍ତକୁ ଧ୍ୱଂସ କରବାକୁ ବ୍ୟସ୍ତ, ଆଉ ମୁଁ ବ୍ୟସ୍ତ ସମସ୍ତ ବପର୍ଯ୍ୟସ୍ତ ହାତରୁ, ସମସ୍ତ ଦୁର୍ଦ୍ଦଶା ଓ ଲାଞ୍ଛନା ଭତରୁ, ସମଗ୍ର ପ୍ରକୃତ ସଙ୍ଗେ ସଂଗ୍ରାମ କର ଆଜ ଚପଲା ଗ୍ରସ୍ତକୁ ନଶ୍ଚସ୍ତ ଉଦ୍ଧାର କରବ ।

× × ×

କନ୍ତୁ ଏ କଣ ? ଚପଲା ଘର ଦୁଆରେ ଏତେ ଲୋକ—ଏତେ କୋଳାହଳ କାହିଁକ ? ଏଇ ଯେ ଡାକ୍ତର ସେନାପତ !! ସେ ହଠାତ୍ ମୋର ହାତ ଧର ସେଠୁ ଟିଂକ ନେଇ ତାଙ୍କ ବାରଣ୍ଡାକୁ ଟାଣି ନେଲେ । ଚପଲାର ଘର ସିଧା ଠିକ୍ ତାଙ୍କ ଘର । ମୁଁ ଉଦ୍‌ଗ୍ରୀବ ହୋଇ ପଗ୍ଲରଲ—"ଘଟଣା କଣ ଡାକ୍ତର ?"

ଡାକ୍ତର ସେନାପତ ମୋ କାନରେ ଚୁପ୍ ଚୁପ୍ କହଲେ—"ଆତ୍ମହତ୍ୟା —ଚପଲା ଗ୍ରସ୍ତ ଆତ୍ମହତ୍ୟା କରଛ ।"

ଆତ୍ମହତ୍ୟା ?

ଆତ୍ମହତ୍ୟା ??

ଆତ୍ମହତ୍ୟା ???

ଆକାଶର ବଜୁଳ ମୋ ଛାତରେ ଗ୍ଲଉଁକନା ମାରଦେଲ । ଡାକ୍ତରର ଟାଇଟାକୁ ଧର ଖୁବ୍ ଉତ୍‌କ୍ଷିପ୍ତ ଭାବେ ପାଗଳ ଭଳ ଚତ୍କାର କଲ—"ନା— ନା ଡାକ୍ତର—ଅସମ୍ଭବ—ଚପଲା ଗ୍ରସ୍ତ ଆତ୍ମହତ୍ୟା କରନାହିଁ—ତୁମେ— ତୁମେଇ ତାକୁ ମାରଛ ତୁମେ—ତୁମେ—ତୁମେ ଡାକ୍ତର—ଇଉ ବ୍ରୁଟ୍— ଇଉ ସାଉଣ୍ଡ୍ରେଲ !"

ଡାକ୍ତରଙ୍କ ବେକକୁ ଖୁବ୍ ଜୋର୍‌ରେ ଚପି ଧରଲ । ସେ ମଧ୍ୟ ମୋର

ବେକକୁ ଚପିଧରି ଚତ୍କାର କଲେ—"ପୋଲିସ—ପୋଲିସ ।"

ହଠାତ୍ ଘଡ଼ଘଡ଼ ମାଡ଼ବାର ପ୍ରଚଣ୍ଡ ଶବ୍ଦରେ ମୁଁ ଚମକି ପଡ଼ି ତଳେ ପଡ଼ିଗଲି । ଚପଳାର ବାରଣ୍ଡାରେ ଜମା ହୋଇଥିବା ଲୋକମାନେ ମୋ ଆଡ଼କୁ ଦଉଡ଼ି ଆସିଲେ । ମୋର ଚେତା ବୁଡ଼ିଗଲା ।

× × ×

ବାସ୍—ସେଦିନ ମୋର ଏହି ଆବେଗପ୍ଲାବିତ ନିଷ୍ପତ୍ତି ଯୋଗୁ ହିଁ ସମସ୍ତେ ଚପଳା ରାୟଙ୍କର ମୃତ୍ୟୁ ଲାଗି ମୋତେଇ ମନେ ମନେ ସନ୍ଦେହ କରି ଦାୟୀ କରନ୍ତି । ଚପଳା ନିଶ୍ଚୟ ଆତ୍ମହତ୍ୟା କରିଛି—ମାତ୍ର ତା'ର ଆତ୍ମହତ୍ୟା ଲାଗି କିଏ ଦାୟୀ କି ନୁହେଁ ସେ କଥା ସେ କେଉଁଠି ଲିଖିତ ଆକାରରେ ରଖିଯାଇ ନାହିଁ । ତା'ର ଶବବ୍ୟବଚ୍ଛେଦ ହେଲା ପରେ ଡାକ୍ତରମାନେ ରିପୋର୍ଟ ଦେଲେ ଯେ, ତା' ପେଟରେ ତିନିମାସର ଭ୍ରୁଣ ଥିଲା । ପୋଲିସ୍ ଏ ଘଟଣାର ଅନୁସନ୍ଧାନ ଚଳାଇଛି ଏବଂ ସମସ୍ତେ ମତେ ହିଁ ଏଥିରେ ବୃଥା ସନ୍ଦେହ କରୁଛନ୍ତି । ପୋଲିସର ମଧ୍ୟ ମୋ ଉପରେ ଆଖି ଅଛି । ମାତ୍ର ମୋର ଏଥିରେ କଣ ହେବ ? ତା ଛଡ଼ା କାହାଠି ଆବଶ୍ୟକ ପଡ଼ିଲେ—ଚପଳା ରାୟଙ୍କର ସେଇ ଚିଠିଟା ତ ମୋ ପାଖରେ ଅଛି !! ମୁଁ ସେ ଚିଠିଟା ସହଜରେ ପ୍ରକାଶ କରୁନାହିଁ । ତାହାର ଆବଶ୍ୟକତା ମଧ୍ୟ ନ ପଡ଼ିପାରେ ।

ଶୁଭକାନ୍ତର କଥା ଶୁଣି ମୁଁ ଖୁସି ହେଲି ଯେ—ବିଚରା ଶୁଭକାନ୍ତର କିଛି ହେବ ନାହିଁ । ମାତ୍ର ଚପଳା ରାୟ ?

ହାୟ, ହାୟ, ଚପଳା ରାୟ !

ହାୟ, ବିଚାରି ଚପଳା ରାୟ !

ଆଉ—ହାୟ ବିଚରା ଶୁଭକାନ୍ତ !



# ଭୂତକୋଠି

ସତରେ ସେଟା ଭୂତକୋଠି କି ନୁହଁ ସେ ପର୍ଯ୍ୟନ୍ତ ମୁଁ ଜାଣି ନଥିଲି । ଭୂତକୋଠି ବିଷୟରେ ବହୁ ଗପ ମୁଁ ପିଲାଦିନୁ ଶୁଣିଛି । ଆଉ ଏ ବୟସରେ ବି ଭୂତକୋଠି ବିଷୟରେ ମୋଟାମୋଟି ଧାରଣା ହେଉଚି, ଜନପଦର ଅନତିଦୂରରେ ବହୁକାଳରୁ ପରିତ୍ୟକ୍ତ ଗୋଟାଏ ଅର୍ଦ୍ଧଜୀର୍ଣ୍ଣ ବିଶାଳ ପ୍ରାସାଦ —ତା'ର ଚତୁଃପାର୍ଶ୍ୱରେ ଏକ ସୁଉଚ୍ଚ ପ୍ରାଚୀର ମଧ୍ୟରେ ଭଗ୍ନ ଇଷ୍ଟକର ସ୍ତୂପ—ତତ୍‌ସଂଲଗ୍ନ ଶୁଷ୍କ ଘଞ୍ଜାଚ୍ଛାଦିତ କେଇଟି କ୍ଷୁଦ୍ର କବର—ଆଉ ପ୍ରାଚୀରର କଡ଼େ କଡ଼େ କେତେଗୁଡ଼ାଏ ଘଞ୍ଚ କୋଚଲା, ଦେବଦାରୁ ଓ ବୃକ୍ଷଶୁଣ୍ଡା ଗଛ । ଚତୁର୍ଦ୍ଦିଗରେ ନିବିଡ଼ ଅନ୍ଧକାର । "ଉରଗ ଆଉ କଣ୍ଟକବେଷ୍ଟିତ ରାତ୍ରି ଦିବସ ଭୟଙ୍କର" ଏକ ଅବରୁଦ୍ଧ ବାତାବରଣରେ ପ୍ରେତ ଲୋକର ଆର୍ତ୍ତ ଚିତ୍କାର କିମ୍ବା ହାସ୍ୟନୃତ୍ୟର ତାଣ୍ଡବ । ଚେମେଣି, ଘରଚଟା, ଯାବୁଡ଼ି ଆଉ ପେଚକମାନଙ୍କ ସନ୍ଧ୍ୟ ଅର୍ଦ୍ଧନିଶୀଥରେ ହୁଁ ହୁଁ। ଚଢ଼େଇର ବିକଟ କୂଜନ ପୁଣି ଜ୍ୟୋତ୍ସ୍ନା ରାତ୍ରିରେ ସେଇ ଦେବଦାରୁ ଆଉ ବଟବୃକ୍ଷର ଘଞ୍ଚ ଗ୍ରୁପ୍ତାନ୍ଧକାର ମଧ୍ୟରେ ଦୁଇ ବା ତତୋଽଧିକ ଧୂସର ଶୃଗାଳଙ୍କର ନିର୍ଭୟରେ ବଟଫଳ ଭକ୍ଷଣ ।

ଏହିଭଳି ଏକ ଭୟଙ୍କର ଗୃହରେ ଭୌତିକ କ୍ରିୟାକଲାପରେ ଅବିଶ୍ୱାସୀ ଜଣେ ଆମେରିକାନ୍ ସାହାବ ଆସି ହୁଏତ କେବେ ରହିଚି । ରାତିରେ ସେଟ୍ରୋମାକ୍ସ ଜାଳି, ବନ୍ଧୁକ ଓ ଶିକାର ଟର୍ଚ୍ଚ ରଖି ଏକାକୀ ଶୟନ କରିଚି । ମାତ୍ର ଠିକ୍ ରାତି ଦୁଇଟା ଘଣ୍ଟାରେ ହଠାତ୍ ଲାଇଟ୍ ଲିଭିଯାଏ ଏବଂ କୋଠା ଉପରେ ଦୁମ୍‌ଦାମ୍ ଶବ୍ଦ ଶୁଭେ । ତା'ପରେ

ହଠାତ୍ କେବଳ ଗୋଟେ ଲୋମଶ ନାଲ ହାତ ଘ୍ରତ ଉପରୁ ସାହାବର ଘ୍ରତ ଉପରକୁ ଲମ୍ବିଆସେ । ସଙ୍ଗେ ସଙ୍ଗେ ଅସଂଖ୍ୟ ଲୋମଶ ନାଲ ହାତ ସାହାବର ଘ୍ରତ ଆଡ଼କୁ ମୁନିଆ ନଖ ଦେଖାଇ ଲମ୍ବିଆସନ୍ତ । ସାହାବ ସାହସ ଧର ବନ୍ଧୁକ ଫୁଟାଇବାକୁ ବସେ । କନ୍ତୁ ଗୁଳଭର୍ତ୍ତ ବନ୍ଧୁକରୁ ଜମା ଗୁଳ ଖସେନାହିଁ । ତା'ପରେ ସାହାବର ଏଇ ବ୍ୟର୍ଥତାକୁ ଉପହାସ କର କଏ ଜଣେ ଅଶରୀର ଅଟ୍ଟହାସ କରେ—ହାଃ ହାଃ ହାଃ ! ଏବଂ ଏଇ ଅଟ୍ଟହାସ ସଙ୍ଗେ ତାଳ ରଖି ଅସଂଖ୍ୟ ଅଶରୀର କଣ୍ଠରୁ ସମସ୍ୱରରେ ନଃସୃତ ହୁଏ—ହାଃ ହାଃ ହାଃ, ହାଃ ହାଃ ହାଃ, ହାଃ ହାଃ ହାଃ । ସକାଳୁ ଲୋକେ ଦେଖନ୍ତ—ସାହାବଟି ଏତେକ ପର୍ଯ୍ୟନ୍ତ ତାର ଡାଏରୀରେ ଲେଖି ରଖିଚ ଏବଂ ବନ୍ଧୁକଟି ହାତରେ ଉପରକୁ ଟେକଧର ରକ୍ତ ବାନ୍ତ କର ମରଯାଇଛୁ ।

ଭୂତକୋଠି ସମ୍ବନ୍ଧରେ ପ୍ରାୟ ଏହିପର କେତେଗୁଡ଼ିଏ ଲୋମହର୍ଷଣ-କାରୀ ବର୍ଣ୍ଣନା ମୋର ସଂସ୍କାରରେ ମୋର ପୂର୍ବପୁରୁଷ ମିଶାଇ ଦେଇଛନ୍ତ ଏବଂ ମୋର ହତଭାଗ୍ୟ ବଂଶରକ୍ଷକ ସନ୍ତାନମାନଙ୍କ ରକ୍ତରେ ବି ଏଇ ସଂସ୍କାର ମୁଁ ସଂକ୍ରାମିତ କରସାରଛୁ ।

କନ୍ତୁ ଐତହାସିକ ରମେଶ ପଟ୍ଟନାୟକ ଯେଉଁ କୋଠିକି ଦେଖିଲେଇ ଲାଳ ପଡ଼ଯାଏ—ଏବଂ ତାର ଏଇ କୋଠା ଦର୍ଶନର ବିକାର ଦେଖି ମୁଁ ଯେଉଁସବୁ କାରଣ ମୋ ବୁଦ୍ଧି ଖରଚ କର ବାହାର କରେ, ତା ମଧ୍ୟରେ ସେ ପର୍ଯ୍ୟନ୍ତ ମୋର ପ୍ରଧାନ ଧାରଣା ଥିଲା ଯେ, ସେଇ କୋଠାଟି ବୋଧେ ଗୋଟେ ଭୂତକୋଠି ଏବଂ ଐତହାସିକ ରମେଶ ପଟ୍ଟନାୟକ ଏକ ଐତହାସିକ ପାଗଳାମି ଯୋଗୁଁ ତା ଜୀବନରେ ଭୂତକୋଠି ଗଳ୍ପ ବର୍ଣ୍ଣିତ ସେଇ ସାହାବ ପର ଏଇ କୋଠିରେ ଚେଙ୍ଗେ ପାଇଛୁ ।

ମାତ୍ର ଏ କୋଠିଟା ସଙ୍ଗେ ମୋ ବର୍ଣ୍ଣିତ ଭୂତକୋଠିର ବନ୍ଦୁ ବିସର୍ଗ ସାମ୍ୟ ତ ନାହିଁ ନିଶ୍ଚୟ—ତା' ଛଡ଼ା ଏ କୋଠାର ବର୍ଣ୍ଣନା ଭୂତ-କୋଠିର ବର୍ଣ୍ଣନା ସଙ୍ଗେ ମିଳାଇ ଦେଖିଲେ ବରଂ ବିରୋଧାଭାସ ଭଳି ମନେହେବ ।

ମୁଁ ବର୍ତ୍ତମାନ ଏଇ ଯେଉଁ କୋଠାଟି ବିଷୟରେ କହୁଛୁ ସହରର

ଠିକ୍ ମଝିରେ ତାର ଅବସ୍ଥିତ । ଆଉ ସହରର ସବୁ କୋଠାଠାରୁ ସୁନ୍ଦର ତାର ଗଠନ—ତା'ର ରଙ୍ଗ—ତାର ମନୋରମ ଉଦ୍ୟାନ—ତାର ଚନ୍ଦ୍ରଶାଳା—ବାତାୟନ ଆଉ ବସନ୍ତର ଆଗମନରେ କ୍ଷୁଦ୍ର କଳମି ଅମ୍ବ-ଗଛର ପେନ୍ଥା ବଉଳ ଭିତରେ କୋଇଲିର କୁହୁତାନ । ମାତ୍ର ସବୁଠାରୁ ଆକର୍ଷଣୀୟ ହେଉଛନ୍ତି ତାର ଅଧିବାସୀ । କୋଠାଟି ଦୁଇ ଭାଗରେ ବିଭକ୍ତ—ତଳ ମହଲ ଆଉ ଉପର ମହଲ । ତଳ ମହଲଟି ଖାଲି ପଡ଼ିଥାଏ । କିନ୍ତୁ ଉପର ମହଲଟି ପ୍ରାୟ କଳମୁଖରିତ । ଜଳବାୟୁ ପରିବର୍ତ୍ତନ ପାଇଁ ବିଭିନ୍ନ ଋତୁରେ ବିଭିନ୍ନ ସ୍ଥାନରୁ ଯେଉଁ ନର-ପକ୍ଷୀ-ପକ୍ଷିଣୀ-ମାନଙ୍କ ଏଇ ସହରକୁ ସ୍ୱ ସ୍ୱ ନୀଡ଼ ଡେଇଁ ଉଡ଼ି ଆସନ୍ତି, ସେହିମାନେଇ ସେମାନଙ୍କ ବିଚିତ୍ର ବେଶ, ବିଚିତ୍ର ବାକ୍ୟ ଆଉ ବିଚିତ୍ର ଗତିବିଧିରେ କୋଠାର ଉପର ମହଲଟିକୁ ନିତ୍ୟ ବିଚିତ୍ର ଭାବ ଆଉ ରସରେ ସଂଜୀବିତ କରି ରଖିଥାନ୍ତି । ସେମାନଙ୍କର ଗୁଞ୍ଜନ—ସେମାନଙ୍କର କୂଜନ—ସେମାନଙ୍କର ଆଳାପ—ସେମାନଙ୍କର ପ୍ରଳାପ, ସଂଳାପ, ଆଉ କଳରବରେ କୋଠାଟି ଯେ ଆଗନ୍ତୁକମାନଙ୍କ ପକ୍ଷେ ଆକର୍ଷଣୀୟ ଏଥିରେ ଦ୍ୱିରୁକ୍ତି ନାହିଁ ।

କିନ୍ତୁ ଏତେ ସମ୍ଭାର ଥାଇ ବି କୋଠାଟି ଐତିହାସିକ ରମେଶ ପଟ୍ଟନାୟକ ମନରେ କାହିଁକି ଯେ ଏତେ ଭୀତିପ୍ରଦ ବିରକ୍ତି ଆଣିଚି ତା ଆମମାନଙ୍କ ପକ୍ଷେ ବୁଝିବା ମୁସ୍କିଲ ଥିଲା । ପ୍ରତିଦିନ ବନ୍ଧୁ ମେଳରେ ବୁଲିଚାଲିବେଳେ, ମୁଁ ସେଇ ନୀଳବର୍ଣ୍ଣ କୋଠାଟି ଆଡ଼କୁ ବଡ଼ ଲୋଭାନ୍ୱିତ ଆଖିରେ ଚାହିଁ ମନ୍ତବ୍ୟ ଦିଏ —"ବାଃ, ସୁନ୍ଦର ହୋଇଚି କୋଠାଟି ।"

—ସୁନ୍ଦର !

—ପ୍ରକୃତରେ ଚମତ୍କାର !

ସମସ୍ତେ ମୋତେ ସମର୍ଥନ କରି ମନ୍ତବ୍ୟ ଦିଅନ୍ତି । ମାତ୍ର ରମେଶ ପଟ୍ଟନାୟକ ହଠାତ୍ ବିକୃତ ଭାବରେ ନାକ ଟେକି ଆଡ଼ ଛେପ ପକାଏ ।

"ଛେନାଗୁଡ଼ ହୋଇଚି କୋଠାଟା । ଏ ବାଟେ ଆସିବା ଅମଙ୍ଗଳ ! ଯେତେସବୁ କଦର୍ଯ୍ୟ—ଯେତେସବୁ—"ବାସ୍—ଏତିକି କହି ସେ ହଠାତ୍ ଲାଲ ପଡ଼ିଯାଏ ।

ଶ୍ରମିକ ସଂଘର ସେକ୍ରେଟେରୀ ବସିନ୍ ମହାରଣା ଅକାରଣ ବ୍ୟସ୍ତ ହୋଇ ପ୍ରତିବାଦ କରନ୍ତି—କାହିଁକି ? କୋଠାଟାର ଗଠନ କଣ ଅସୁନ୍ଦର ?''

''କମ୍ବା ତା'ର ପରିପାର୍ଶ୍ବଟା ?''—ଶିକ୍ଷକ ଗୋପାଳ ମିଶ୍ର ଯୋଗ କରନ୍ତି ।

''କାହିଁ ତାର ନିତ୍ୟନୂତନ ବିଚିତ୍ର ଅଧିବାସୀ ସବୁ ?''—କବି ସତ୍ୟାନନ୍ଦ ଯୋଗ କରନ୍ତି ।

ଆଉ ରମେଶକୁ ରଖେ କିଏ ? ''ନିଆଁ ପାଉଁଶ ହେଉଛି ସେ କୋଠାଟାରେ । ଉଃ କଦର୍ଯ୍ୟ—କଦର୍ଯ୍ୟ—ଭୟଙ୍କର । ଇସ୍ ସୟତାନର ଆଖଡ଼ା ଘର ସେଇଟା—ବଦ୍‌ମାସ—ପାଜି— ସୟତାନ ।'' ରମେଶ ତଳ ଓଠକୁ ଦାନ୍ତରେ କାମୁଡ଼ି ପକାଏ—ସତେ ବା ଏକ ତୀବ୍ର ଘୃଣାବେଗରେ ସନ୍ନିହିତ ବହିଃପ୍ରକାଶକୁ ସମ୍ଭାଳି ନେବାପାଇଁ ସେ ନିଜକୁ ପ୍ରସ୍ତୁତ କରୁଛି !

ମନସ୍ତତ୍ତ୍ୱବିତ୍ ଶଶିଭୂଷଣ କିନ୍ତୁ ରମେଶର ଗତିବିଧିକୁ ଲକ୍ଷ୍ୟ କରନ୍ତି । ସାଧାରଣ ଜୀବନର ବ୍ୟବହାରରେ ଐତିହାସିକ ରମେଶ ପଟ୍ଟନାୟକ ବେଶ୍ ସାମାଜିକ ବ୍ୟକ୍ତି । ଐତିହାସିକ କହିଲେ ବ୍ୟତୀତ ରମେଶ ସାମାଜିକ ଆଲୋଚନା, ସମାଲୋଚନା ଓ ମନ୍ତବ୍ୟ ଆଦିରେ ଆଦୌ ଅବାଧ ନୁହେଁ । କିନ୍ତୁ ପ୍ରତିଦିନ ଏଇ କୋଠାଟାର ପ୍ରଶଂସାମୂଳକ ଆଲୋଚନାରେ ରମେଶର ବ୍ୟବହାର ଏତେ ବୀତଶ୍ରଦ୍ଧ ଓ ଉଦ୍‌ବେଗଜନକ କାହିଁକି ? କାହିଁକି ?

ଆମେ ସମସ୍ତେ ସମପ୍ରାଣରେ ଆଶ୍ଚର୍ଯ୍ୟ ହେଉ ।

ଦିନେ—

ଗୋପାଳବାବୁ ପ୍ରସ୍ତାବ କଲେ—''ଆସ ସେ କୋଠାଟାଅଡ଼େ ଯେବିଏ ବୁଲିଯିବା ।'' ଆମେ ସବୁ ନୀରବରେ ମନ୍ତ୍ରମୁଗ୍ଧ ମେଷପଲପରି ତାଙ୍କର ପଶ୍ଚାଦ୍ଧାବନ କଲୁ ।

ରମେଶ କିନ୍ତୁ ରାଗରେ ନିଆଁ ହୋଇଗଲା—''କାହିଁକି ? କାହିଁକି ?

କାହିଁକି ପିବ ? ଚୂପ୍‌ରୁହ—ନାଁ—ପାଦେ ବ ନୁହେଁ ସେ ଆଡ଼କୁ । ନାଁ, ନାଁ, ଜମା ନୁହଁ—କାହିଁକି ?"

"କିନ୍ତୁ କାହିଁକି ନୁହଁ ?"— ମୁଁ ରାଗରେ ଚଡ଼ ହେଉଠିଲି । "ଅଚ୍ଛା ଲୋକଟାଏ ! କୋଠାଟା ସ୍ତ୍ରୀଙ୍କୁ ଖାଇ ଯାଉଛି ! କାହିଁକି ପିବୁ ନାହିଁ ? ଅଲବତ୍ ପିବୁ । ଚାଲ ଗୋପାଳବାବୁ—ଚାଲ ।"

ବାସ୍—ସମସ୍ତେ ପୁଣି ଅଗ୍ରଗତି କଲେ । ମାତ୍ର ରମେଶ ସମସ୍ତଙ୍କ ଆଗକୁ ଆସି ହାତ ମେଲାଇ ଓଗାଳିଲା—"ନାଁ—ତୁମେମାନେ ଯାଇ ପାରିବ ନାହିଁ—ଦେବିନି—ମୁଁ ପିବାକୁ ଦେବିନି—ନାଁ—ଜମା ନୁହେଁ ।"

"ଅରେ ପାଗଳ, କାହିଁକି ଆମେ ପିବୁନି ? ଭୂତ କୋଉଠାକାର ।" ମୁଁ ଭାରି ଚିଡ଼ିଗଲି ।

"ଭୂତ—ଭୂତ—ହଁ—ପାଜି—ସୈତାନ—ଯେତେ ସବୁ କଦର୍ଯ୍ୟ—ଭୟଙ୍କର—ଇସ୍—" ରମେଶ ଅଧିକ ନାଲି ପଡ଼ିଯାଇ ଓଠରେ ଦାନ୍ତ କାମୁଡ଼ିଲା ।

କବି ସତ୍ୟାନନ୍ଦ ଖୁବ୍ ଉତ୍ସୁକ ଗଳାରେ ଶିଶୁସୁଲଭ ଉତ୍କଣ୍ଠା ଆଉ ଅନେକରେ ପଚାରିଲା—"ରମେଶ, ତୁମେ ଜାଣ ଏ କୋଠାର ଇତିବୃତ୍ତି କିଛି ?"

"ଇସ୍—ସୈତାନ—ହେତାନ—ଯେତେ ସବୁ ଭୂତଙ୍କର ଆଖଡ଼ା—ଯେତେ ସବୁ ପାଜି—ଇସ୍—ଯେତେ ସବୁ କଦର୍ଯ୍ୟ—" ରମେଶ ଖାଲି ଥରିବାକୁ ଲାଗିଲା । ତାର ଆଖି ଛଳ ଛଳ । ତାର କଣ୍ଠ ଗଦ୍‌ଗଦ୍—ତାର ବୋଧେ ମନେହେଲା ଆମେ ତାକୁ ଏଇ ଭୂତକୋଠିକୁ ବର୍ତ୍ତମାନ ଜବରଦସ୍ତି ତାର ଇଚ୍ଛାବିରୁଦ୍ଧରେ, ତାର ଭାବାବେଗକୁ ବେଖାତିର କରି ଟାଣିନେଉଚୁ ।

ମୋର ମନ ନରମି ଆସିଲା । ମୁଁ ତାର ଅତି ନିକଟକୁ ଯାଇ ତାକୁ ଆଲିଙ୍ଗନ କରି ମୁହାଁମୁହିଁ ଅତି କୋମଳ ଓ ଆଶ୍ୱାସନା ବାଣୀରେ ଭାବ ଗଦ୍‌ଗଦ୍ କଣ୍ଠରେ କହିଲି, "ରମେଶ—ରମେଶ ପଟ୍ଟନାୟକ—ଜାଗ୍ରତ ହୁଅ । ତୁମେ ବିଖ୍ୟାତ ଐତିହାସିକ—ଜଣେ ବଳିଷ୍ଠ ନିୟୁକ୍ତ ଓ ମଧୁର ଦାମ୍ପତ୍ୟଜୀବନର ଏକ ସୁଖୀ ସୂତ୍ରଧର । ତୁମର ପ୍ରିୟତମା ସ୍ତ୍ରୀ—ସ୍ୱରେଶ୍ଚି

ମନୋଜ୍ଞ ସନ୍ତାନ ଆଉ ଧନ ଜନ ଗୋପଲକ୍ଷ୍ମୀ......ଦେଖ, ତୁମ ପକ୍ଷରେ ଏପରି ଗୃହାଳୁତା—ଏପରି ଚପଳତା—ଏତାଦୃଶ ଅଯଥା ଭୟ ଆଉ ଶେଷରେ ସାମାନ୍ୟ ଗୋଟିଏ କୋଠାଘର ପ୍ରତି ତୁମର ଏତେ ପରିମାଣରେ ଉଗ୍ର ଈର୍ଷା ବା ଆଶଙ୍କା ଆଦୌ ଶୋଭନୀୟ ନୁହଁ । ରମେଶ ପଞ୍ଚନାୟକ—ଉଠ, ଜାଗ୍ରତ ହୁଅ—ଆସ, ଏଇ ସୁରମ୍ୟ ଅଟ୍ଟାଳିକାଟିର ସମ୍ମୁଖୀନ ହୋଇ...”

ପାଗଳଙ୍କ ଭଳି ରମେଶ ମୋତେ ଜାବୁଡ଼ି ଧରିଲା । ତା’ ଦେହରୁ ବୋଧେ ସବୁ ରକ୍ତ ପଦାକୁ ଲୋମକୂପ ଦେଇ ବାହାରି ଆସିଥିଲା । ସେ ଆହୁରି ଜୋର୍‌ରେ ଥରିବାକୁ ଲାଗିଲା । ତାର ଆଖି ଭିତରୁ ରକ୍ତ ପିଚକା ଆସିଲାଭଳି ମନେହେଲା, ଆଉ ଦୁଇଟା ଯାକ ଆଖି ତାର ଖୁବ୍ ଚଉଡ଼ା ହୋଇଗଲା । ତା’ପରେ ଖୁବ୍ ପାଟିକରି ସେ ଜୋର୍‌ରେ ସେଇ ରାସ୍ତା ଉପରେ ଏକ କ୍ରୋଧୋନ୍ମତ୍ତ ଅବୋଧ ଶିଶୁପରି କ୍ରନ୍ଦନ କରିବାକୁ ଲାଗିଲା । ଆମେ ସବୁ ତା’ର ଚାରିପଟେ ଘେରିଗଲୁ ।

“ରମେଶ !”

“ରମେଶବାବୁ !”

“ରମେଶ ଭାଇ !”

“ଆରେ ଭାଇ ରମେଶ ; ଏ ପ୍ରୌଢ଼ ବୟସରେ—ନାଁ ନାଁ—କିଛି ଚିନ୍ତା ନାହିଁ—ହଁ ନ ହେଲା ବା—ଶୁଣ ହେ—ଆରେ ମାର ଗୁଲି ସେ କୋଠା ଘରକୁ । ତୋର ବନ୍ଧୁତ୍ୱ ତୁଳନାରେ ସେ କୋଠା ଘରଟାକୁ ଦିବା କଣ ଆମର ଏମିତି ଗୋଟେ ଅନତିକ୍ରମ୍ୟ ଆକାଙ୍କ୍ଷା ! ହଁ ନ ହେଲା ବା—କିନ୍ତୁ କଣ ସେ କୋଠା ଘରଟିର ଇତିହାସ ? କି ତୀବ୍ର ଭୀଷଣ ଅନୁଭୂତି ଆଣିଛି ସେ କୋଠା ଘରଟା ତୋ ଜୀବନରେ ? କହ ଭାଇ କହ—ଛି—କାନ୍ଦୁଛୁ ଗୋଟାଏ କଅଣରେ ରମେଶ ଏ ବୁଢ଼ା ବୟସରେ ଏମିତି ? ଆଃ ଯାଃ—ଓ ହୋ—କହ ନା—ଅରେ କହ—ଛାଡ଼ ଛାଡ଼—ଫେର କାନ୍ଦୁଛୁ—କହ ଭାଇ—କଣ ଘଟନାଟା ! ଅରେ ମାର ଗୁଲି ସେ କୋଠା ଘରଟାକୁ—କହ ନା—ଇସ୍, ରମେଶ କହ—

ଓ ହୋ···।”

ଅନେକ ସମୟ ପରେ—

ରମେଶର କୋହ ବନ୍ଦ ହୋଇ ଆସିଲା । ତାର ଥରିବା ବନ୍ଦ ହୋଇ ଆସିଲା । ରହି ରହି ସେ କହିଲା—“ତୁମେମାନେ ବୁଝି ପାରି ନାହିଁ —ପାରିବ କି ନାହିଁ କେଜାଣି ? କିନ୍ତୁ ବିଶ୍ୱାସ କର—ଆଜିକୁ ଅଠର ବର୍ଷ ତଳେ—ମୋର ବିବାହର ଠିକ୍ ଦୁଇ ଦିନ ପୂର୍ବରୁ—ଗୋଟେ ଭୂତ— ଗୋଟେ ସଇତାନ—ଗୋଟେ ପାଜି ସଇତାନ—(ରମେଶ ଦାନ୍ତ ଘଷିବାଇଲା, ହାତ ମୂଠା କଲା ) ଗୋଟେ ସଇତାନ ମୋ ସ୍ତ୍ରୀ ପାଖକୁ ଚିଠି ଦେଇଥିଲା— ପର ଦିନ ଦୁଇଟାରେ ମୋ ସ୍ତ୍ରୀ ଏଇ କୋଠାର ତଳ ମହଲର ଗୋଟେ କୋଠରୀକୁ ସେଦିନ ଆସନ୍ତେ—ତେବେ ସେଇ ସଇତାନ, ସେଇ ପାଜି ସଇତାନ—( ରମେଶର ହାତ ଫେର ମୂଠା ହେଲା—ସେ ଶୂନ୍ୟକୁ ବିଧା ମାରିଲା—ଦାନ୍ତ ରଗଡ଼ିଲା ) ସେ ପାଜି ସଇତାନ ମୋ ସ୍ତ୍ରୀ ସଙ୍ଗେ ସହବାସ କରିଥାନ୍ତା । ଉଃ—ଉଃ—ସେତେ ସବୁ ପାଜି—ବଦମାସ—ଭୂତ ଦୈତା- ନଙ୍କ—ଆଖଡ଼ା—ଓଃ ଓଃ ।”

ରମେଶ ପଟ୍ଟନାୟକ ତଳେ ପଡ଼ି ଅଚେତା ହୋଇଗଲା । ଅମେ ଅବଶ୍ୟ ପାଣି ଆଣି ଓ ବିଞ୍ଚି ତାକୁ ସେ ଦିନ ସେଇ ରାସ୍ତା ଉପରେ ଚେତା କଲୁ ।

ମାତ୍ର ମୁଁ ଠିକ୍ ଜାଣିଛି—ପିଲା ଦିନର ସେଇ ସବୁ ଭୂତଗୁଡ଼ାକ ପରି ଏଇଟା ବି ଐତିହାସିକ ପ୍ରୌଢ଼ ରମେଶ ପଟ୍ଟନାୟକଙ୍କର ଗୋଟେ ମନର ଭୂତ ।

ଆଉ ମୁଁ ଏ ପର୍ଯ୍ୟନ୍ତ ବି ଠିକ୍ ବୁଝି ପାରିନି ସେଇ କୋଠାଟା ବି ସତରେ ଭୂତକୋଠି କି ନାହିଁ ।



# ଛାୟା ଓ ମାୟା

ବାଲ୍ୟକାଳରୁ ବିଧବାମାନଙ୍କ ପ୍ରତି ମୋର ପ୍ରଚଣ୍ଡ ଘୃଣା ଥିଲା । ଘୃଣାଟା ଅବଶ୍ୟ କୁସଂସ୍କାରଗତ । ମାତ୍ର କେବଳ କୁସଂସ୍କାରଗତ ନୁହେଁ— ମୋର ଧାରଣା ଥିଲା ଯେ ଯେଉଁ ସ୍ତ୍ରୀ ଲୋକଗୁଡ଼ାକ ଅସତୀ, ଦୋଷ୍ଟ- ଚାରିଣୀ, ଆଉ ପାପିନୀ, ସେହିମାନେ ହିଁ କେବଳ ଅଳ୍ପବୟସ ମଧ୍ୟରେ ସ୍ୱାମୀକୁ ହରାଇ ବିଧବା ହୁଅନ୍ତି । ଏହିଭଳି ବିଧବା ସ୍ତ୍ରୀ ଲୋକମାନଙ୍କୁ ମୁଁ ବାଲ୍ୟ- କାଳରୁ ଅଲକ୍ଷଣୀ ବୋଲି ଘୃଣା କରୁଥିଲି । ସେମାନଙ୍କର ସିନ୍ଦୂରବିରହିତ ସୀମନ୍ତ ଓ କପାଳ, ଚୂଡ଼ୀହୀନ ମଣିବନ୍ଧ, ଆଉ ଧୂଳୁଷ ଧିଡ଼ା ଧଳା ଲୁଗା ଦେଖିଲେ ମୋ ମନରେ କୁତ୍ସିତ ପ୍ରତିକ୍ରିୟା ହେଉଥିଲା । ସବୁଠାରୁ ବେଶି ମୋତେ ଖରାପ ଲାଗୁଥିଲା, ସେମାନଙ୍କର ଡାହାଣୀ ଆଖିର ଚାହାଣୀ । କେମିତି ସେମାନେ ଚାହାନ୍ତି !! ଥରେ ଗୋଟିଏ ବିଧବା ଯୁବତୀ ମୋ ଭାତ ଥାଳି ପାଖେ ବଢ଼ା ହୋଇଥିବା ରାକୁର ମାଛଟିର ମୁଣ୍ଡଟିକୁ ଏପରି ଭାବରେ ଚାହିଁଥିଲା ଯେ ସେଇ ଚାହାଁଣୀ ଏ ପର୍ଯ୍ୟନ୍ତ ମୋ ମନେଅଛି । ଆଘ୍ରାଣଦ୍ୱାରା କୁଆଡ଼େ ଅର୍ଦ୍ଧ ଭୋଜନ ହୋଇଥାଏ । ମାତ୍ର ସେହି ବିଧବାଟି ମାତ୍ର ମିନିଟିକ ଚାହାଁଣୀ ମଧ୍ୟରେ ସେହି ରାକୁର ମୁଣ୍ଡଟିର ଅର୍ଦ୍ଧେକରୁ ଅଧିକ ସ୍ୱାଦ ବୋଧେ ଭୋଗ କରି ସାରିଥିଲା । ବସ୍ତୁତଃ ରାକୁର ମୁଣ୍ଡଟିକୁ ମୁଁ ଉଦରସ୍ଥ କଲି । ମାତ୍ର ସେହି ବିଧବା ଯୁବତୀଟିର ଡାହାଣୀ ଆଖିର କ୍ଷୁଧିତ ଚାହାଁଣୀ ମୋ ପେଟ ଭିତରେ ପଶି ସତେ ବା ମୋ ପେଟକୁ ଘୁରାଇଲା ! ମନ୍ଥନ କଲା ! ସେହି ଭୟଙ୍କର ଚାହାଣୀକୁ ମୁଁ ଭୁଲି ପାରି ନାହିଁ ।

ଆଉ ଥରେ—ମୋତେ ଯେତେବେଳେ ୧୮-୧୯ ବର୍ଷ ବୟସ— ଆମ ଗ୍ରାମର ଗୋଟିଏ ଯୁବତୀ ବିଧବା ଆମ ଘରକୁ ଯେତେବେଳେ ବାରମ୍ବାର

ଟିକା ଅଧିକା କରୁଥିଲି । ମୋ ମାଆ ତାକୁ ଗାଳି ଗୁଲଜ କରି ବାରଣ
କରିବା ସତ୍ତ୍ୱେ ବି ସେ ଲୁଚି ଲୁଚି ଆମ ଘରେ ପଶି ଯେବେଏ ବୁଲିପଡ଼ି
ଯାଉଥିଲା । ଆମ ଘରେ ମୋର ବଡ଼ ଭାଇମାନେ ସେତେବେଳେ ଅବି-
ବାହିତ ଥିଲେ । ତେଣୁ ମାଆର ବଡ଼ ଭୟ ଥିଲା ଯେ କାଳେ ସେଇ
ରାଣ୍ଡି ଟି ତାର ପିଲାଙ୍କୁ ଚ୍ରନ୍‌ବ୍ଧ କରି ଖରାପ କରି ଦେବ । ଦିନେ ସେ
ଏହିପରି ଲୁଚି ଲୁଚି ଆସୁଥିବା ସମୟରେ ହଠାତ୍ ଆମ ଘରର ଏକ ଜନ୍ଧ ନ
ବାରଣ୍ଡାରେ ଆମେ ପରସ୍ପର ବିପରୀତ ଦିଗରୁ ଆସି ଧକ୍କା ଖାଇଲୁ ।
ତାର ଥିଲା ଅନୁପମ ସ୍ୱାସ୍ଥ୍ୟ ଓ ଯୌବନ । ଧକ୍କା ଖାଇ ସେ ପଛପଟକୁ
ପଡ଼ିଗଲା ଭଳି ହେଲା । ମାତ୍ର ମୁଁ ତାକୁ ସଙ୍ଗେ ସଙ୍ଗେ ଧରି ପକାଇଲି ।
ମୋର ଦୁଇ ପାପୁଲି ଦ୍ୱାରା ମୁଁ ତାର କଟିକୁ ଛନ୍ଦି ଦେଇଥିଲି । ପଛ-
ଆଡ଼କୁ ଅଳ୍ପ ଝୁଙ୍କି ରହି ମାତ୍ର ଦଶଟି ସେକେଣ୍ଡ ମଧ୍ୟରେ ସେ ମୋର ମୁହଁକୁ
ଏପରି ଭାବରେ ଚାହିଁ ରହିଲା ଯେ, ସତେ ବା ସେ ମୋତେ ତାର ଆଖି
ବାଟେ ଶୋଷିଗଲା । ମୋର ସୁପରିପୁଷ୍ଟ ସ୍ୱାସ୍ଥ୍ୟ ଓ ଯୌବନ ସତେ ବା
ତା'ର ଆଖିରେ ଆତୁର କ୍ଷୁଧା ଜାଗ୍ରତ କରିଦେଲା । ତା'ପରେ ସେ
ମୋର ସୁବସ୍ଥିତ ଡାହାଣ ପା.ଖ. ଭୁଜର ମାଂସପେଶୀକୁ ଜୋରରେ
ମୁଠାଇ ଧରି ଝିଙ୍କି ଦେଲା, ଆଉ ତାର ଅନ୍ୟ ହାତରେ ମୋର ବାହୁର
ମାଂସପେଶୀକୁ ଜୋରରେ ଚିମୁଟିଲା ଭଳି ଚିପି ଧରିଲା । ମୁଁ ଛାଡ଼ି ଦେଲି ।
ସେ ପଳାଇଗଲା ।

ସେହିଦିନ ରାତିରେ ମୁଁ ଗୋଟିଏ ସ୍ୱପ୍ନ ଦେଖିଲି । ମୁଁ ଜଳଛତ୍ର
ଖୋଲିଛି । ସେ ମୋତେ ଆସି ପାଣି ମାଗିଲା । ହାତ ଅଞ୍ଜୁଳି କରି
ସେ ପାଣି ପିଉଛି ଆଉ ମୁଁ ତାର ଅଞ୍ଜୁଳିରେ ପାଣି ଢାଳୁଛି । ହଠାତ୍
ସେ ମୋର ହାତଟାକୁ କାମୁଡ଼ି ଧରି ଛଡ଼ାଇ ନେଇ ପଳାଇଗଲା । ମୋର
ନିଦ ଭାଙ୍ଗିଗଲା । ଏହି ଦୁଃସ୍ୱପ୍ନ ଦେଖି ବଡ଼ ବ୍ୟସ୍ତ ମନରେ ମୁଁ ମୋର
ମାଆକୁ କହିଲି । ମୋ ମା ମୋତେ ସଙ୍ଗେ ସଙ୍ଗେ ଗୋରୁ ବୁହାଳକୁ ନେଇ
ବାଛୁରି ଲଞ୍ଜରେ ଝାଡ଼ି ଦେଲା ଆଉ କାନ୍ଦୁଣୁ ମାନ୍ଦୁଣୁ ହୋଇ ମୁଣ୍ଡିଆ
ମାରିଲା— 'ସେଇ ଡାହାଣୀ ରାଣ୍ଡିର ଆଖି ତ ମୋ ପୁଅ ଉପରେ ପଡ଼ିଲାଣି
ଲେ—ହେ ମା କୁଟାମଚଣ୍ଡୀ ! ସେ ଡାହାଣୀ ଆଖି ଫୁଟିଯାଉ—ରାଣ୍ଡି,

ନିଚରଖାଇ, ସଇତାକୁ ଖାଇଲି । ତା' ପେଟରେ ନିଆଁ ଲଗୁ ଡାହାଣୀ ।''

ମୋ ମାଆର ଆଶଙ୍କା ଓ ବିଶ୍ୱାସକୁ ଦୃଢ଼ୀଭୂତ କରାଇବାକୁ ଦୈବାତ୍ ଏହି ଘଟଣାଟି ପରେ ପରେ ମୋତେ ଦୁଇ ତିନି ଦିନ ଜ୍ୱର ବି ହୋଇଗଲା ।

ଏ ସବୁ ଗୁଜବ । କିନ୍ତୁ ମୁଁ ସେଇ କ୍ଷୁଧିତ କାହାଣୀକୁ ଭୁଲିପାରି ନାହିଁ । ସେ କାହାଣୀରେ ଏକ ଅଶାନ୍ତ ଅତୃପ୍ତ ଆତ୍ମାର କାମନା, କ୍ଷୁବ୍ଧ ଭୟଙ୍କର ଆକାଙ୍କ୍ଷା ପ୍ରକାଶ ପାଏ । ବାଲ୍ୟକାଳରେ ଏହି କାହାଣୀକୁ ମୁଁ ଘୃଣା କରୁଥିଲି, କାରଣ ଏ କାହାଣୀର ଅର୍ଥ ମୁଁ ଠିକ୍ ବୁଝି ନଥିଲି । ଭୟ ବି କରୁଥିଲି, କାରଣ ଏ କାହାଣୀର ଲକ୍ଷ୍ୟ ହେବାକୁ ସେତେବେଳେ ମୋର ଯଥେଷ୍ଟ ଶକ୍ତି ନ ଥିଲା—ତା ମାନେ ଏହି କ୍ଷୁଧିତ ଦୃଷ୍ଟିକୁ ଶାନ୍ତ କରିବାଲାଗି ମୋର ଯଥୋଚିତ ସାମର୍ଥ୍ୟ ନ ଥିଲା ।

କିନ୍ତୁ କ୍ରମେ ଏ କାହାଣୀର ଅର୍ଥ ମୁଁ ବୁଝିଲି । ମୋର ବୟସ ବଢ଼ିବା ସଙ୍ଗେ ବୋଧଶକ୍ତି ବି ବଢ଼ିଲା ଓ ଶକ୍ତି ସାମର୍ଥ୍ୟ ବି ବୃଦ୍ଧି ପାଇଲା । ତେଣୁ ପିଲାଦିନେ ଯାହାକୁ ଘୃଣା ଓ ଭୟ କରୁଥିଲି ବଡ଼ ଦିନେ ତାକୁ ଦୟା କଲି—ଆଉ ଭଲ ପାଇଲି । କାରଣ ଯେ ବୁଝିପାରେ ସେ ଦୟା କରେ—ଆଉ ଯେ ଶକ୍ତିମାନ ସେ ଭଲପାଏ । ( ମୋର ବିଶ୍ୱାସ ଅନ୍ତତଃ ଏହା ହିଁ ଥିଲା ) ମୋର ଶକ୍ତିଶାଳୀ ଓ ଚପଳ ଚତୁର ଯୌବନ ଯଥାକାଳରେ ମତେ ଏହି ଗୁଣରେ କୁଶଳ କଲା । ଫଳରେ ମୋର ଯୌବନ କେତେବାର ଏହି କ୍ଷୁଧିତ କାମନାର କାହାଣୀକୁ କ୍ଷଣକାଳ ପାଇଁ ଶାନ୍ତ କରି ନିଜେ ଅଶାନ୍ତ ହୋଇ ଉଠିଛି ଓ କେତେବାର ଏହିଭଳି ଅତୃପ୍ତ ଆତ୍ମାକୁ କ୍ଷଣିକ ତୃପ୍ତି ଦେଇ ନିଜର ଆତ୍ମାକୁ ଚିରକାଳ ଲାଗି ପଙ୍କିଳ କରି ରଖିଛି । ସେ କଥା ଭାବିଲେ ଆଜି ଏହି ପ୍ରୌଢ଼ ଚିତ୍ତରେ ମୋର ସେ କାଳର ସେହି ମହତ ଯୌବନ ଲାଗି ଗଭୀର ସମ୍ମାନ ଓ ସହାନୁଭୂତି ଜାଗିଉଠେ । ହାୟ ! ମୋର ସେ କାଳର ବଳଦୃପ୍ତ, ତେଜଦୀପ୍ତ, ମହିମାମୟ, ବିଶାଳଚିତ୍ତ ଯୌବନ ! ଆଶ୍ରିତକୁ ଆଶ୍ରୟ ଦେବା ଲାଗି କି ଉଦାର ଆଉ ବିଶାଳ ତୁମର ଆଲିଙ୍ଗନ ଦୁର୍ଗ ! ଶରଣାର୍ଥୀକୁ ଶରଣ ଦେବାଲାଗି କି ଚଞ୍ଚଳ ଆଉ ଅକୁଣ୍ଠ ତୁମର ନିଷ୍ପତ୍ତି ! ପ୍ରାର୍ଥୀର ପ୍ରାର୍ଥନା ପୂରଣ

ଲାଗି କି ଶସ୍ତା ଆଉ କାର୍ପଣ୍ୟହୀନ ତୁମର ଦାନ !

ମାତ୍ର ହେ ଲକ୍ଷ-କାମନାର କଳ୍ପତରୁ, ଚିନ୍ତାମଣି ଯୌବନ ! ତୁମେ ଉଦାର, ତୁମେ ମହୀୟସୀ, ତୁମେ ବଳଶାଳୀ, ତୁମେ ମହାମାନସ । କିନ୍ତୁ ତୁମେ ଭ୍ରାନ୍ତ—ତୁମେ ଅବୋଧ—ତୁମେ ପ୍ରମତ୍ତ—ଆଉ ଉନ୍ମତ୍ତ । ନିଜର ତେଜରେ ତୁମେ ନିଜେ ଅନ୍ଧ । ନିଜର ଶକ୍ତିରେ ତୁମେ ନିଜେ ଦୁର୍ବଳ । ନିଜର ମାଧୁର୍ଯ୍ୟରେ ତୁମେ ନିଜେ ମୂଢ଼ । ନିଜର ବୁଦ୍ଧିରେ ତୁମେ ନିଜେ ମୂର୍ଖ । ନିଜର ଧନରେ ତୁମେ ନିଜେ ଦରିଦ୍ର—ଆଉ ଶେଷରେ ନିଜର ଦାନରେ ତୁମେ ନିଜେ କେତେ ଦସ୍ୟୁମାୟ !

ଆଜି ତୁମର ସେଇ ମହତ୍ ଭ୍ରାନ୍ତିଗୁଡ଼ିକ ମଧ୍ୟରୁ ଗୋଟିଏ ଭ୍ରାନ୍ତିର କଥା କହୁଛି ।

ମୋର ବୟସ ସେତେବେଳେ ତିରିଶରୁ ଅଳ୍ପ କମ୍, କିନ୍ତୁ ତାର ବହୁ ପୂର୍ବରୁ ନାରୀମାନଙ୍କ ସମ୍ପର୍କରେ ମୁଁ ଆସିସାରିଥିଲି । (ଯଦିଓ ଏ ପର୍ଯ୍ୟନ୍ତ ମଧ୍ୟ କୌଣସି ନାରୀ ମତେ ବିବାହ କରିବାକୁ ସମ୍ମତ ହୋଇନାହିଁ ) । ଯେଉଁ କେତୋଟି ନାରୀଙ୍କର କାମନା-ଅଗ୍ନିରେ ଘୃତାହୁତି ଦେଇ ପ୍ରଣୟବେଦୀରେ ମୁଁ ମୋର ପୌରୋହିତ୍ୟ ଲାଗି ଗର୍ବ କରି ବସୁଥିଲି—ଯେଉଁ କେତୋଟି କାମିନୀର କ୍ଷୁଧାକୁ ଖାଦ୍ୟ ଯୋଗାଇ ମୁଁ ମୋର ଦାନପଣରେ ମୁଢ଼ ହୋଇ ରହିଥିଲି, ସେମାନେ ଆଜି କିଏ କୁଆଡ଼େ ଅଛନ୍ତି, ତାଙ୍କର ଠିକଣା ବି ମୋତେ ଜଣା-ନାହିଁ । ସେମାନଙ୍କର କଥା ବି ଆଉ ମୋର ମନେ ପଡ଼େ ନାହିଁ । କିନ୍ତୁ ସେଇ ଦରିଦ୍ର, କ୍ଷୁଧିତା କାମିନୀଗୁଡ଼ିକ ମୋର ଆଉ ଯାହାସବୁ କ୍ଷତି କରିଛନ୍ତି ତା' ତ ମୁଁ ଭୋଗୁଛି—ମାତ୍ର ସବୁଠାରୁ ବେଶୀ କ୍ଷତି କରିଛନ୍ତି ସେମାନେ ମୋତେ ସେମାନଙ୍କୁ ବୁଝିବାକୁ ସୁଯୋଗ ନ ଦେଇ । ମୁଁ କ୍ଷୁଧିତକୁ ଅକଳନ ଦାନ ଦେଇଛି କିନ୍ତୁ ସେମାନଙ୍କ କ୍ଷୁଧା ବୁଝିନାହିଁ । ତେଣୁ ଆଜି ମୁଁ ଦାନ ଦେଇ ଦେଇ ଦେବାଳିଆ—ମାତ୍ର ମୋର ସେ ଦାନ ବିଫଳ ହୋଇଛି ।

ମୁଁ ସେମାନଙ୍କ କ୍ଷୁଧାକୁ ନ ବୁଝିବା ଲାଗି ସେମାନେ ଦାୟୀ—ମୁଁ ବି ଦାୟୀ । ମୋର ଦୋଷ ହେଉଛି—କ୍ଷୁଧା ନ ବୁଝି ଦାନ ଦେବାର ଆଗ୍ରହାତିଶଯ୍ୟ ଓ ଆବେଗପ୍ରବଣତା । ସେମାନଙ୍କର ଦୋଷ ହେଉଛି—

ସେମାନେ କେବଳ ମୋର ଦାନ ଖାଇ ଚାଲିଯାଇଛନ୍ତି । ସେମାନେ ମୋର ଧନକୁ ହିଁ ଚହ୍ନିଛନ୍ତି; କିନ୍ତୁ ଏହି ଉଦାର ଦାନଶୀଳ ଧନୀଟିର ଯେ ଗୋଟିଏ ମନ ଅଛି ଏବଂ ତାର ଧନ ଅପେକ୍ଷା ତାର ମନଟି ଯେ ଅଦ୍ଭୁତ ଆକର୍ଷଣୀୟ—ଅଦ୍ଭୁତ ଭୋଗ୍ୟ—ସେ କଥା ସେଇ କ୍ଷୁଧାତୁର କାଙ୍ଗାଳୀ କାମିନୀଗୁଡ଼ିକ ବୁଝି ନାହାନ୍ତି । ସେମାନେ ବୁଝିବାକୁ ବି ଚେଷ୍ଟା କରି ନାହାନ୍ତି ଯେ, ଏହି ଦାନୀଟିର ଧନ ଅପେକ୍ଷା ମନଟି ହିଁ ସେମାନଙ୍କ କ୍ଷୁଧା ବା ବେଦନାକୁ ବେଶୀ ବୁଝିଥାନ୍ତା । କିନ୍ତୁ ହାୟ ! ସେମାନଙ୍କର ବା ଆଉ ଭୁଲ କଣ ? ସେମାନେ କ୍ଷୁଧାର ଶାନ୍ତି ଲାଗି ଆସିଥିଲେ—କ୍ଷୁଧାର ପରିଚୟ ଦେବା ଲାଗି ନୁହେଁ ।

କିନ୍ତୁ କ୍ଷୁଧାର ପରିଚୟ ଦେବା ଲାଗି ଗୋଟିଏ ନାରୀ ଦିନେ ମୋର ଯୌବନକୁ ନିମନ୍ତ୍ରଣ କଲା । ସେ ଗୋଟିଏ ଉଚ୍ଚଶିକ୍ଷିତା ଯୁବତୀ—ବିଧବା—ସମ୍ପର୍କରେ ମୋର ଭଣୋଇର ଦୂରସମ୍ପର୍କୀୟା ଭଉଣୀ ହେବ । ସେ ସହରର ଝିଅ—ଆଧୁନିକା । ଗୋଟିଏ ବର୍ଷ ସ୍ୱାମୀସୁଖ ଭୋଗ କରି ସେ ହଠାତ୍ ବିଧବା ହେଲା । ସେତେବେଳେ ମୋଠାରୁ ବି ସେ ବୟସରେ ଅଳ୍ପ କିଛି ବଡ଼ ଥିଲା । ତାର ବୈଧବ୍ୟ ବେଦନା ତାର ଅଙ୍ଗରୁ ଅପହରଣ କରିଥିଲା ଲାବଣ୍ୟ, ମାତ୍ର ଛାଡ଼ି ଯାଇଥିଲା ସୌନ୍ଦର୍ଯ୍ୟ । ଲିଭାଇ ଦେଇଥିଲା ତାର ସ୍ୱାସ୍ଥ୍ୟର ତେଜ, ମାତ୍ର ରଖିଯାଇଥିଲା ତାର ଆୟତନ । ତାର ଆଖି ଆଉ ଅଧରର ଅବଶିଷ୍ଟ ରେଖାଗୁଡ଼ିକ ସତେ ବା ତାର ବୈଧବ୍ୟପୂର୍ବ ଜୀବନର କ୍ରୀଡ଼ାଚପଳ ଭଙ୍ଗିମାଗୁଡ଼ିକର ସ୍ମୃତିଲିପି ! ତାର ପଦଯୁଗଳର ଗତିରେ ଯେଉଁ ଛନ୍ଦ ଫୁଟୁଥିଲା ତାହା ସୂଚାଇ ଦେଉଥିଲା ଯେ, ଏକଦା ସେ ଥିଲା ଅପୂର୍ବ ଲୋଲ-ଯୌବନା, ଲାସ୍ୟମୟୀ ସୁନ୍ଦରୀ । ଆଉ ତାର କଣ୍ଠ ? ସେଥିରେ ହୁଏତ ସଙ୍ଗୀତ ମରି ଯାଇଥିଲା ମାତ୍ର ରହିଯାଇଥିଲା ତାର ଅନୁରଣନର ମୂର୍ଚ୍ଛନା ।

ସର୍ବଶେଷରେ ତାର ନାଁ—ଆଃ—ଭାରି ସୁନ୍ଦର ନାଁଟିଏ—ଇନ୍ଦୁରେଖା । ଏହି ଇନ୍ଦୁରେଖା ଲାଗି କେବଳ ମୁଁ ବୈଶାଖ ଆଉ ଜ୍ୟେଷ୍ଠ ଦୁଇଟି ମାସ କଟାଇଦେଲି ସହରରେ ମୋର ଭଣୋଇ ଘରେ । ତାରି ଲାଗି—କେବଳ ତାରି ଲାଗି—କେବଳ ତାରି ଲାଗି—ତାରି ସାନ୍ନିଧ୍ୟଲାଗି—ତାରି ପ୍ରେମ ଲାଗି—ନା-ନା ତାର ଲୋଭରେ······ ।

ସେଇ ପ୍ରଥମ ଦିନଟିର କଥା କହୁଛି । ଗୋଟିଏ ଉତ୍ତପ୍ତ ଦ୍ୱିପ୍ରହର । ମୁଁ ଗୋଟିଏ ନିର୍ଜନ ଘରେ ଖଟ ଉପରେ ଶୋଇଛି—ଭଲ ନିଦ ଲାଗି-ନାହିଁ—ଅସମ୍ଭବ ଗରମ । ଅଧା ନିଦ ଭିତରେ ମୁଁ ଏହି ବୈଶାଖୀ ଦ୍ୱିପ୍ରହରର ଅସହ୍ୟ ଗରମଟାକୁ ବି ଅନୁଭବ କରୁଛି । ହଠାତ୍ ମୋର କଣ୍ଠ, କାଖ, ଆଉ ପେଟରେ ମୁଁ ଶୀତଳ ମଳୟ ସ୍ପର୍ଶ ଅନୁଭବ କଲି । ପତଳା ନିଦ ଭାଜିଗଲା । ମୁଁ ଆସ୍ତେ ଆସ୍ତେ ଆଖି ମେଲିକରି କଣ ଦେଖିଲି ? ସେଇ ମୋର ବାଲ୍ୟକାଳର ବିଧବା ନାଣ୍ଟିଟିର କ୍ଷୁଧିତ ଗ୍ରହିଁାଣୀ । ମୋ ପାଖରେ ଲଦି ବସି ରହି ବିଞ୍ଚଣାରେ ମୋତେ ବିଞ୍ଚୁଛି ଆଉ ମୋର ମୁହଁକୁ ସେହି-ଭଳି କ୍ଷୁଧିତ ଆଖିରେ ଅନାଇଁ ରହିଛି । କିନ୍ତୁ ମୁଁ କଣ ଆଉ ଛୁଆ ହୋଇଛି ଯେ ଡରିବି ? ଏହି ଆଖି ଭଳି କେତେ କ୍ଷୁଧିତ ଆଖିରେ ମୁଁ ଶାନ୍ତିର ପ୍ରଲେପ ଲଗେଇ ଦେଇ ପାରିଛି । ମୁଁ ମୁଗ୍ଧ ହେଲି—ଉନ୍ମାଦିତ ହେଲି । ଯଉବନ-ଧନ ମଦ-ମତ୍ତ-ମନ ମୋର ଚଞ୍ଚଳ ହୋଇ ଉଠିଲା—ବ୍ୟଗ୍ର ହୋଇ ଉଠିଲା । ସମ୍ମୁଖରେ କାଙ୍ଗାଳିନୀ ଭିକ୍ଷାର୍ଥିନୀ କାମନାର ପାତ୍ର ଧରି କ୍ଷୁଧାକାତର ଆଖିରେ ଚାହିଁ ରହିଛି—ହେ ସଦାଶୟ, ଉଦାରଚିତ୍ତ, ଦୟାଶୀଳ ଯଉବନର ବଣିକ ! ଶୀଘ୍ର ତୁମର ଅଫୁରନ୍ତ ଯଉବନ ଭଣ୍ଡାର ତାର ଶୂନ୍ୟ ପାତ୍ରରେ ଢାଳି ଦିଅ—ଉଜାଡ଼ି ଦିଅ !

ମାତ୍ର ଭିତରର ବିଶୃଙ୍ଖଳ୍ୟକୁ ସଂଯତ କରି ମୁଁ ଖୁବ୍ ଧୀର ଭାବରେ ପଡ଼ି ରହି ଆସ୍ତେ ଆଖି ମେଲିକଲି । ମୋର ମୁଗ୍ଧ ଅରୁଣ ଦୃଷ୍ଟି ମଧ୍ୟରେ ତାର ଗ୍ରହିଣୀ ମିଳାଇଗଲା । କୌତୁକରେ ଟିକେ ସ୍ମିତ ହାସ୍ୟ କରି ମୁଁ ପୁଣି ଆଖି ବୁଜିଲି—ପୁଣି ଆଖି ମେଲିକଲି । ତାର ଆଖିରୁ ସେ ତୀକ୍ଷ୍ଣତା, ସେ ଉଗ୍ରତା ଉଭେଇ ଯାଇଛି । ବରଂ ତା ପରିବର୍ତ୍ତେ ଆସିଛି ଏକପ୍ରକାର ସ୍ନିଗ୍ଧତା, ପ୍ରସନ୍ନତା, ଅଧୀରତା । ମୁଁ ବୁଝିଲି ମୋର ଗ୍ରହିଣୀଠାରୁ ତାର ଗ୍ରହିଣୀ ପ୍ରତିଶ୍ରୁତି ପାଇଛି ଆଉ ବିଶ୍ୱାସ ମଧ୍ୟ କରିଛି । ତାର ଚକ୍ଷୁତାରକା ଦୁଇଟି ବିଶ୍ୱାସରେ ଉଜ୍ଜ୍ୱଳ ଓ ଶାନ୍ତ ।

ହସି ହସି ସେ ପାଟି ଖୋଲିଲା । (କି ସୁନ୍ଦର ସେ କଣ୍ଠ !! )

"ମୁଁ କେତେ ବିଞ୍ଚିଲିଣି !"

"ସତେ !"

"କନ୍ଧା ଜାଣିପାର ନାହିଁ ?"

"ବାଃ, ଜାଣି ପାରିଲେ ନାହିଁ—ଆଉ ନଦ ଗର୍ଜିଲ କେମିତ ?"

"ମୁଁ କିନ୍ତୁ ତୁମକୁ ନଦରେ ଶୁଆଇ ପକାଇବାକୁ ବସିଥିଲ ।"

"ସତେ କ୍ଷମାକର ରେଖା !"

ହଠାତ୍ ଚମକପଡ଼ି ସେ ମୋର ପାପୁଲିକୁ ଜୋର୍‌ରେ ମୁଠାଇ ଧରି ପୁଣି ଛାଡ଼ିଦେଲ ।

ମୁଁ ପୁଣି କହିଲି—"ମୋତେ କ୍ଷମାକର ରେଖା—ମୁଁ ବଡ଼ ଦୁଷ୍ଟ ଥିଲି । ମୋତେ ଶୁଆଇପକାଇବାକୁ ମୋର ମାଆ ନାନାବାୟା ଗୀତ ବୋଲିଲେ ମୁଁ ବରଂ ବେଶୀ ଖୁଜ୍‌ବୁଜ୍ ହୁଏ—ବେଶୀ ଗୋଳମାଳ କରେ ।"

"ଯାହା ମାଆ ପାରେନାହିଁ—ସେ କଥା କଣ ଆଉ କିଏ ପାରିବ ନାହିଁ ?"

"ହଁ—ପାରିବ । ଯାହା ମାଆ ପାରିନାହିଁ ସେ କଥା ମାଇପ ପାରେ—ନ ହେଲେ ଡାହାଣୀ ପାରେ । କିନ୍ତୁ ତୁମେ ଏ ଦୁଇଟି ମଧ୍ୟରୁ ନିଜକୁ କଣ ବୋଲି ଭାବୁଚ ?"

"ଯାଃ, ତୁମେ ବଡ଼ ଅଶ୍ଳୀଳ ! ଏ ଦୁଇଟାଯାକ ଶବ୍ଦ ମୋ ପକ୍ଷରେ କେତେ ଅଶ୍ଳୀଳ ତୁମେ ଜାଣି ପାରୁଛ ତ ? ମୁଁ ଆଶା କରୁ ନଥିଲି ଏତେ ଶୀଘ୍ର ତୁମେ ହଠାତ୍ ଏତେ ଅଶ୍ଳୀଳ ହୋଇ ଉଠିବ ବୋଲି ।"

"ଆହା—ରାଗି ଯାଉଛ କାହିଁକି ? ଏଥିରେ ଅଶ୍ଳୀଳତା ଆଉ କୋଉଠି ରହିଲ ? ମୋର କହିବା କଥା ହେଉଚି—ମୋତେ ଶୁଆଇ ପକାଇବାକୁ ଯାଇ ତୁମେ ବରଂ ମୋତେ ଉଠାଇ ଦେଲ—ଆଉ ସତେ ଶୀତଳ କରିବାକୁ ଯାଇ, ମୋତେ ବରଂ ତମେ ବେଶୀ ଗରମ୍ କରିଦେଲ ।"

ଏତକ କହି ମୁଁ ଟିକେ ହସିଦେଲି । ଆଉ କଣ କହିବାକୁ ଯାଉଛି, ସେ ମୋର ପାଟିକୁ ତାର ପାପୁଲିରେ ଚାପିଧରି ମୋ ଆଡ଼କୁ ଅଳ୍ପ ଝୁଙ୍କି ଆସି ମୋର ଗାଲ ଚୋଭ଼ି ଦେଲା ଆଉ ହସ କାନ୍ଦ ମିଶା ଗଳାରେ ନାକରେ କହିଲା ପରି କହିଲା "ଚୁପ୍ କର—ଚୁପ୍ କର କହୁଛି । ଇସ୍ କଣ ସବୁ କହୁଚ ? କି କଦର୍ଯ୍ୟ ବ୍ୟଞ୍ଜନା ତୁମ କଥା ଭିତରେ ? ଛି—ଛି—ଇସ୍ ! ଏମିତି ଲୋକ ନା ତୁମେ ?"

ସେ ଉଠିଗଲା । ମୁଁ ତାର ହାତଟିକୁ ଚଟ୍କିନା ଧରି ପକାଇ କହିଲି —"ନା—ନା ମତେ ବିଶ୍ୱାସ କର—ଖୁବ୍ ଭଲ ଲୋକ ମୁଁ । ଆଚ୍ଛା—ଆଚ୍ଛା —ଯାଉଚ ଯଦି ଯାଅ, ମାତ୍ର ଫେର୍ ଆସିବ । ମୋ ରାଣ—ଦେଖ ରାଣ ପକାଉଛି । ଆଉ ସେମିତି କଥା କହିବ ନାହିଁ । କଥା ଏତକରେ ସରିଗଲା । ଏଣିକି କାର୍ଯ୍ୟାରମ୍ଭ । ତୁମକୁ ମୋରାଣ—ନିଶ୍ଚୟ ଆସିବ ।"

ହସି ହସି ସେ ମୋର ଗାଲ ପୁଣି ଥରେ ଚୋଭ଼ି ଦେଲା, ଆଉ ଗୋଟିଏ ମାତ୍ର ଶବ୍ଦ କହି ସେ ଘର ଭିତରୁ ପଦାକୁ ବାହାରିଗଲା । ଶବ୍ଦଟି ହେଉଛି "ବଜାଲ୍ପ" ।

ସବୁ ପ୍ରଣୟର ଆରମ୍ଭ ଭଳି ଏହାର ଆରମ୍ଭରୁ ହିଁ ମୁଁ ତାର ପରିଣତି ବିଷୟରେ ନିଶ୍ଚିନ୍ତ ହେଲି । କ୍ରମେ ତା ସଙ୍ଗେ ମୋର ଘନିଷ୍ଠତା ମଧ୍ୟ ବଢ଼ି ଉଠିଲା । ମୁ କିନ୍ତୁ ସେହି ସୁଦିନଟିକୁ ଅପେକ୍ଷା କରୁଥିଲି, ଯେଉଁ ଦିନ କି ମୁଁ ମୋର ସମସ୍ତ ଦାନ ତାର ପଦତଳେ ଉତ୍ସର୍ଗ କରି ତା ର କ୍ଷୁଧାକୁ ଶାନ୍ତ କରିବ ଓ ନିଜେ ତୃପ୍ତ ହେବି । ଯେତେ ଯେଉଁଠି ଏହିଭଳି ପ୍ରଣୟ ବ୍ୟାପାରରେ ମୁଁ ଜଡ଼ିତ ହୋଇଛି ତାର ଆରମ୍ଭ ଦିନ ଓ ତାର ପରିଣତି ଦିନ, ଏହି ଦୁଇଟି ଦିନ ହିଁ ମୋତେ ଆନନ୍ଦ ଦେଇଛି । ବାକୀ ମଧ୍ୟବର୍ତ୍ତୀ ଦିନ ଗୁଡ଼ିକ ମୁଁ ପ୍ରାୟ ଛଟପଟ ହୁଏ । ମୋର ସେତେବେଳେ ଧାରଣା ଥିଲା—ଯାହା କିଛି ଆରମ୍ଭ ହେଲା ତାକୁ ଶୀଘ୍ର ଚରମ ପରିଣତିକୁ ନେଇଆସ । ବୃଥା ବିଳମ୍ବ କରି ସମସ୍ତ ନଷ୍ଟ କର ନାହିଁ । ବିଳମ୍ବରେ କେବଳ ସମସ୍ତ ନଷ୍ଟ ହୁଏ ନାହିଁ—ଆବେଗଟା ବି ନଷ୍ଟ ହୋଇଯାଏ । ଉତ୍ତେଜନାର ଚମକ ବେଶୀ ଦିନ ରହେ ନାହିଁ । ଝୋକରେ ଯେତେବେଳେ ପେଟ

କରୁଛୁ ସେତକବେଳେ ଚଞ୍ଚଳ ଖିଆ ସାରଦଅ । ନ ହେଲେ ଲୋକ ମଣିବ—ଆଉ ଖାଇ ହେବ ନାହିଁ । ଲୁହା ଯେତେବେଳେ ତାତକର ଲାଲ ଟକ୍‌ଟକ୍ ହୋଇଛି ସେତକବେଳେ ତାକୁ ପାଣିରେ ବୁଡ଼ାଅ—ସେ ପାଣି ପିଇବ । ଶୀତଳ ଲୁହା କ ପାଣି ପିଏ ? ବଳମ୍ବ ସବୁ ଶୀତଳ କରିଦିଏ ।"

ଦ୍ରୁତ ଚରମ ପରଣତ ଲାଗି ମୁଁ ଚେଷ୍ଟାରେ ଲଗିଗଲି । ମୋର ସେବାରେ ସେ ପ୍ରାଣପଣେ ଲଗିପଡ଼ିଥାଏ । ମୋର ଖାଇବାଠାରୁ ଶୋଇବା ପର୍ଯ୍ୟନ୍ତ ସବୁ କଥା ସେଇ ବୁଝେ । ମୁଁ ଶୋଇଲେ ମୋର ଗୋଡ଼ ଚପିଦଏ । ଆରାମରେ ଶୋଇବ ବୋଲି ମୋ ମୁଣ୍ଡ ବାଳକୁ ତାର ଲମ୍ବ କୋମଳ ଅଙ୍ଗୁଳମୁଣ୍ଡିକଦ୍ୱାରା ସାଉଁଲେ—ସଲ ସଲ କରେ ।

କମେ ଆମେ ଦୁହେଁ ପରସ୍ପରର ଦେହକୁ ଖୁବ୍ ସହଜ ଭାବରେ ଗ୍ରହଣ କରିନେଲୁ । ମୁଁ ତାର କୋଳରେ ମୁଣ୍ଡ ରଖି ଘୁମାଏ । ସେ ବ ମୋର ଆଲିଙ୍ଗନ ଭିତରେ ଆଖି ବୁଜି ନସ୍ତନ୍ଦ୍ରରେ ଅଶ୍ରାନ୍ତ ସୁଖ ଭୋଗକରେ । ମୁଁ ତାର ଅଧରରୁ ମଧୁ ଆସ୍ୱାଦନ କରେ । ସେ ମୋର ବକ୍ଷ ଉପରେ ଶୋଇ ଦେହକୁ ଉତ୍ତାପ ନଏ ଆଉ ଉତ୍ତାପ ଦଏ । ମୋର ଭୁଜ ଉପରେ ମୁହଁ ରଖି, ପ୍ରାୟ ଅଧେ ମୋ ଉପରେ ଶୋଇ ରହ, ଆଖିବୁଜି ସେ ମୋର ଦେହକୁ ଅନୁଭବ କରେ । ମୋର ମନେ ହୁଏ ସେ ଏହ ସବୁ ବାହ୍ୟକ ଉପଭୋଗରେ ବେଶ୍ ତୃପ୍ତ ହେଉଛି । ମୁଁ କନ୍ତୁ ବ୍ୟସ୍ତ ବକଳ ହୁଏ । ଏ ସବୁଥିରେ କ ମୋର ତୃପ୍ତି ଆସେ ? ମୁଁ ଚାହେଁ ପରଣତ—ଚରମ କ୍ଷିପ୍ର ପରଣତ—ତାପରେ ଯାଇ ଶ୍ରାନ୍ତ—ଆଉ ସେଇ ଶ୍ରାନ୍ତଟାଇ ଚରମ ଶାନ୍ତ । ସେଥିରେ ଜ୍ୱାଲା କମେ—ଆରାମରେ ନଦ ହୁଏ । କନ୍ତୁ ଏ ଖାଲ ଦୁକୁଦୁକୁ ଜଳିବା—ଦରସିଝା ହୋଇ କଞ୍ଚିଆ ହେବା । ମୁଁ ଦେବାକୁ ଚାହେଁ ଦାନ । ମୁଁ ହାତ ଟେକିଛି ଉପରକୁ—ତୁମେ ହାତ ପତାଅ ଅଞ୍ଚଳ ପତାଅ । ନହେଲେ ହାତ ମୋର ଯୋଳ ହୋଇ ପଡ଼ିବ । ଅବଶରେ ଶେଷକୁ ମୁଁ ଆଉ ହାତ ବ ଟେକ ପାରବ ନାହିଁ ।

ଇନ୍ଦୁ କନ୍ତୁ ଆଉ କଛି ଚାହୁଁ ନଥିଲା । ମୁଁ ତାର ଦେହର ଅଧିକାଂଶ

ଅଙ୍ଗକୁ ଅନୁଭବ କରୁଥିଲି । ସେ ଆପତ୍ତି କରୁ ନ ଥିଲା । ମୋର ଦେହ ତ ମୁଁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଦେଇଥିଲି ତାର ଚରଣ ତଳେ । କିନ୍ତୁ ସେଇ ଶେଷ କଥାଟି କହିଲେଇ ସେ ମୋତେ ଠେଲି ଦେଇ ଚାଲିଯାଏ । ମୋ ପାଖରୁ ନୀରବରେ ଉଠିଯାଏ । ମୁଁ ଉତ୍ତପ୍ତ ହୋଇ ଓଲଟ-ବକଲ ହୁଏ । ପ୍ରଥମେ ପ୍ରଥମେ ମୁଁ ଏ ସବୁ ସହି ଯାଉଥିଲି । କିନ୍ତୁ କ୍ରମେ ଏ ସବୁ ମୋର ଅସହ୍ୟ ହେଲା । ଏଇଟା କି ଭଲ ସ୍ତ୍ରୀ ଲୋକ ! ଏହା ଦେହରୁ କଣ ମରି-ଗଲାଣି ସମସ୍ତ କ୍ଷୁଧା, ସମସ୍ତ ଆବେଗ ?? ଏ ନିର୍ବେଦ ଦେହର ନା ମନର ? ତେବେ ଏ କଣ କେବଳ ଅଭିନୟ ? କିନ୍ତୁ କି ଲାଭ ତାର ଏଇ ଅଭିନୟ କରିବାରେ ? ତା' ଦେହରୁ କି ସମସ୍ତ ନିଆଁ ଲିଭିଗଲାଣି ? ତାର ଆଲିଙ୍ଗନରେ ଆଉ ଚୁମ୍ବନରେ ତଥାପି ଯେଉଁ ଟିକିକ ଉତ୍ତାପର ଆଭାସ ମୁଁ ପାଏ ସେଟା ପୁଣି କାହାର—ତା' ଦେହର ନା ମନର ? ତାର ଦେହ କଣ କେବଳ ପାଉଁଶ—ଆଉ ସେହି ପାଉଁଶ ତଳେ ଜୁକୁଜୁକୁ ହୋଇ ଜଳୁଚି ତାର ମନର ନିଆଁ ? ଦେହର ଉପସ୍ଥିତିରେ ଦେହର କ୍ଷୁଧା ଜାଗିଉଠେ । ମାତ୍ର ଏ ଯେ କେବଳ ଉପସ୍ଥିତିରେଇ ତୃପ୍ତ ! ସେ ଯେ କ୍ଷୁଧିତା—ସନ୍ଦେହ ନାହିଁ । ମାତ୍ର କି ଭଲି ତାର କ୍ଷୁଧାର ସ୍ୱରୂପ ??

ସେଦିନ ଦ୍ୱିପ୍ରହରରେ ସେ ମୋର ଗୋଡ଼ ଚପି ଦେଉଥିଲା ବେଳେ ମୁଁ ଆଉ ନିଜକୁ ସଂଯତ ରଖି ପାରିଲି ନାହିଁ । ମୋର ଶିରା ପ୍ରଶିରାଗୁଡ଼ିକ ତାତି ଉଠିଲେ । ମୁଁ ହଠାତ୍ ତାକୁ ବଳାତ୍କାରରେ ଭିଡ଼ି ଧରି ମୋ ଆଡ଼କୁ ଆଉଜାଇ ଆଣିଲି ଏବଂ ସଙ୍ଗେ ସଙ୍ଗେ ସେଇ ଶେଷ କଥାଟି ମାଗୁଣି କଲି—"ତୁମ ଗୋଡ଼ ଧରୁଚି—ମୋତେ ଆଉ ଏଥରକ ମନା କରନାହିଁ—ମୁଁ ପାଗଳ ହୋଇଯିବି······"

ସଙ୍ଗେ ସଙ୍ଗେ ଜୋର କରି ସେ ନିଜକୁ ମୋଠାରୁ ସ୍ୱାଭାବିକ ଅବସ୍ଥାକୁ ଛଡ଼ାଇ ନେଲା, ଆଉ ମୋର ଗୋଡ଼ ଦୁଇଟାକୁ ଧରି ତା' ମୁଣ୍ଡରେ ଲଗାଇ ଅତି ଅନୁନୟ କରି କହିଲା—"ଛି-ଛି-ମୋ ଧନ—ତୁମ ଗୋଡ଼ ତଳେ ପଡ଼ୁଛି—ନା-ନା-ଛି-ଛି-ଇସ୍ ! ତୁମେ କେଡ଼େ ଅବୋଧ !! ଓଃ—ନାହିଁ-ନାହିଁ-ଛି-ଛି ! ବାଛି ଦେଉଛି—ସୁନା ପିଲାଟି ପରି ଶୋଇପଡ଼ ମୋର ଧନ !"

ବିଫଳ ମନରେ ମୁଁ ନିଶ୍ଚେଷ୍ଟ ହୋଇ ବିଛଣାରେ ପଡ଼ିରହିଲି । ଘର୍ମାକ୍ତ ହୋଇ ନିଃଶ୍ୱାସ ଛାଡ଼ୁଛି । ପାଟି ମେଲା ହୋଇ ଯାଉଛି । ସମଗ୍ର ଦେହ ମଧ୍ୟରେ ଜ୍ୱାଳା । ସେ ପୁଣି ମୋର ଗୋଡ଼ ପାଖକୁ ଯାଇ ମୋର ଗୋଡ଼ ମୋଡ଼ି ବସିଲା ଆଉ ସହଜ ଭାବରେ କହିଲା—"ଏଇମିତି, ଠିକ୍ ଏଇମିତି ସେ ପିଲାଙ୍କ ଘର ଦୁଆର ଯେ, କଣ ସହଜରେ ବୁଝିବେ ? ଭାରି ଜିଦ୍‌ଖୋର ।"

ମୁଁ ଚମକି ପଡ଼ିଲି । ପଚାରିଲି—"ସେ କିଏ ? କାହା କଥା କହୁଚ ?"

ସେ ପୁଣି ନୀରବ ହୋଇଗଲା—ଗମ୍ଭୀର ହୋଇ ଉଠିଲା । କେତେକ ମୁହୂର୍ତ୍ତ ମଧ୍ୟରେ ତାର ଆଖି ଛଳଛଳ ହୋଇ ଉଠିଲା । ମୁଁ ଚମକି ପଡ଼ିଲି । ବୁଝି ପାରିଲି ରେଖାର 'ସେ' କିଏ । ନିଜର ଈର୍ଷାରେ, ନିଜର ଚିନ୍ତାରେ ମୁଁ ସଜାଗ ହୋଇ ଉଠିଲି । ଯେଉଁ ଦୀପଟି ଦିନେ ତାର ଆଖି ଆଗରେ ଓ ବାହାରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା ସେ ଦୀପ ଆଜି ବାହାରେ ଲିଭି ଯାଇଛି ସତ୍ୟ କିନ୍ତୁ ବାହାରେ ଲିଭିଯାଇ ସତେ ବା ଆଜି ସେ ଦୀପ ଶହେ ଗୁଣ ତେଜରେ ଦାଉ ଦାଉ ହୋଇ ଜଳୁଛି ତାର ଅନ୍ତର ଭିତରେ !! ସେ ଦୀପ-ସ୍ମୃତିର ଶିଖା ତାର ଅନିର୍ବାଣ । ସେହି ଦୀପର ଅସହ୍ୟ ତେଜ ମୋ ପାଦରେ ହଠାତ୍ ଚୁହିଁକନା ଲଗିଲା । ମୁଁ ତା' କୋଳରୁ ମୋର ଗୋଡ଼ କାଢ଼ି ଆଣିଲି । ସଙ୍ଗେ ସଙ୍ଗେ ସେ ପୁଣି ଭାବ ପରିବର୍ତ୍ତନ କରି ମୋ ଉପରକୁ ଆଉଜି ଆସିଲା ।

"ଛି-ଛି-ଏତେ ଚଞ୍ଚଳ ଏମିତି ରାଗିଗଲ ? ମୋ ଧନ—ମୋ ସୁନା, ଦିଅ—ଚିପିଦିଏ ଗୋଡ଼ । ମୋଡ଼ି ଦିଏ—ଶୋଇପଡ଼ ଚଞ୍ଚଳ ।"

ସେଇ ଦୀପର ତେଜ ପୁଣି ଥରେ ମୋର ପାଦରେ ଚୁହିଁକନା ଲଗିଲା । ମୁଁ ବିରକ୍ତିରେ ନିଆଁ ଲଗିବା ଭଳି ଚଟ୍‌କନା ଗୋଡ଼ଟା ଟାଣି ଆଣିଲି, ଆଉ ମୋର ଗୋଡ଼ଟା ମୋ ଅଜାଣତରେ ଗୋଇଠା ଭଳି ତାର ମୁହଁରେ ବାଜିଲା ।

କିନ୍ତୁ ସମସ୍ତ ମୋ ଆଡ଼କୁ ଦୃଢ଼ ଭାବରେ ଚାହିଁ ରହି ସେ ମୋ ପାଖରୁ ଉଠିଗଲା ।

ସେ ଚାଲିଗଲା ।

ମୋ ମନରେ ଆଶଙ୍କା ସୃଷ୍ଟି କରି ସେ ଚାଲିଗଲା । ଆଉ କଣ ସେ ଆସିବ ନାହିଁ ? ସେ କଣ ମୋତେ ଘୃଣା କରି ଚାଲିଗଲା ? ଘୃଣା ? ମୁଁ ତାର ଘୃଣାର ପାତ୍ର ହେଲି । ଶେଷରେ ? ମୋ ଜୀବନରେ ଏ ଘଟଣା ଗୋଟେ ବ୍ୟତିକ୍ରମ !! ଏହିଭଳି ଯେତେ ବ୍ୟାପାର ମୋ ଜୀବନରେ ଘଟିଛି ସବୁଥିରେ ମୁଁ ତାର ଆରମ୍ଭରୁ ହିଁ ପରିଣତି ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ଉଠେ । ଶେଷରେ ସଫଳତା ହୁଏ ମୋର କରଗତ । କିନ୍ତୁ ଏଇ ଆଧୁନିକା ଉଚ୍ଚଶିକ୍ଷିତା ବିଧବା ଇନ୍ଦୁରେଖା !! ଶେଷରେ ମୋତେ ଘୃଣା କରି ଗଲା ? ମୋର ଗଣନା ବା ବିଚାରରେ ତେବେ କଣ କୋଉଠି ଭୁଲ ରହି ଯାଇଛି ?

ସେ ଦିନଟି ଏହି ଭଳି କଟିଲା । ଇନ୍ଦୁ ସେ ଦିନ ମୋ ପାଖକୁ ଆଉ ଆସିନାହିଁ । ଗମ୍ଭୀର ଭାବରେ ସେ ତାର ଦୈନନ୍ଦିନ କାର୍ଯ୍ୟ କରି ଚାଲିଚି । ତା' ପାଖ ଦେଇ ମୁଁ ବହୁବାର ଯିବା ଆସିବା କଲି, ମାତ୍ର ସେ ମୋ ଆଡ଼କୁ ଚାହିଁଲା ବି ନାହିଁ । ଅଲକ୍ଷ୍ୟରେ ତାର ମୁହଁକୁ ଚାହିଁଲି ମାତ୍ର ସେ ମୁହଁରେ ଘୃଣା ନାହିଁ; ବରଂ ସେ ମୁହଁଟି ଅଧିକ ବିଷାଦ-ଗମ୍ଭୀର ହୋଇ ଉଠି ଆହୁରି ସୁନ୍ଦର ଦିଶୁଛି । ଇନ୍ଦୁକୁ କଣ ତେବେ ଭୁଲ ବୁଝିଲି ?

ବିଫଳ ମନରେ ମୁଁ ନିଶ୍ଚେଷ୍ଟ ହୋଇ ବିଛଣାରେ ପଡ଼ିରହିଲି । ଫଁ ଫଁ ହୋଇ ନିଃଶ୍ୱାସ ଛାଡ଼ୁଛି । ଧାତି ମେଳ ହୋଇ ଯାଇଛି । ସମଗ୍ର ଦେହ ମଧ୍ୟରେ ଜ୍ୱାଳା । ସେ ପୁଣି ମୋର ଗୋଡ଼ ପାଖକୁ ଯାଇ ମୋର ଗୋଡ଼ ମୋଡ଼ି ବସିଲା ଆଉ ସହଜ ଭାବରେ କହିଲା—"ଏଇମିତି, ଠିକ୍ ଏଇମିତି ସେ ପିଲାଙ୍କ ପରି ହୁଅନ୍ତି ଯେ, କଣ ସହଜରେ ବୁଝିବେ ? ଭାରି ଜିଦ୍‌ଖୋର ।"

ମୁଁ ଚମକି ପଡ଼ିଲି । ପଚାରିଲି—"ସେ କିଏ ? କାହା କଥା କହୁଚ ?"

ସେ ପୁଣି ନୀରବ ହୋଇଗଲା—ଗମ୍ଭୀର ହୋଇ ଉଠିଲା । କେତେକ ମୁହୂର୍ତ୍ତ ମଧ୍ୟରେ ତାର ଆଖି ଛଳଛଳ ହୋଇ ଉଠିଲା । ମୁଁ ଚମକି ପଡ଼ିଲି ।

ଭୃଙ୍ଗି ପାଉଲ୍ ରେଖାର 'ସେ' କଏ । ନଜର ନିସ୍ତାରେ, ନଜର ତନ୍ଦ୍ରାରେ ମୁଁ ସଜାଗ ହୋଇ ଉଠିଲି । ଯେଉଁ ଦୀପଟି ଦିନେ ତାର ଆଖି ଆଗରେ ଓ ବାହାରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା ସେ ଦୀପ ଆଜି ବାହାରେ ଲିଭି ଯାଇଛି ସତ୍ୟ କିନ୍ତୁ ବାହାରେ ଲିଭିଯାଇ ସତେ ବା ଆଜି ସେ ଦୀପ ଶହେ ଗୁଣ ତେଜରେ ଦାଉ ଦାଉ ହୋଇ ଜଳୁଛି ତାର ଅନ୍ତର ଭିତରେ !! ସେ ଦୀପ-ସ୍ମୃତିର ଶିଖା ତାର ଅନିର୍ବାଣ । ସେହି ଦୀପର ଅସହ୍ୟ ତେଜ ମୋ ପାଦରେ ହଠାତ୍ ଗୁଉଁକିନା ଲଗିଲା । ମୁଁ ତା' କୋଳରୁ ମୋର ଗୋଡ଼ କାଢ଼ି ଆଣିଲି । ସଙ୍ଗେ ସଙ୍ଗେ ସେ ପୁଣି ଭାବ ପରିବର୍ତ୍ତନ କରି ମୋ ଉପରକୁ ଆଉଜି ଆସିଲା ।

"ଛି-ଛି-ଏତେ ଚଞ୍ଚଳ ଏମିତି ରାଗିଗଲ ? ମୋ ଧନ—ମୋ ସୁନା, ଦିଅ—ବଢ଼ାଅନା ଗୋଡ଼ । ମୋଡ଼ି ଦିଏ—ଶୋଇପଡ଼ ଚଞ୍ଚଳ ।"

ସେଇ ଦୀପର ତେଜ ପୁଣି ଥରେ ମୋର ପାଦରେ ଗୁଉଁକିନା ଲଗିଲା । ମୁଁ ବିରକ୍ତିରେ ନିଆଁ ଲଗିବା ଭଳି ଚହ୍କିନା ଗୋଡ଼ଟା ଟାଣି ଆଣିଲି, ଆଉ ମୋର ଗୋଡ଼ଟା ମୋ ଅଜାଣତରେ ଗୋଇଠା ଭଳି ତାର ମୁହଁରେ ବାଜିଲା ।

କିଛି ସମୟ ମୋ ଆଡ଼କୁ ଦୃଢ଼ ଭାବରେ ଚାହିଁ ରହି ସେ ମୋ ପାଖରୁ ଉଠିଗଲା ।

ସେ ଚାଲିଗଲା ।

ମୋ ମନରେ ଆଶଙ୍କା ସୃଷ୍ଟି କରି ସେ ଚାଲିଗଲା । ଆଉ କଣ ସେ ଆସିବ ନାହିଁ ? ସେ କଣ ମୋତେ ଘୃଣା କରି ଚାଲିଗଲା ? ଘୃଣା ? ମୁଁ ତାର ଘୃଣାର ପାତ୍ର ହେଲି ଶେଷରେ ? ମୋ ଜୀବନରେ ଏ ଘଟଣା ଗୋଟେ ବ୍ୟତିକ୍ରମ !! ଏହିଭଳି ଯେତେ ବ୍ୟାପାର ମୋ ଜୀବନରେ ଘଟିଛି ସବୁଥିରେ ମୁଁ ତାର ଆରମ୍ଭରୁ ଇ ପରିଣତି ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ଉଠେ । ଶେଷରେ ସଫଳତା ହୁଏ ମୋର କରଗତ । କିନ୍ତୁ ଏଇ ଆଧୁନିକା ଉଚ୍ଚଶିକ୍ଷିତା ବିଧବା ଇନ୍ଦୁରେଖା !! ଶେଷରେ ମୋତେ ଘୃଣା

କଣ ଗଲ ? ମୋର ଗଣନା ବା ବିଚାରରେ ତେବେ କଣ କୋଉଠି ଭୁଲ ରହି ଯାଉଛି ?

ସେ ଦିନଟି ଏହିଭଳି କଟିଲା । ଇନ୍ଦୁ ସେ ଦିନ ମୋ ପାଖକୁ ଆଉ ଆସିନାହିଁ । ଗମ୍ଭୀର ଭାବରେ ସେ ତାର ଦୈନନ୍ଦିନ କାର୍ଯ୍ୟ କରି ଚାଲିଛି । ତା' ପାଖ ଦେଇ ମୁଁ ବହୁବାର ଯିବା ଆସିବା କଲି, ମାତ୍ର ସେ ମୋ ଆଡ଼କୁ ଚାହିଁଲା ବି ନାହିଁ । ଅଲକ୍ଷ୍ୟରେ ତାର ମୁହଁକୁ ଚାହିଁଲି ମାତ୍ର ସେ ମୁହଁରେ ଘୃଣା ନାହିଁ; ବରଂ ସେ ମୁହଁଟି ଆହୁରି ବିଷାଦ-ଗମ୍ଭୀର ହୋଇ ଉଠି ଆହୁରି ସୁନ୍ଦର ଦିଶୁଛି । ଇନ୍ଦୁକୁ କଣ ତେବେ ମୁଁ ଭୁଲ ବୁଝିଲି ?

ସେ ଦିନ ରାତିରେ ବି ଇନ୍ଦୁ ମତେ ଖାଇବାକୁ ଦେବାକୁ ଆସିଲା ନାହିଁ । ମୋତେ ଦେଖା ବି ଦେଲାନାହିଁ । ମୋ ଭଉଣୀ ମୋତେ ଖାଇବାକୁ ଡାକିଲା । ମାତ୍ର ଖାଇବାକୁ ମୋର ଇଚ୍ଛା ହେଲାନାହିଁ । ମୁଁ କାହିଁକି ମନ ଭିତରେ ଖୁବ୍ ଦବିଗଲି । ଏକ ପ୍ରକାର ପରାଜିତ ଭାବ ମତେ ଗ୍ରାସ କଲା । ଆଜି ପର୍ଯ୍ୟନ୍ତ ମୋ ହାତଟେକା ଦାନକୁ କେହି ଭିକ୍ଷାର୍ଥୀ ପ୍ରତ୍ୟାଖ୍ୟାନ କରିନାହିଁ । କିନ୍ତୁ କି ସ୍ପର୍ଦ୍ଧା ଏଇ ଇନ୍ଦୁରେଖାର ! କେତେ ସହଜରେ ସେ ମୋର ସମସ୍ତ ପୁରୁଷକାର ଓ ଅହମିକାକୁ ଧକାଧକ କଲା !! ସେ ଦିନ ରାତିରେ ମୁଁ କିଛି ଖାଇଲି ନାହିଁ । ପେଟ ଖରାପ ଅଛି ବୋଲି କହି ସେ ଦିନ ଉପବାସ ରହିଲି ।

ତା ଆରଦିନ ସକାଳେ ମୋର ଭଉଣୀ ଆସି ମୋତେ ପଚାରିଲା— "ତୁ ଇନ୍ଦୁକୁ କଣ କହିଲୁ ଯେ ସେ କାଲି ରାତିରୁ ଖାଇନାହିଁ—ଖାଲି କାନ୍ଦୁଛି ?"

ମୁଁ କିଛି ଉତ୍ତର ଦେଲି ନାହିଁ । ରେଖା କିନ୍ତୁ କାଲିଠାରୁ ଖାଇନାହିଁ କାହିଁକି—ଆଉ କାନ୍ଦୁଛି ବା କାହିଁକି ? ମୋର ତ ବରଂ କାନ୍ଦିବାର କଥା, କାରଣ କି ନା ପରାଜୟ ତ ମୋର ? ତେବେ କଣ ଇନ୍ଦୁ ମୋର ସେଇ କୁତ୍ସିତ ପ୍ରସ୍ତାବରେ ଖୁବ୍ ବେଶୀ ଅପମାନିତ ବୋଧ କରିଛି ? ମନ ଭିତରେ ମୋର ନାନାବିଧ ଆନ୍ଦୋଳନ । ମୁଁ ତାକୁ ଡାକିଲି । ମୋର ମନ ବି ତରଳି-ଗଲା ।

ସେ ଅସିଲା । ମୋର ଝଟ ଖୁସ୍ ଧରି ତଳକୁ ମୁହଁ ପୋତି ସେ ଠିଆ-ହେଲା । କଣ କହିବ ସେ କଥା ଆଗରୁ ସ୍ଥିର କରି ନଥିଲା, ତେଣୁ କିଛି ସମୟ ଦୁହେଁଯାକ ନୀରବ ରହିଲୁ । ଶେଷରେ କଥା ଆରମ୍ଭ କରି ମୁଁ କହିଲି—"ରେଖା ! ତୁମେ କାଲି ସିଧାଠାରୁ ଖାଇନାହିଁ । କି ଦୁଃଖର କଥା ଏ କହି ତ !"

ସେ କିଛି ଉତ୍ତର ଦେଲା ନାହିଁ । କେବଳ ତଳକୁ ମୁହଁ ପୋତି ଠିଆ ହୋଇ ରହିଲା । ପୂର୍ବର ସମସ୍ତ ଆଶଙ୍କା ମୋର ଉଭେଇ ଗଲା । ଏହି କମନୀୟ ଓ କମନୀୟ ଦୃଶ୍ୟ ବରଂ ମୋ ମନରେ ଅଧିକ ପ୍ରତ୍ୟୟ ଜାଗ୍ରତ କରାଇଦେଲା । ମୁଁ ତାର ଚିବୁକଟି ଧରି ସ୍ନେହ-କାରୁଣ୍ୟ କଣ୍ଠରେ କହିଲି—"ମୋ ସୁଣ୍ଟ ରେଖା—ମତେ କ୍ଷମାକର । ତୁମେ ଜାଣିନା ମୁଁ ତୁମକୁ କେତେ ଭଲପାଏ !! ମୋ ସୁଣ—ରେଖା ମୋ ସୁଣ—ଦେଖି ସୁହଁ ତ—ସୁହିଲ ଦେଖି ମୋ ମୁହଁକୁ—ଇସ୍ କି ଶୁଖିଲା ଦିଶୁଚ ତୁମେ ଆଜି !!"

କଣ ହେଲା ତାର କେଜାଣି ଝଡ଼ପରି ସେ ମୋର ଗ୍ରୀବାରେ ଲଟେଇ ପଡ଼ିଲା—ଆଉ ସେ କି କାନ୍ଦଣା !! ସେ କି ଶୋକ !! ସେ କି ଆବେଗଚଞ୍ଚଳ ଉଚ୍ଛ୍ୱାସ !! ମୁଁ ତାକୁ ମୋର ଦୃଢ଼ ଆଲିଙ୍ଗନ ଭିତରେ ଆଶ୍ରୟ ଦେଇ ତାର ମୁଣ୍ଡକୁ ଧୀରେ ଧୀରେ ଆଉଁସିଲି । କେଜାଣି କାହିଁକି ଏଇ ଆତ୍ମସମର୍ପିତା, ସ୍ନେହକାତର, ଆଶାହତା, ବିଧବା ଯୁବତୀଟି ପ୍ରତି ମୋ ମନ ସହାନୁଭୂତିରେ ତରଳିଗଲା । ମୋ ଆଖିରୁ ଧାରାଶ୍ରାବଣ ପରି ଝରଝର ଲୁହ ଝରିଲା ଆଉ ସେହି ଲୁହର ବନ୍ୟାରେ ମୋ ସ୍ନାୟୁ ଭିତରୁ ସମସ୍ତ କାମନା ବାସନାର ଅଗ୍ନି ହଠାତ୍ ଲିଭିଗଲା । ଉତ୍ତପ୍ତ କାମନା ପରିବର୍ତ୍ତେ ଏକ ଅହେତୁକ କାରୁଣ୍ୟଶୀତଳ ସ୍ନିଗ୍ଧ ପ୍ରେମାନୁଭୂତିରେ ମୁଁ ରୋମାଞ୍ଚିତ ହୋଇ ଉଠିଲି । କୌଣସି ନାରୀଠାରୁ ମୁଁ ଏହି ଶୀତଳ ମଧୁର ଅନୁଭୂତି ପାଇନାହିଁ । ଅନ୍ୟମାନେ ଅନ୍ୟ ମୁହୂର୍ତ୍ତରେ ମତେ ଡକାଇ ଦେଇଛନ୍ତି—ଫଳରେ ମୋ ଭିତରେ ହିଂସ୍ର କାମନା ମାତ୍ର ଉଠିଛି । କିନ୍ତୁ ରେଖାର ସ୍ପର୍ଶ ଅଜ ସତେ ବା ମତେ ସଂପୂର୍ଣ୍ଣ ଏକ ନୂତନ ଅନୁଭୂତିରେ ଅନୁପ୍ରାଣିତ କଲା । ପ୍ରେମର ଉତ୍ତପ୍ତତା ସୁଖକର ମାତ୍ର ପ୍ରେମର ଏ ଶୀତଳତା ପୁଣି ଏଡ଼େ ଶାନ୍ତିଦାୟକ !

ଏତେ ତୃପ୍ତି କର !!

ତାର ଘନ କେଶ ରାଶିର ତରଙ୍ଗ ମଧ୍ୟରେ ମୋର ଆଖିର ଲୁହ ଭିଜିଗଲା । ସେ ଜାଣିଲା ଯେ ମୁଁ କାନ୍ଦୁଛି । ଧୀରେ ମୁହଁ ଟେକି ସେ ମୋ ମୁହଁକୁ ଚାହିଁଲା । ତାର ଆଖିରେ ଅଶ୍ରୁ । ଭଙ୍ଗା କଣ୍ଠରେ ସେ ପଚାରିଲା—"ତମେ କାନ୍ଦୁଚ ?"

"ତମେ ଯେ କାନ୍ଦୁଚ ରେଖା !"

ମୋର କଥା ଶୁଣି ସେ ପୁଣି ଉଚ୍ଛ୍ୱସିତ ହୋଇ କାନ୍ଦି ଉଠିଲା । ତାର ଶ୍ରେଷ୍ଠ ମୁହଁଟିକୁ ମୋର ଛାତିରେ କୋଳରେ ଚାପିରଖି ସେ କୋହରେ ଫାଟି ପଡ଼ିଲା । ତାର ନିଃଶ୍ୱାସର ଝଡ଼ ଆଉ ଲୁହର ବର୍ଷାରେ ମୋର ଛାତି ଭାଙ୍ଗି ପଡ଼ିଲା ଆଉ ଭାସିଗଲା । ମୁଁ ତାର ଆଖିରୁ ଲୁହ ପୋଛିଦେଲି ଆଉ ତାର ମୁଣ୍ଡକୁ ସାଉଁଳି ସାଉଁଳି ଖୁବ୍ ଧୀର ଗଳାରେ ଅପରାଧୀ ଭଳି କହିଲି— "ମୋତେ କ୍ଷମା କରିବ ନାହିଁ ରେଖା ? ମୋର ସେଇ ପ୍ରସ୍ତାବ ଯଦି ତୁମକୁ ଏତେ କଷ୍ଟ ଦେଇଛି ତେବେ ସେଇ କୁତ୍ସିତ ପ୍ରସ୍ତାବଟାକୁ ଭୁଲିଯାଅ —ଆଉ ମତେ—ମତେ ବି ଭୁଲିଯାଅ ରେଖା । ଶେଷରେ ମତେ ବି— ହଁ—ହଁ—"

ଆଉ କହି ପାରିଲି ନାହିଁ । ମୋର ଆଖିରେ ପୁଣି ଲୋତକର ପ୍ଲାବନ ଓ କଣ୍ଠ ଗଦ୍‌ଗଦ୍ ।

"ମୋତେ ଭୁଲିଯାଅ ରେଖା । ମୁଁ ତୁମର ବିଶ୍ୱାସ ହରାଇଛି । ଆଉ ମୁଁ ତୁମକୁ କଷ୍ଟ ଦେବାଲାଗି ଏଠି ରହିବି ନାହିଁ । କାଲି ସକାଳେ ମୁଁ ଏଠୁ ଚାଲିଯିବି—ଚାଲିଯିବି—ଚିରଦିନ ଲାଗି ଚାଲିଯିବି । ମୋତେ ଖାଲି ତୁମେ କ୍ଷମାକର । ଏତିକି କେବଳ ମୁଁ ଯିବା ବେଳେ ତୁମଠାରୁ ଶୁଣିବାକୁ ଚାହୁଁଛି ।"

ଚକିତା ହରିଣୀ ଭଳି ସେ ମୋ କୋଳରୁ ଉଠି ବସିଲା । ମୋର ସମ୍ମୁଖରେ ଠିଆ ହୋଇ ମୋର ଦୁଇ କାନ୍ଧରେ ହାତ ରଖି ସେ ଉଚ୍ଛ୍ୱସିତ ହୋଇ କହି ଉଠିଲା—"ସେତିକି—ସେତିକି କୁହନାହିଁ ମୋ ଧନ ! ମୁଁ ଜାଣେ ତୁମେ ଦିନେ ଯିବ । ସବୁଦିନେ ତ ତୁମେ ଏଠି ରହନ୍ତ ନାହିଁ ?

ମୁଁ ଅଲକ୍ଷଣୀ କଣ ତୁମକୁ ସବୁଦିନେ ଧରି ରଖି ପାରିବି ? କିନ୍ତୁ କୁହନାହିଁ ସେ କଥା ତୁଣ୍ଡରେ । ଯିବା ପୂର୍ବରୁ ମୋତେ ଜଣାଇ କରି ଯିବ ନାହିଁ । ମୋ ଅଜାଣତରେ ଦିନେ ହଠାତ୍ ଚାଲିଯିବ । ମୁଁ ଭାବିବି ଆଜି ଯେ ଯାଉଛି ସେ ହୁଏତ କାଲି ପୁଣି ଫେରି ଆସିବ—ହୋଇପାରେ ଅନ୍ୟ ରୂପରେ । କିନ୍ତୁ ଯିବ ତ ତୁମେ ନିଶ୍ଚୟ—କିନ୍ତୁ ସୁନା ମୋର—ମତେ ମନେ ରଖିବନାହିଁ ?"

"କିନ୍ତୁ ଆଜି ଏତେ କଥା କାହିଁକି ରେଖା ? ମୁଁ ତ ତୁମ ମନରେ ଏତେ ଦିନଧରି କେବଳ କଷ୍ଟହିଁ ଦେଲି ।"

"ସୁଖ କଣ କମ୍ ଦେଇଛ ?"

"କି ସୁଖ ଆଉ ଦେଲି ? ଯେଉଁ ସୁଖ ଦାନ କରିବି ବୋଲି ହାତ ଟେକିଲି—ସେ ତ ତୁମକୁ ଏତେ କଷ୍ଟ ଦେଲା !"

"ମୁଁ ତ ସେ ସୁଖ ଚାହୁଁ ନ ଥିଲି । ମୁଁ ଯାହା ଚାହୁଁଥିଲି ତା ତମେ ମତେ ଦେଇଛ—ମୁଁ ପାଇଛି—ପ୍ରଚୁର ପାଇଛି ।"

"ତୁମେ କଣ ଚାହୁଁଥିଲ ?"

"ପ୍ରତିଶ୍ରୁତି ।"

"କିନ୍ତୁ କାହାର ପ୍ରତିଶ୍ରୁତି ରେଖା ?"

"ଦାନର ନୁହଁ ନିଶ୍ଚୟ—ଦାତାର । ତୁମେ କଣ ଭାବଛ—ମୋର ଦେହର ଆଉ ସେ କ୍ଷୁଧା ଅଛି ? ଥିଲା ନିଶ୍ଚୟ । କିନ୍ତୁ କେତେଦିନ ବା ରହନ୍ତା ? ସେ କ୍ଷୁଧା ମରିଯାଇଛି । କ୍ଷୁଧା ଅଛି ମୋର ମନରେ । ତୁମେ ତାକୁ ତୃପ୍ତ କରିଛ । ତୁମର 'ରେଖା' ଡାକରେ ମୁଁ ସେଇ ଦୂର ଅତୀତର ଅର୍ଦ୍ଧବିସ୍ମୃତ ମଧୁରଧ୍ୱନିଟିର ପ୍ରତିଧ୍ୱନି ଶୁଣିଛି ସେହି କଣ୍ଠ—ଅବିକଳ ସେହି କଣ୍ଠ—ସେହି ଧ୍ୱନି । ଉଚ୍ଚ-ଶିକ୍ଷା ପାଇଥିଲେ ମଧ୍ୟ ମୋର ନିଜର ଇଚ୍ଛାରେ ମୁଁ ପତିବରଣ କରି ନ ଥିଲି । ମାତ୍ର ବର୍ଷକ ମଧ୍ୟରେ ମୁଁ ତାଙ୍କ ମୁହଁକୁ ବି ଦିନେ ଭଲ କରି ଅନାଇଁ ଦେଖିନାହିଁ । ମାତ୍ର ସେ କଣ୍ଠଟି ମୋର ପରିଷ୍କାର ମନେଅଛି । ସେଇ ଯୋଉଦିନ ଆମର ପହିଲି ମିଳନ ବାସର ପ୍ରଦୀପଟିକୁ ତେଜି ଦେଇ ମୋତେ ଛାତିକୁ ଆଉଜାଇ ସେ ଡାକିଲେ—'ରେଖା !!' ଓଃ—କି ସୁନ୍ଦର

—କି ମଧୁର ! ଏଇ ପଦକ ଡାକ ଭିତରେ ମୁଁ ସତେ ବା ତାଙ୍କ ହୃଦୟକୁ ବୁଝିପାରିଲି । ଏଇ 'ରେଖା' ଡାକଟି ସତେ ବା ତାଙ୍କର ନୂତନ ଆବିଷ୍କାର । କେହି ମତେ ସେ ନାମରେ ଡାକି ନାହାନ୍ତି । ସମସ୍ତେ ତ ଡାକନ୍ତି 'ଇନ୍ଦୁ' ବୋଲି ! ପ୍ରେମ କଣ ଆଗରୁ ଜାଣି ନ ଥିଲି । ସେଦିନ ଏଇ 'ରେଖା' ଡାକରେ ସତେ ବା ପ୍ରେମର ଗମ୍ଭୀର ପ୍ରତିଶ୍ରୁତି ସେ ମତେ ଦେଲେ । ସେଦିନ ନୂଆକରି ଜାଣିଲି ପ୍ରେମ କଣ—ପ୍ରଣୟ କଣ—ଆଉ ଗୋଟିଏ ମାତ୍ର ଶବ୍ଦର ଉଚ୍ଚାରଣରେ ବି କିପରି ସେ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇପଡ଼େ !!

ତା'ପରେ—ତା'ପରେ—ଆଉ ଦିନେ, ସେ ଦିନର ସେହି କାଳସନ୍ଧ୍ୟା—ତାଙ୍କ ପାଦ ତଳେ ବସି ତଳକୁ ମୁହଁ ପୋତି ପାଦ ଆଉଁସୁଥାଏ । ଆଖିରୁ ଗଳଗଳ ହୋଇ ଲୁହ ଚାଲୁଥାଏ । ମଝିରେ ମଝିରେ ତାଙ୍କ ମୁହଁକୁ ଚାହେଁ—ଦେଖିହୁଏ ନାହିଁ—ଆଖିର ଲୁହ ବାଧାଦିଏ । ଜାଲୁଜାଲୁଆ ହୋଇ ଯାହା ଦେଖୁଥାଏ, ସେଥିରେ ବରଂ କୋହ ଉଠୁଥାଏ ବେଶୀ । ସେତେବେଳକାର ମୁହଁକୁ କି ଚାହିଁହୁଏ !! ତା'ପରେ—ତା'ପରେ ହଠାତ୍ ମୋର ମୁଣ୍ଡ ଉପରେ ବଜ୍ର ପଡ଼ିଲା । ମୁଁ କିଛି ଜାଣି ପାରିଲି ନାହିଁ । ମୋର ଚେତା ବୁଡ଼ିଗଲା । ସେ ରାତିରେ ମୋର ଆଉ ଚେତା ଆସିନାହିଁ । ତା' ଆରଦିନ ସକାଳେ ଚେତାପାଇ ଦେଖେତ—ସେ ଆଉ ନାହାନ୍ତି—ସେ ଆଉ ନାହାନ୍ତି—ସେ ଆଉ ନାହାନ୍ତି ।"

କହିଁ କହିଁ କରି ସେ କାନ୍ଦିଉଠିଲା । ତା'ପରେ କିଛିକ୍ଷଣ ନିସ୍ତବ୍ଧତା । ସେ ପୁଣି ଆରମ୍ଭ କଲା—

"ତା'ପରେ—ତା'ପରେ—ସେ ମୁହଁଟିକୁ ମୁଁ ଭୁଲିଗଲି । କିନ୍ତୁ କେତେ ଖୋଜିଛି !! କେତେ ଲୋକଙ୍କ ମୁହଁକୁ ଲୋଭରେ ଚାହିଁ ରହିଛି—କାଳେ କିଛି ସାଦୃଶ୍ୟ ଥିବ ! ସେହି ସୁନ୍ଦର ମୁହଁଟିକୁ ମନେ ପକାଇବା ଲାଗି ମୁଁ ଯେତେ ଲୋକଙ୍କ ମୁହଁକୁ ଚାହିଁଛି ସେମାନେ ମୋତେ ଭୁଲ ବୁଝିଛନ୍ତି । ମୋର ଅନ୍ୱେଷଣ-ତତ୍ପର ଚାହାଣୀରୁ ସେମାନେ ଭୁଲରେ ଧରିନେଇଛନ୍ତି ମୋର କାମନାର କ୍ଷୁଧା । ଫଳରେ ସେମାନେ ମୋର କ୍ଷୁଧା ନିବାରଣ ଲାଗି ଆହାର ଦାନ କରିବାକୁ ମୋର ନିକଟକୁ ଧାଇଁ ଆସିଛନ୍ତି । କିନ୍ତୁ ସେମାନେ

ଭ୍ରାନ୍ତ । ନିଜର ଦାନଶୀଳତାର ମତ୍ତତାରେ ସେମାନେ ମୋର କ୍ଷୁଧାର ସ୍ୱରୂପଟିକୁ ବୁଝିବାକୁ ଚେଷ୍ଟା ନ କରି ତାର ନିବୃତ୍ତି ଲାଗି ଚଞ୍ଚଳ ହୋଇ ଉଠିଛନ୍ତି । କ୍ଷୁଧିତ ଲାଗି ଯାହାର ସମବେଦନା ନାହିଁ ସେ କଣ କ୍ଷୁଧା ବୁଝିପାରେ ? ଯେ କ୍ଷୁଧା ନ ବୁଝି ଦାନ ଦିଏ ସେ କଣ ଦାନୀ ? ସେ ଯେ ଦାନୀର ଅହଂକାର ! ସେମାନେ ମୋ ପାଖରେ ନିର୍ଘଣ ହୋଇଛନ୍ତି—ଆଉ ମୁଁ ବି ସେମାନଙ୍କ ପାଖରେ ନିର୍ଘଣ ହୋଇଛି ।"

"କିନ୍ତୁ ମୁଁ କଣ ତୁମର ସେ ଆଶା ପୂରଣ କରିପାରିଛି ? ମୁଁ ତ ବି ଅନ୍ୟମାନଙ୍କ ପରି ଭ୍ରାନ୍ତ, ରେଖା ।"

"ଆହା—କି ସୁନ୍ଦର ସେ ଡାକ ! ଆଉ ଥରେ ଡାକ ତ ମୋ ଧନ ! ଆଉ ଥରେ ଡାକ ତ 'ରେଖା' ବୋଲି ! ତୁମେ ମୋତେ ଆଜିକାଲି ଖୁବ କମ୍ ଡାକୁଛ । ଡାକନା—ଡାକ ତ ଆଉ ଥରେ 'ରେଖା' ବୋଲି ! ଆଉ କି କାଲିଠାରୁ ଏ ଡାକ ଶୁଣିବି ? ମୋ ଧନ ! ଡାକ ତ ଟିକିଏ—

ମୋର ମୁଣ୍ଡ ଗୋଳମାଳ ହୋଇ ଆସୁଥିଲା । ମୁଁ କିନ୍ତୁ ତାର ପାପୁଲିକୁ ମୋର ମୁଠା ଭିତରକୁ ଆଣି ଧୀର ନମ୍ର ଗଳାରେ ଡାକିଲି— "ରେଖା……"

"ଆଃ—କି ସୁନ୍ଦର ! ସୁନ୍ଦର !!"

ସତେ ଅବା ସେ ଏଇ ଧ୍ୱନିଟିକୁ କାନବାଟେ ପିଇଗଲା । ତା ପରେ ପୁଣି ସେ ପ୍ରକୃତିସ୍ଥ ହୋଇ ପଚାରିଲା—"ହଁ—କଣ ପଚାରୁଥିଲ ମୋ ସୁନା ?"

"ମୁଁ ବି ତ ତୁମର ଆଶା ପୂରଣ କରିପାରିନାହିଁ । ମୁଁ ବି ତ ଅନ୍ୟ-ମାନଙ୍କପରି ଭ୍ରାନ୍ତ—କ୍ଷିପ୍ତ ।"

"କିଏ ? ତୁମେ ?"

ଆବେଗରେ ସେ ମୋର ମୁଣ୍ଡକୁ ନୁଆଁଇ ଆଣି ଚୁମା ଦେଲା ।

ଲଗ ଲଗ ବହୁ ଥର ଚୁମା ଦେଲା ।

"କିଏ କହିଲା ତୁମେ ଭ୍ରାନ୍ତ ବୋଲି ? ଭ୍ରାନ୍ତ ତୁମେ ନୁହଁ—ଭ୍ରାନ୍ତ ତୁମର ଯୌବନ । ଯୌବନ ଅପେକ୍ଷା ରଖେ ନାହିଁ—ତୁମେ କିନ୍ତୁ ଅପେକ୍ଷା କରିଛ । ଯୌବନ ଅନୁମତି ମାଗେ ନାହିଁ—ତୁମେ କିନ୍ତୁ ଏଇ କାଙ୍ଗାଳଟାର ବି ଅନୁମତି ଲୋଡ଼ିଛ । ଯୌବନ ନିଜର ଅହଂକାରରେ ବୁଢ଼ିଗଡ଼ିଆ ଅପରକୁ ଦେଖେ ନାହିଁ—ଦେଖିଲେ ବି ଚହ୍ନେ ନାହିଁ । ତୁମେ କିନ୍ତୁ ମୋତେ ଚହ୍ନିଲ । ଅନ୍ୟମାନେ ତାଙ୍କର ଯୌବନକୁ ଦାନ କରିବାକୁ ବ୍ୟଗ୍ର ହୋଇ ପଡ଼ୁଥିଲେ । ତୁମେ କିନ୍ତୁ ମତେ ତୁମକୁ ଦାନ କରି ସାରିଛ । ନୁହେଁ ? ସତ କହିଲ ଦେଖି—ନୁହେଁ ?"

"ଆଶ୍ଚର୍ଯ୍ୟ କଥା, ରେଖା—କିପରି ଜାଣିଲ ମୋର ମନ ଭିତରର ଗୋପନ ଅଭିଳାଷ, ଯାହା ମୋ ପାଖରେ ବି ଏ ଯାବତ ସ୍ପଷ୍ଟ ହୋଇ ନାହିଁ ?"—ମୁଁ ଅଭିଭୂତ ହୋଇ ଭଳି କହିଲି ।

"ହଁ ରେଖା, ମୋର ଇଚ୍ଛା ମୁଁ ତୁମକୁ ପୁଣିଥରେ ବିବାହ—"

"ସେଇଥି ତ ମୁଁ କହୁଛି । ମୋର ଦୁଃଖରେ ତୁମର ଯୌବନ କାନ୍ଦନାହିଁ—ତୁମେ ଖାଲି କାନ୍ଦିଛ । ଭିକ୍ଷୁକର ଦୁଃଖରେ ଧନ ତ କାନ୍ଦେ ନାହିଁ ! କିନ୍ତୁ ଧନୀ ଯଦି ନ କାନ୍ଦିଲା, ସେ କି ଧନୀ ? ମୁଁ ଖୋଜିଥିଲି ଧନୀକୁ— ତୁମେ ମୋର ସେଇ ଧନୀ । କିନ୍ତୁ ସ୍ତ୍ରୀ ବୋଲି ତୁମେ ମୋତେ ଆଉ ବିବାହ କରିବ କେମିତି ? ଗୋଟିଏ ଆକାଶରେ ଦୁଇଟି ସୂର୍ଯ୍ୟର ଆବିର୍ଭାବ ଅସମ୍ଭବ । ସୂର୍ଯ୍ୟ ଅସ୍ତଗଲେ ଚନ୍ଦ୍ର ଦିଏ ଆଲୋକ । ତୁମେ ମୋର ଚନ୍ଦ୍ର । ପ୍ରଚଣ୍ଡ ସୂର୍ଯ୍ୟାଲୋକର ଏକ ଶୀତଳ ସ୍ମୃତି ଧରି ତୁମେ ମୋର ହୃଦୟ ଆକାଶରେ ଉଦିତ ହୁଅ ମୋର ଚନ୍ଦ୍ର ! ଏ କାଳରାତିର ତମିସ୍ରକୁ ତୁମର ଅମୃତ କିରଣରେ ହରଣ କର । ତୁମେ ଯାଅ । ଆଉ ଏ ଜୀବନରେ ହୁଏତ ଦେଖା ହୋଇ ନ ପାରେ—ଆଉ ଆମ ଭିତରେ ଦେଖା ନ ହେବା ହିଁ ଉଚିତ । ସୂର୍ଯ୍ୟ ଅସ୍ତଗଲେ ପଦ୍ମିନୀ ଆଉ ଆଖି ମେଲେ ନାହିଁ । କିନ୍ତୁ ଏତିକି ଆଶାରେ ସେ ବଞ୍ଚିରହେ—ତାର ଅନ୍ଧ ଆଖିର ଘୁରିପଟେ ଜ୍ୟୋତିଷ୍ମାନ ସୁଧାକରର ଜ୍ୟୋସ୍ନାଲୋକ—ସେ ଆଲୋକ ପୁଣି ସୂର୍ଯ୍ୟଙ୍କର ଛାୟାର ! ଚନ୍ଦ୍ରକୁ ଦେଖୁ ନ ଦେଖୁ—ପାଉ ନ ପାଉ—ଚନ୍ଦ୍ରଠାରୁ ଅନ୍ତତଃ ଆଲୋକର ଏଇ

ପ୍ରତିଶ୍ରୁତି ସେ ପାଏ । ପାଏ ବୋଲି ତୃପ୍ତ ହୁଏ—ଶାନ୍ତ ହୁଏ । ତୁମର ପ୍ରେମ ମୋର ହୃଦୟରେ ସେଇ ପ୍ରତିଶ୍ରୁତି ଦେଇ ସାରିଛି । ସେତିକି ମୋର ସାନ୍ତ୍ୱନା—ସେତିକି ମୋର ସମ୍ବଳ—ସେତିକି ମୋର କାମ୍ୟ ।"

ଅଭିଭୂତ ହୋଇ ରେଖାର ଅର୍ଥପୂର୍ଣ୍ଣ ବାଗ୍ଜାଲଗୁଡ଼ିକ ଶୁଣୁଶୁଣୁ ସେ ମୋତେ ଆଉ ପ୍ରକାରେ ଦିଶିଲା । ଏ କିଏ ସେଇ 'ରେଖା' ? ବେଦନାର କ'ଣ ପ୍ରଗଲ୍‌ଭତା ଅଛି ? ଶୁକ୍ଳାମ୍ବର—ବେଦନାବିଧୁର—ସ୍ନେହକାତର—ସ୍ୱଭାବରୁ ଏଇ ବଧବାଟି, କଣ ଉନ୍ମତ୍ତ ଯୌବନର ଭୋଗ-ପ୍ରବଣ-ଲାଳସା ଲାଗି ମୂର୍ତ୍ତିମତୀ ଶିକ୍ଷା ? ବେଦନା-ସହାନୁଭୂତିହୀନ ଦାନମତ୍ତ ବଳୀରାଜାର ଅହଂକାରକୁ ବାମନରୂପୀ ବିଷ୍ଣୁ ଚୂର୍ଣ୍ଣ କଲାପରି, ରେଖା ମୋର ଅବଶିଷ୍ଟ ଅଭିମାନକୁ ପଦଦଳିତ କରି ଯେଉଁ ଦାନ ମୋଠାରେ ଭିକ୍ଷା କଲା ସେ ମୋର ମୁଣ୍ଡକୁ ଆହୁରି ଗରିମାକ୍ରାନ୍ତ କଲା । ଏହି ପ୍ରଚଣ୍ଡ ସତୀତ୍ୱ ସମ୍ମୁଖରେ ମୁଁ ନତଜାନୁ ହୋଇ ରହିଲି । ମୋର ମନେ ହେଲା, ଅନ୍ୟମାନେ ହୁଏତ ସତୀ; ମାତ୍ର ରେଖା ନିଜେ ସତୀତ୍ୱ ।

ମୁଁ କିଛିକ୍ଷଣ ନିସ୍ତବ୍ଧ ରହିଲି । ମାତ୍ର ମୋର ଗୋଟିଏ ସନ୍ଦେହ ଘୁଞ୍ଚାଇବା ଲାଗି ମୁଁ ପୁଣି ପାଟି ଖୋଲିଲି —"କିନ୍ତୁ ରେଖା—ବେଦନା କିଏ ପ୍ରଗଲ୍‌ଭ ? ସାଗର ତ ଗମ୍ଭୀର !"

"ସାଗର ଗମ୍ଭୀର ସତ୍ୟ—କିନ୍ତୁ ସୂର୍ଯ୍ୟାଲୋକରେ । ଚନ୍ଦ୍ର ଦର୍ଶନରେ ସାଗରର ଚାଞ୍ଚଲ୍ୟ ଆସେ ନାହିଁ ? ସୂର୍ଯ୍ୟାଲୋକ ସମସ୍ତଙ୍କୁ ପ୍ରକାଶ କରେ—କିନ୍ତୁ ଚନ୍ଦ୍ରାଲୋକରେ ସମସ୍ତେ ନିଜନିଜକୁ ପ୍ରକାଶ କରିବାକୁ ବ୍ୟଗ୍ର ହୋଇ ପଡ଼ନ୍ତି । ତେଣୁ ସାଗର ଚନ୍ଦ୍ର ଦର୍ଶନରେ ଚଞ୍ଚଳ ଓ ଉର୍ମିଳ । ତୁମେ ମୋର ଚନ୍ଦ୍ର । ତୁମ ଆଗରେ ମୁଁ ନିଜକୁ ପ୍ରକାଶ କରିଛି । ନିଜେ ନିଜକୁ ପ୍ରକାଶ କଲେ ଚାଞ୍ଚଲ୍ୟ ଆସିବାଟା ଅତି ସ୍ୱାଭାବିକ । ନିଜକୁ ପ୍ରକାଶ କରିବାରେ ଆବେଗଟା ତ ଚଞ୍ଚଳ ।"

ମୋର ମନ ପରିମିତେ ଏହି ନାରୀଟି ପାଖରେ ପରାସ୍ତ ହେଲା । ପରାଜିତର ଅଭିମାନ ନେଇ ମୁଁ ପଚାରିଲି—"ମୋର କଣ ନିଜସ୍ୱ ଅପେକ୍ଷା ନାହିଁ ରେଖା ? ମୁଁ କେବଳ ଅନ୍ୟ ଜଣଙ୍କର ଛାୟା ?"

ସେ ମୋତେ ଚଟାପଟ୍ ତା ଆଡ଼କୁ ଆଉଜାଇ ନେଇ ଚୁମା ଦେଇ କହିଲା—

"ତୁମେ କେବଳ କାହାର ଗ୍ରସ୍ତା ନୁହଁ, ମୋର ଧନ—ତୁମେ ମୋର ମାସ୍ତା ! ତୁମେ ମୋର ମାସ୍ତା !!"

ସେ ଫେର୍ ମୋତେ ଚୁମା ଦେଲା—ଯେମିତି ଏତକରେ ପୋଛି-ଦେଲା, ସେ ମୋ ମନର ସମସ୍ତ ଗ୍ଲାନି ଆଉ ଅଭିମାନ । ମୁଁ ଯେପରି ଗୋଟିଏ ଅଭିମାନୀ ଶିଶୁ ! ତା'ପରେ ମୋର ହାତ ଧରି ସେ ମୋତେ ଟାଣି ଘୋଷାରି ନେଇଗଲା ଗ୍ରୁଡ ଉପରକୁ ।

"ଆସ—ଆସ—କାଲି ଗ୍ଭଲିଯିବ । ଆଜି ଟିକେ ତୁମ କୋଳରେ ମୁଣ୍ଡ ଦେଇ ଶୋଇପଡ଼େ଼, ଆସ ।"

ମନ୍ତ୍ରମୁଗ୍ଧ ଭଳି ମୁଁ ତା' ପଛରେ ଟଣା ହୋଇ ଗଲି । ଗ୍ରୁଡ ଉପରେ ସେ ମୋ କୋଳରେ ମୁଣ୍ଡ ରଖି ଶୋଇଲା ଆଉ ମୋର ବେକରେ ତାର ବାହୁଲତା ଜଡ଼ାଇ ସେ ପୁଣି ପଚ୍ଚରିଲା—"କୁହତ ମୋର ମାସ୍ତା, ମୋତେ ଭୁଲିଯିବ ନାହିଁ ତ ? ମୋତେ ସବୁ ଦିନେ ଏହିଭଳି ଭଲ ପାଇବ ତ ? ମନେ ରଖିବ ତ ? ସତ କୁହ—ଧନ ମୋର ସତ କୁହ ।"

ମୁଁ ତାର ସାନ ମୁହଁଟିକୁ ମୋର ଦୁଇ ଆଙ୍ଗୁଳୀ ମଧ୍ୟରେ ରଖି ସ୍ମିତ ହାସ୍ୟରେ କହିଲି—"ମାସ୍ତାବନି ! ତୁମର ମାସ୍ତା କେବଳ ତୁମରି ସୃଷ୍ଟି ଆଉ ତୁମେଇ କେବଳ ସେ ମାସ୍ତାର ସଂହାର କରିପାର । ମୁଁ ଜାଣେ, ତୁମେ ଅମୃତର କ୍ଷୁଧାରେ ଆତୁର । ତୁମର ଏଇ ଅମୃତର କ୍ଷୁଧା ଚିରଦିନ ମୋ ପଛରେ ଲଗି ରହିଲା । ମୋର ଦୋଷ ମୁଁ ତୁମର କ୍ଷୁଧାକୁ ଚହ୍ନିଲି—ନୁହେଁ ? ତେଣୁ ତୁମର କ୍ଷୁଧିତ ପ୍ରାଣର ଆଶଙ୍କାରେ ମୋତେ ଚିରଦିନ ସଂନ୍ତ୍ରସ୍ତ ରହିବାକୁ ପଡ଼ିବ—ନୁହେଁ ?

"ହୁଏତ—ହିଁ ।"

ସେ ତାର ଦୁଇ ପାପୁଲିର ଅଙ୍ଗୁଳିଗୁଡ଼ିକ ମୁକୁଳିତ ଭଙ୍ଗୀରେ ରଖି କ ଏକ ଆବେଶ ମଧ୍ୟରେ ଥିବା ଭଳି ଆକାଶକୁ ଗ୍ଭହିଁ ଏତିକି କହିଲା ।

ଆକାଶରେ ଉଜ୍ଜ୍ୱଳ ଚନ୍ଦ୍ର—ଆଁଉ ସେଇ ଚନ୍ଦ୍ରକୁ ପୁଣି ଘେରି ରହିଛି ଏକ ବୃତ୍ତାକାର ରହସ୍ୟମୟ ଚନ୍ଦ୍ରମଣ୍ଡଳ । ରେଖା ସେଇ ଅଡ଼କୁ ଚାହିଁ ରହିଥିଲା ।

ଶେଷରେ ମୁଁ ବି ସେଇ ଅପୂର୍ବ ଦୃଶ୍ୟ ଆଡ଼କୁ ମୁଗ୍ଧ ବିସ୍ମୟର ଆଖିରେ ଚାହିଁ ରହିଲି । ଏହି ବିରାଟ ରହସ୍ୟକୁ କିଏ ଉଦ୍‌ଘାଟନ କରି ପାରିବ ? କିଏ ବା ଧାରିଛି ?



# କମଳୀର ପ୍ରେମ

ଅଣ୍ଡିରା ବଳିଆ ଲଗ୍ ଲଗ୍ ଠିକ୍ ତିନିଥର ରଡ଼ି ଛାଡ଼ିଲା । ମଦନ ପଧାନର ସ୍ମୃତି ଲୁଚିଗଲା । ଏନ୍ତୁଡ଼ିଶାଳରେ ସଧବା ମାଇପେ ସବୁ ଖୋ'କନା ରଡ଼ି ଛାଡ଼ିଲେ । ପାଞ୍ଚ ବର୍ଷର ପୁଅ ଶଙ୍କର ବି କିଛି ନ ବୁଝି କେଡ଼େ ବିକଳରେ କାନ୍ଦି ଉଠିଲା । ମଦନ ଖୁଣ୍ଟକୁ ଆଉଜି କେବଳ ବୋକାଙ୍କ ପରି ବସି ରହିଲା—ଦୀର୍ଘଶ୍ୱାସ ପକାଇ । କାନ୍ଦ କାହିଁକି ମାଡ଼ୁନି ତାକୁ । ମାଲୁଣୀଏ ଆସିଲେ—ଯେଉଁଟା କାମ ଟିଏ ଆଦରି ନେଲେ । କୋକେଇ ବନ୍ଧା ହେଲା—ଗଲା ଗଲା—ସବୁ ଗଲା—ସବୁ ସରିଲା । ଧୂଧୂ ନିଆଁ—ମଦନ ସବୁ ଦେଖିଛି । କାନ୍ଦ ମାଡ଼ୁନି । "ଆହା ବିଚରାର ସଂସାର ଉଚ୍ଛନ୍ନ ହୋଇଗଲା ।" "ମଦନ କ'ଣ ଆଉ ଗୋଟିଏ ଦ୍ୱିତୀୟ ପକ୍ଷ ଦେଖିବ ନାହିଁ ?" ମଦନ ସବୁ ଶୁଣିଛି । କାହାକୁ ଉତ୍ତର ଦେଉନି ।

କେତେ ଅଭିମତ ଉପଦେଶ ଭିତରେ ଶୁଦ୍ଧ ଘର କାମ ସରିଗଲା । ବର୍ତ୍ତମାନ ମଦନ କଣ କରିବ ? ସପନା ମାମୁଁ ନଟବୋଲା ଜାଗାରେ ଫୁସ୍‌ଫୁସ୍ କରି ମଦନ କାନରେ କହନ୍ତି—"ଆରେ ମଦନ, ମୋ ବୋଲ ମାନ । ଭଗବାନ ନଣ୍ଡା ବକଟକ ଦେଇଛନ୍ତି । ସେଇ ଶଙ୍କରକୁ ଆଗ ଦେଖିଶୁଣି ମଣିଷ କର । ବାହାଘର କଥାରେ ଆଉ ମାତନା । କନ୍ୟା ମାଇପ ବା କହିଲେ ତାହାଣ ବଟେଇବ—ଉପର ମୁଣ୍ଡକୁ ତଳକୁ କରିବ । ସେତେ-ବେଳେ ଯାଇ ଚେତା ପଶିବରେ ବାପା ! ମୋ କଥା ସେଦିନକବେଳେ ମନେ ପଡ଼ିବ । ମୋ କଥା ମାନ, ଆଉ ସେ ମାୟାରେ ପଶନା । ଆଉ ସାହି କମଲ, ନନର ଭଲିଆ ହୋଇ ଯେ କଥା କହେ—ଦୁଇ ଦୁଇ ଥର ବାହା ହେଲଣି । ସମସ୍ତେ ମରି ଯାଇଛନ୍ତି । ଏଥରକ ଯାହାକୁ ଘରକୁ ଆଣିଛି,

ତିରିଶ ଶହ ଟଙ୍କା । ମଣିଷ ନୁହେଁ ଚଣ୍ଡୀ । ପାଞ୍ଚିରେ ବାଇଶ ନାହିଁ । ଦିନ ଦିନଅର ମାଡ଼ ଖାଇ ମଧ ବଦ୍‌ଖୋଇ ଛାଡ଼ିଲେନି । ଘରକୁ ଘରପର ମଣିଲେନି । ଘରର ମଣିଷ ଛାଡ଼ି ପର ମଣିଷଙ୍କ ପିବା ବାଟକୁ ଅନେଇଁ ରହିଲ । ମାସକେ ପନ୍ଦର ଥର ଉପାସ । ଗୋଟେଇ ବନ୍ଧ । କାମ-ଦାମରୁ ଫେରି ଆସି ରାତିରେ ମନ ଖୋଲି ଟିକେ କଥା କହିଲେ ମଥା ଛିଣ୍ଡେଇବ । ହାତ ପକେଇଲେ ନାକ ମାରିବ । ପ୍ରଥମ ଥର ଯାହା ହାତ ଧରିଥିଲି, ତାଆରିଆଡ଼ୁ ବାଲବଚ୍ଚା ହୋଇ ଖଣ୍ଡିଏ । ଡାଙ୍ଗଡାଙ୍ଗ ହାତ ଗୋଡ଼ । ତାକୁ ଦେଖିପାରିଲେନି । ମାମୁଁ ଘରେ ସେଥିପାଇଁ ଛାଡ଼ି-ଦେଇ ଆସିଛୁ । ଆଉ ସେ ଜଞ୍ଜାଳକୁ ଯାଆନା ତୁ ମଦନ, ବଡ଼ ବିଷମ ସେ ପଥ ।”

ମଦନ ସବୁ ବୁଝେ—କମଳ ଆଡ଼କୁ ଘଡ଼ିଏ ଅନାଏଁ । ମୁହଁ ଶୁଖି-ଯାଇଛି । ଆଗର ସେଇ ବେପରୁଆ ଭାବ ଆଉ ନାହିଁ । ଦବିଯାଇଛି—କମଳର ପୁରୁଷ ପଣିଆ ସରି ଯାଇଛି ।…ଛଅ ସାତ ବରଷର ପୁଅ ଶଙ୍କରା ବାପ ପିଠିରେ ନାହ ହୋଇପଡ଼େ । ମଦନର ଅଫୁରନ୍ତ ବେଦନା ପଦାକୁ ବାହାରି ଆସେ । ଅଖି ଛଳଛଳ ହୁଏ । “ହଉ ଯାଅ ତୁ କମଳ, ଭଗବାନ ଯାହା କରିବେ ।”

ତରତର କରି ଘର ଭିତରକୁ ପଶିଯାଏ ମଦନ । ଚାଳରେ ମୁଣ୍ଡ ବାଜେ । କିଛି କୂଳ କିନାରା ପାଏନା । କଣ କରିବ ? ଆଉ ଥରେ ବାହା ହବ ? ସପନାମାମୁଁ କଥା ମନେପଡ଼େ । କମଳ କଥା ମନକୁ ଆସେ । ସତକଥା—“ବଡ଼ ବିଷମ ସେ ପଥ ।”

ବାପୁଆ ବାରିକ ଖାଡ଼ା ନଶ ହଳକ ଫୁଲିଛା ପାନ ଭାଙ୍ଗି ବସେ । ଭାରି ହେମତ ଦିଏ—“ଏଇ ମାଘ ମାସରେ ବାହାଘର ହୋଇଯିବ ମଦନକା ; କିଛି ଭାବନା କରନା । ଖାଲି ଟଙ୍କା ତିରିଶ ମୋ ହାତକୁ ବଢ଼ାଇଦିଅ । ଥିର ହୋଇ ବସ ।” ମଦନ ମନରେ ପୁଣି ସାହସ ହୁଏ । ମାଘ ମାସରେ ସତରେ ବାହା ହବ ସେ ? ମୋଟେ ତିରିଶ ଟଙ୍କା ?

ଲେଖାପୋଖାରେ ଭଉଣୀ ହେବ କମଳୀ । ତିନି ବର୍ଷ ହେବ କପାଳ ଫାଟିଲାଣି । ବଅସ ଥୋଳ ମାଇପିଟା । କଇଁଫୁଲପରି ଦେହର ରଙ୍ଗ । ଦେହ ହାତ ମୋଟା ମୋଟା, ନହଗ୍ର ଗ୍ଲଠ । ଦେଖିଲେ ନଜର ପଡ଼ିଟିବ । ହସି ହସି କଥା କହେ । ହସରେ ସମସ୍ତଙ୍କୁ କିଣିନେବ । ପରକୁ ଆପଣାର କରିବ । ଯାହା ହାତ ଧରିଥିଲା—ଭଲ ଥିଲାବାଲା । କିନ୍ତୁ ବୁଢ଼ା ହଡ଼ା—ବାଉନ ପାଟିରୁ ଆଉ ଉଧୂରିଲା ନାହିଁ ।

ସେଇ କମଳୀର ଆଖି ପଡ଼ିଲା ମଦନ ଉପରେ । ମଦନ ଘରକୁ ଏକା । ମାଇପ ମରିଯାଇଛି ତିନିମାସ ହେବ । ମଦନ ଉପରେ ଚଡ଼କ ପଡ଼ିଛି । କମଳୀ ଉପରେ ପଡ଼ି ଘର ପାଇଟି ତୁଲେଇନିଏ । ମଦନ ପାନ ବରଜରୁ କାମ ସାରି ଆସିଲେ ପଖାଳ କଂସାଏ ବାଢ଼ିଦିଏ । ମଦନର ମନ ବୋଧ । ଅମୃତ ହେଲେ ବି ହାତରେ ବାଢ଼ି ଖାଇବାକୁ ସୁଖ ଲାଗି-ବନି, ଅଥଚ ଆପଣାର ଭଳିଆ କିଏ ଜଣେ ଯାହା ବାଢ଼ିଦେଉ, ପେଟ ପୂରିବ, ମନ ପୂରିବ । ସଞ୍ଜବେଳେ ଗହ୍ୱରରୁ ଗୋରୁ ଫେରିଲେ କମଳୀ ବାନ୍ଧିଦିଏ ଲୁହାଳେ । ସକାଳେ ଯୋଗିଆ ଗହଡ଼ା "ମଦନନା ଗୋରୁ ଫିଟାଅ ହୋ-ଓ-ଓ" ଡାକ ଦେଲେ କମଳୀ ଗୋରୁ ଫିଟାଇ ଦିଏ । ଏଇ ସବୁ କାମ କରିବାକୁ ତାକୁ ଟିକିଏ ହେଲେ ହାଲିଆ ଲାଗେନି ।

ଶଙ୍କର ରେଙ୍ଗଜନା ସ୍କୁଲକୁ ଯାଏ ଶିଶୁ ଶ୍ରେଣୀରେ ପଢ଼ୁଛି । ତାକୁ ଖାଇବାକୁ ଦେବାକୁ, ଓଠ ଧରି ଖେଳ କରିବାକୁ କମଳୀକୁ ଭାରି ସୁଖ ଲାଗେ । ଦେହରେ ମାଆର ଭାବ ଜାଗି ଉଠେ । ଗେରସ୍ତ ସାଙ୍ଗରେ ପାଞ୍ଚବର୍ଷ କଟାଇଛି, କିନ୍ତୁ ମାଆ ହେବାର ସୌଭାଗ୍ୟ ତାକୁ ମିଳିନାହିଁ । କେତେ ପିଲାଙ୍କୁ ଦେଖିଛି ସେ । ତାଆରି ସାଥିରେ ବାହା ହେଇ ସୁମୀର ତିନିଟା ଛୁଆ । ପାଙ୍ଗଡାର ଭଲ ପିଲା ଯୋଡ଼ିଏ ହୋଇଛନ୍ତି—ଯାଆଁଳା ପିଲା—କେଡ଼େ ସୁନ୍ଦର ! ମଦନର ପୁଅ—କମଳୀ ଅନ୍ୟମନସ୍କ ହୁଏ । ତାର ଗ୍ଲଠ ଶରୀଲେଇ ହୁଏ—ମନଟା ବି ଆହୁରି ଜୋର୍‌ରେ । ଅଜାଣତରେ ଶଙ୍କରକୁ ଗ୍ଲଠରେ ଚୁପିଧରି ମାତିଦ୍ଧ ତାର ପୁଣି ଚମକ ଉଠେ । ଦେଖେ,

କୋଳରେ ଶଙ୍କର—ମଦନ ପଧାନର ପୁଅ । କମଲୀର ଆଖି ଛଳଛଳ ହୋଇ ଆସେ ।

× × × ×

କମଲୀ ଆଉ ଏଣିକ ମଦନ ଘର ଛାଡ଼ି ଯାଇପାରୁନ । କ ମାୟା ଲଗିଯାଇଚ୍ଛ କେଜାଣି ? ବେଳାଏ ବେଳାଏ ଆସି ଯାହାଙ୍ଗ୍ୟ କରିବା ବାହାନାରେ ରାନ୍ଧ ଦେଉ ଦେଉ ମଦନ ଘରେ କମଲୀର ଗୋଡ଼ ଗ୍ରୁଏଁ ଗ୍ରୁଏଁ ବାନ୍ଧ ହୋଇଯାଇଚ୍ଛ, ତା'ର ଅଜାଣତରେ । ମଦନର ବ ବବାହ ଝୁଙ୍କ ଦବଯାଇଚ୍ଛ—ଆଗପର ଏତେ ତୀବ୍ର ଭାବରେ ନାହିଁ ।

ଗାଁରେ ପାଲ ଲଗିଲ—କମଲୀ କାହିଁକ ମଦନ ପଧାନ ଘରେ ସବୁ-ବେଳେ ପଶିଚ୍ଛ । ମଦନ ଘୁଙ୍ଗା । କାହାକୁ କଚ୍ଛ କହେନା । ଭଲରେ ନଥାଏ କ ମନ୍ଦରେ ନଥାଏ । ନଜର ପାନବରଜ— ଯାହା ମାଣେ ଢ ମାଣ ଜମି—ଆଉ ହଳଆ ମାର୍କଣ୍ଡିଆ । ଢନଯାକ ସ୍ୟାଙ୍କର ସଙ୍ଗରେ କାରବାର । ରାତରେ କମଲୀ ବସି ଦୁଃଖ ସୁଖ ହୁଏ—ଶଙ୍କର କଥା— ସେ କେମିତ ସକାଳେ ଖାଇ କର ସ୍କୁଲକୁ ଯାଉନ, କେମିତ ଖରାବେଳେ ନ ଶୋଇ ଖେଚଡ଼ ଟୋକାଙ୍କ ସଙ୍ଗେ ବୁଲ ବୁଲ କଳାକାଠ ପଡ଼ିଗଲଣି ।

ତଳକୁ ମୁହଁ ପୋତ ମଦନ ପଖାଳ କଂସାରେ ହାତମାଡ଼ ସବୁ ଶୁଣେ । ମଝିରେ ମଝିରେ ହସେ । ବେଶୀ କଥା କହେନ । କମଲୀ ତୃପ୍ତି ପାଏ । ମାଆର ଅଧିକାରରେ ଓ ଅଭିନୟରେ ତାର ଗ୍ରୁଡ ଫୁଲିଉଠେ ।

ଗାଁ ବାଲ ସହିପାରିଲେନ । ଦୁଃଖ ପଡ଼ିଲେ ଶୁଖିଲ ନକଲ ସହାନୁ-ଭୂତର ସୀମା ନାହିଁ; ଦୁଃଖରୁ ଉଧୁରିଗଲେ କାହା ଦେହ ସହବ ନାହିଁ— ଆଖିରେ ଶୁଖୁଆ କଣ୍ଟା ମଡ଼ା ହେନ । ସେଇ କମଲ—ଆପଣାର ଭଳଆ ହୋଇ ଯେତେ କଥା କହୁଥିଲ ଆଜ ସବୁ ଫେରେ ବଦଳ ଗଲଣି । ମଦନକୁ କଥା କହେନ । ଆଗରେ ପଡ଼ିଲେ ବାଗରେ ମୁହଁ ଫେରାଇ ନଏ ।

କମଲ କେତେଥର ଚେଷ୍ଟା କରଚ୍ଛ—କଥାଲୀ ହାଟରୁ କେତେ ଭଲ

କିନିଷ ଆଣି ଉପହାର ଦେଉଛି—କେତେ ରସଗୋଲା—କେତେ ମିଠେଇ । କିନ୍ତୁ କମଳୀକୁ ହାତ କରିପାରିନି । ସେଦିନ କେତେ ଦରଦ ଦେଇ ମନର କଥା ସେ ଖୋଲିକରି କହିଥିଲା । କମଳୀର ମନ ନବାକୁ ନିଜ ସ୍ତ୍ରୀର କେତେ ଅବଗୁଣ ସେ ଗୋଟି ଗୋଟି କରି ବଖାଣିଥିଲା । କାହିଁରେ କିଛି ହେଲାନି । କମଳୀ ମିଠେଇ ପୁଡ଼ିଆଟିକୁ ଗୋଡ଼ରେ ଫୋପାଡ଼ି ଦେଇ କବାଟ ଲଗେଇ ଦେଇଥିଲା ; ଆଉ କହିଥିଲା—"ମଲା ; ଦାଗି କରି ପାରିବୁ କି ମୋତେ !" କମଳ ଆଉ ସେଇ ବାଟେ ଯାଇନି—ସାହସ ବି କରିନି । ସେଇ କମଳୀ ଆଜି ଏମିତି ଓଲଟିପଡ଼ିଲା ? ମହନ ପଧାନଠାରେ ଏତେ ରସ ଅଛି । କମଳ ଗ୍ରୁତ ବିଚାରି ହୁଏ । ମହନ ସାଥିରେ ମୁହାଁମୁହିଁ ହୋଇଗଲେ ଆଜି କାଲି ବାଟ କାଟି ଖସିଯାଏ କମଳ ।

ସପନାମାମୁଁ—ଖୋଲପଣ ମୂରବି ଢଙ୍ଗ । ଆଜି ମହନକୁ ଦେଖିଲେ ମୁହଁ ଫଣ ଫଣ କରନ୍ତି । ଆସୁ ଯାଉ ଗୋରୁ ବାଛୁରି କାରେ ପଦେ ହେଲେ ଗାଳି ଦିଅନ୍ତି । ମହନ ଘୁଙ୍ଗା ସବୁ ସହିଯାଏ । ସପନାମାମୁଁ କୋଉ ଭଲଲୋକ । ବୁଢ଼ା ହେବାକୁ ହେଲାଣି, କିନ୍ତୁ ମନଟା ବୁଢ଼ା ହୋଇ ଯାଇନି । ସେଦିନ ସନ୍ଧ୍ୟାବୁଡ଼େ କମଳୀ ପଞ୍ଝ ଦେଇ ଫେରୁଛି । ସପନାମାମୁଁ ଘରକୁ ଏକା—ବିକେଇ ପିଲାଟିଏ ବି ନାହିଁ । ପନ୍ଦର ବର୍ଷ ହେଲା ସ୍ତ୍ରୀ ମରିଯାଇଛି । ପୁଅଟିଏ ଥିଲା ରୋଗିଣା—ମରିଗଲା । ସେଇଦିନୁ ବୁଢ଼ା ଏକା କମଳୀକୁ ଡାକିଲା—"କମିକଲେ, ଆଲେ ମା ଶୁଣିଗଲୁ ।" କମଳୀ ଆସିଲା—ବୁଢ଼ା ଆଗେ ଆଗେ—ପଛରେ କମଳୀ । ବୁଢ଼ା ଦୁଆର ଲଗେଇ ଦେଲା । କମଳୀ ଚମକି ପଡ଼ିଲା—ରୁମ ଟାଙ୍କୁରି ଉଠିଲା । ଚଟ୍‌କିନା ବୁଢ଼ା ହାତଟାକୁ ଠେଲି ଦେଇ ଯାହା ଶୋଧିଲା କାନରେ ଶୁଣି-ବନି । ସେଇଦିନୁ ବୁଢ଼ା ବିଗିଡ଼ିଛି । ଏବେ ମହନ ଘରେ କମଳୀ—ସପନା ମାମୁଁ ଦାନ୍ତ କାମୁଡ଼ି ହୁଏ । ଦେଖେଇ ଦେଖେଇ ମହନକୁ ଶୋଧେ ।

କିଏ କଣେ ହେଲେ ଭଲ ? ସମସ୍ତେ ଭେଲ । କମଳୀ ସମସ୍ତଙ୍କି ଚିହ୍ନେ । ସବୁକଥା କମଳୀ କହିଛି ମହନକୁ—ମହନ ସବୁ ଶୁଣିଛି । ପଖାଳ କଂସାରେ ମୁହଁମାଡ଼ି ହୁଁ ମାରିଛି, ଆଉ କିଛି ଜବାବ ଦେଇନି । ମହନ

ପୁଙ୍ଗା—କିଣ ଜବାବ ଦେବ । କମଳୀ ଉଠେ—ଆଲୁ ଚକଟି ଦଏ—ପଖାଳ ଭାତରେ ବସାଦହି ଟିକେ ପକାଇ ଦଏ । ମଦନ ତାହାକୁ ଖୋଜବାର ଭାବ ଦେଖାଏ । କମଳୀ ଭୁଟିପାଣ ଶଙ୍କରକୁ ଡ଼ାକେ । ମଦନ, ଶଙ୍କର ଖାଇ ବସନ୍ତି । କମଳୀ ପାଖରେ ବସି ଗପସପ ହୁଏ ।

ଏ ଦୃଶ୍ୟ ଦେଖି ମଦନ ଭାବେ, ତା'ଘର ତ ପୁଣି ପୂରଉଠିଲା । ଏଇ ଘରେ କିଛି ଦିନ ଧରି ସ୍ତ୍ରୀ ମଲା ପରେ ମଦନ ନିଜ ହାତରେ ଭାତ ରାନ୍ଧି ଖାଇଥିଲା—ଶଙ୍କରକୁ ଖୁଆଇଥିଲା । ପାଖରେ ଆପଣାର ହେଲା ଜଣେ କିଏ ନ ଥିଲେ । ସେଇ ଅଇଁଠା ହାତରେ ସେ ହାଣ୍ଡିରୁ ପତ୍ରରେ ଆଣି ବାଢ଼ି ଖାଇଥିଲା । ଶଙ୍କର ନିଦରୁ ଉଠି ଭାତ ନ ଖାଇବାକୁ କାନ୍ଦୁଥିଲା, ରଡ଼ି ଛାଡ଼ୁଥିଲା । ମଦନ ବୁଝାଇ ବୁଝାଇ ନସ୍ତାନ୍ତ ହୁଏ । ଶଙ୍କର ଭାତ ଖାଏ-ନାହିଁ । କାଳିଆ କୋଚଟ ହୋଇ ପିଲା ବଢ଼ୁଛେ—ସଜନା ଖାଡ଼ିପରି ହାତ ଗୋଡ଼—ଟୁରୁର ପେଟ—ମଗର ମନ । ଫୁଙ୍କି ଦେଲେ ଟଳି ପଡ଼ିବ, କାନ୍ଦ ଧରି ମୁଣ୍ଡ ବାଡ଼େଇବ । ମଦନ ଶଙ୍କରର ନଣ୍ଡାମୁଣ୍ଡର ଚଇତନ ଚୁଟିକି ଝିଙ୍କି ଧରି ଦ'ବିଧା ଦକାଏ—ଗୋଇଠା ମାରେ—ଶଙ୍କର କାନ୍ଦେ । "ବୋଉଲେ" ବୋଲି ଗୁହାରି ମାଟି ବିଦାରି କାନ୍ଦେ—ଚ୍ଛ ଚ୍ଛ ମୁଣ୍ଡ ବାଡ଼େଇ କାନ୍ଦେ—କାନ୍ଦ ଛାଡ଼େନା । ମଦନର ଆଖିରୁ ଲୁହ ବୋହିପଡ଼େ ଏ ଦୃଶ୍ୟରେ । ଭାତ କଂସା ଥୋଇ ଦେଇ ଶଙ୍କରକୁ ବୁଝାଇ ବୁଝାଇ ଶୋଇପଡ଼େ । ଅହା, ମା ଛେଉଣ୍ଡଟି !!

ଆଜି କାଲି ସେଦିନ ଚାଲିଯାଇଛି । ଶଙ୍କର ଅଉ ତୁନ୍ତୁନି—"ବୋଉଲେ" ବୋଲି ଗୁହା ଧରୁନି—କାନ୍ଦ ଧରୁନି—ଅଝଟ ହେଉନି । କମଳୀ ହାତରେ ବାଗେଇ ଚାଲିଣି—କମଳୀକି ମାନି ଗଲିଣି । ଗଲା ଦିନର କଥା ମଦନକୁ ସପନଭଳି ଲାଗେ ।

କମଳୀ ଭାବେ—ସେ କଣ ସୁଖରେ ଅଛି ? ମନ ତାର ଜବାବ ଦଏ—ହଁ, ଆଗ ଅପେକ୍ଷା ସୁଖରେ ନାହିଁ ଆଉ କଅଣ । ଘଇତା ମରିଗଲା, ଅଧାବୁଢ଼ା ଦଅର ୧୭ ବର୍ଷର ଟୋକୀକି ବାହାହେଲା । ପର ଘରୁ ଉଧାର ଆଣି କମଳୀ ଥାପିଥିଲା ଯେଉଁ ଗଛଟି, ଗାବାଳିଙ୍କ ଶିକ୍ଷାରେ ପଡ଼ି ବାହାଟଡ଼ାଳା

ହେଲରୁ ଶାଖା ମେଲେଇଲା । ବେଶୀ ରସ ଖାଇଲା ଯିନା, ତାର ନଆଁ ଲଗା ଭାଗ୍ୟକୁ କଞ୍ଚା ଫଳ ବି ଫଳାଇଲା । ପରଙ୍କ ଶିକ୍ଷାରେ ପଢ଼ି ଭାଣ୍ଡ କମଳୀ, ଆଣ୍ଠୁ କୁଢ଼ୀ କମଳୀ ସରକାରୀ କାଗଜରେ ସନ୍ଧି କରିଥିଲା । ଶେଷରେ କମଳୀ ଦେଖିଲା, ବାଲ୍ୟାପରେ ବଡ ମିଶିଛି । ଯାହା ନାମରେ ସମ୍ପତ୍ତି ହୋଇଥିଲା, ସେଇ ପୁଅ—ନୁଙ୍ଗାଟୁଅ—ଏତେ ଭାବ ସହିପାରିଲା । ଦଉାପରେ ଓଲଟି ପଡ଼ିଲା କମଳୀର ଜୀବନ କୁଣ୍ଡିଆ । ଭାତ ଅଧରେ ପୋଡ଼ିଆଁ ପୁଅ ଓ ଦୋବେଷ୍ଟା ବଅରଠୁ ମାଡ଼ ଖାଇ କମଳୀ ପିଣ୍ଡାରେ ରାତ କାଟିଛି । ଗାଁବାଲା ନିଶାପ କରିଛନ୍ତି । ଥରକୁ ଥର ମାଡ଼ଖିଆ—ଥରକୁ ଥର ନ୍ୟାସ୍ତ ନିଶାପ । କଞ୍ଚା ଫଳ ହେଇନ । ସେ ଦିନ କଥା ମନେପଡ଼ିଲେ କମଳୀର ଛାତି ବିଦାରି ହୁଏ । ସେଦିନଠାରୁ ଆଜି କମଳୀ ସୁଖରେ ନାହିଁ କି ? ହଁ, ନିଶ୍ଚୟ ଅଛି ।

ମହନ ଭାବେ—କମଳୀ ଭାବେ । ବାଲ୍‌ବାଲ୍ କରି ବାଲୁଡ ଶଙ୍କର ଦୁହିଁଙ୍କ ମୁହଁକୁ ଅନାଇଁ ରହେ । ଦୁହେଁ ଭାବନ୍ତି । ମନର କଥା କେତେକ ବାହାରେ ବଚନରେ । ଅନେକ କଥା କିନ୍ତୁ ବାକି ରହି ଯାଏ ଛାତି ଭିତରେ । କଅଣ ସେ କଥା ? କାହିଁକି ସେ କଥା କେହି କାହାକୁ କହିପାରୁନାହାନ୍ତି ? ଟୋକା ଟୋକୀ ଦିନର ସେ ଚୁଙ୍ଗ୍ ଚୁଙ୍ଗ୍ ଭାବ ତ ଆଉ ଏଇନେ ନାହିଁ । ତେବେ କଣ ସେ କଥା ?

ମହନ ଦେଖେ—ଶଙ୍କରକୁ ଖୋଇଦେଉଚି କମଳୀ । ଠିକ୍ ତ ତା ମାଆ ଭଳି ଦେଖାଯାଉଛି ! ମହନର ପେଟ ପୁରିଯାଏ ଏ ଦୃଶ୍ୟରେ । ଓଠ ତଳେ ହସ ଫୁଟେ । ଛାତିରେ କିନ୍ତୁ ଭାବ ଅଟକିଯାଏ—କମଳୀ ତ ଶଙ୍କରର ମାଆ ନୁହେଁ । କମଳୀ ଉପରେ ତାର ଅଧିକାର ନାହିଁ କି ଶଙ୍କରର ଦାବି ନାହିଁ । କମଳୀ ନିଜର ଦୟାରେ ଯାହା ସାହାଯ୍ୟ କରୁଛି । ଦୀର୍ଘ ନିଃଶ୍ୱାସ ପକାଏ ମହନ ।

କମଳୀ ଦେଖେ, ବାପ ପୁଅ ଦୁହେଁ ଖାଇ ବସିଛନ୍ତି—ଘର ପୁରି ଉଠୁଛି । ନିଜ ହାତରେ ସବୁ ବାଢ଼ିଦେଇଛି କମଳୀ । ଏମିତି ବାଢ଼ିଦେଉଥିଲା—ଢାଳପରି ଲାଗୁଛି—କେତେ ଦିନର କଥା, ତାଆରି ବର ନନ୍ଦିଆ

ନାହାକକୁ । ପାକୁଆ ପାଟିରେ ବୁଢ଼ା ହସୁଥିଲା । କମଳୀକୁ ଭଲ ଲାଗୁ ନଥିଲେ ବି ସେଇଥିରୁ ସେ ଗର୍ବ ପାଉଥିଲା । ସ୍ତ୍ରୀ ହେବାର ଗୌରବ ସେ ସେଇଥିରୁ ପାଉଥିଲା ।

ମାଆ ହେବାର ବାସନା କିନ୍ତୁ ମେଣ୍ଟି ନ ଥିଲା ତାର । ଦୋବେହୀ ବର, ବାଳ ପାଚିଥିଲା—ଧୋଲକା ଚମ—କୋରଡ଼ିଆ ଆଖି—ଉଞ୍ଚ ନାହାଣ୍ଡି ପରି ପେଟ । ମୁହଁଯାକ ଚଡ଼ଚଡ଼ ଖୁଣ୍ଟା ଦାଢ଼ି । କମଳୀକୁ ସୁଖ ଲାଗି ନ ଥିଲା । କମଳୀ ନିଜ ଇଚ୍ଛାରେ ଜାଣି ଶୁଣି ଆଣ୍ଠୁ କୁଜୀ ହୋଇଥିଲା । ଯୌବନର ଗର୍ବରେ ସେ ଫୁଲିକରି ଥିଲା ସେତେବେଳେ । ଅଳଙ୍କାର, ଶାଢ଼ୀ ପାଇବାକୁ କେବଳ ସେ ବୁଢ଼ା ନନ୍ଦଆ ନାହାକର ସ୍ୱାମୀତ୍ୱରେ ସୁଖୀ ହୋଇଥିଲା—ଘରଣୀର ଅଧିକାର ସେ ଦାବୀ କରିଥିଲା । ମାତୃତ୍ୱର ବାସନା ତ ଜାଗି ନ ଥିଲା, ଜାଗିଥିଲା ଦେହର ବାସନା ।

ତାର ଏଇ ମୋଟା ମୋଟା ମାଉଁସିଆ କଅଁଳିଆ ଦେହପାଇଁ ସେ ଖୋଜୁଥିଲା ଟାଣୁଆ ଦାହା, ଓସାରିଆ ଛାତି । ଆଉ ଶେଷରେ କାଉଁରୀକାଠି ଛୁଆଁ, ରସମଜଗୁଲ, ଫୁର୍‌ଫୁର୍ ଉଡ଼ିଲା ମନ ପାଇଁ ସେ ଖୋଜିଥିଲା ରସରସିଆ, ସପନାଭୋଳା ଟୋକାଳିଆ ମନ । ମାଆ ହେବାର ଇଚ୍ଛାକୁ ବୟସ ତାର ଡାକି ନ ଥିଲା । ସେଇଥିପାଇଁ କଲିକତା ଦେଶରୁ କାଉଁରୀମାଟି ମାଡ଼ି ଆସିଥିଲା ଯେଉଁ ଟୋକା—ଖିର ବସିଙ୍ଗା—ଗାଇ ବଜେଇ ଜାଣେ—ସଫା ଲୁଗା ପିନ୍ଧେ—ଫେର ଗ୍ରୁଚେଜ୍—ଘରଜାପଦଆ ନିଶ ରଖେ—କାନ୍ଧରେ ପାଚିଲା ମୁଗେଇ ଗାମୁଛା ପକାଏ—ହସି ହସି ମଜାରେ କଥା କହେ—ନନ୍ଦଆ ନାହାକକୁ ମଉସା ବୋଲି ଡାକେ—ବୋଜନା ନାହାକ ଘରେ ଆତଯାତ ହୁଏ—କଲିକତା ବଙ୍ଗାଳିବାବୁ କଥା ଗପେ—ଯାଦୁଘର କଥା ଭଣେ—ଚଡ଼ିଆଖାନା କଥା ବଖାଣେ—ସେଇ ନୀଳ ପାଢ଼ୀକି କମଳୀ ଲୋଭେଇ ଗଲା । ତାଆରି ଚଉଡ଼ା ଛାତି ଉପରକୁ କମଳୀ ଆଉଜି ପଡ଼ିଥିଲା—ଏକ ନିର୍ଜନ ମୁହୂର୍ତ୍ତରେ । କଣ ବିକାର ପ୍ରଶ୍ନ ସେଠି ଉଠୁ ନ ଥିଲା କିନ୍ତୁ ଘେନାଘେନିର ଗହଳ ଭିତରେ, ଦେବା ନେବାର ଚହଳ ଭିତରେ କମଳୀ ଦେଇଥିଲା ଦେହ—ପାଇଥିଲା ଉଷୁମ । ବେଶ୍ ସେତିକି—ଅଧିକ ତାର ଅଧିକା ଦରକାର କଣ ଥିଲା ?

ପୁଣି ଗଡ଼ିଲା ଚକ । ବାର ବର୍ଷଟି ପୁଣି ଅଟକିଗଲା । ମାଳ ପାଢ଼ୀ ଦାଣ୍ଡରେ ଧରାପଡ଼ିଲା । କମଳ, ଧରମା, କାଙ୍ଗାକଆ, ମାଳ ପାଢ଼ୀଠୁଁ କଥା ନେଲେ । ଗୌରବ ପାଇବାକୁ ଯିଏ ଏଥିରେ ହାର୍ଣ୍ଣ ଗର୍ଜିଲା ମାଳ ପାଢ଼ୀ, ଶେଷରେ କନ୍ତୁ ସେଇ ଭଙ୍ଗା ଖପରା ନିଜ ଗୋଡ଼ରେ ବାଜି ନିଜେ ନନ୍ଦୁ-ନୁହାଣ ହେଲା । ଗାଁବାଲା ଉଣ୍ଡିଲେ—କୋଶମାନା ଦଲେ । ମାଳ ପାଢ଼ୀ ଗ୍ରେର ହେଲା; କମଳୀଠାରୁ ଦୂରରେ ରହିଲା ସେଇ ଦନ୍ତୁ । ଅଣ୍ଟାରେ ପଣତ ଭିଡ଼ି ଦେଇ କମଳୀ ଗ୍ରୁଡ ଦମ୍ଭ କଲା—ଯାଉ କଣ ହେଉଛୁ ହେଇଯାଉ ।

ପୁଣି ଦିନେ କମଳୀ ଜାଣିପାରିଲା ମାଳ ପାଢ଼ୀ ଗାଁର ଆଉ ଜଣକ ସାଥିରେ ଭାବ ରଖିଛି । କମଳୀର ଦେହ ସହିପାରି ନ ଥିଲା । ତାର ଗ୍ରୁଡ ବଢ଼ାଉ ହୋଇଥିଲା । ତାର କଣ ସମ୍ମାନ ବୋଲି କିଛି ନାହିଁ ? ନିଜର ସବୁ ମାନ ଅପମାନକୁ ସେ ଯାହାପାଖେ ବଳି ଦେଇଥିଲା, ଯିଏ ତାର ସତୀତ୍ୱକୁ ବଳାତ୍କାରେ ଛଡ଼େଇ ନେଇଥିଲା, ସେଇ ମାଳ ପାଢ଼ୀ ଆଜି ତାକୁ ଗୋଡ଼ରେ ଠେଲି ଦେଲା । ଏ ଅପମାନର କମଳୀ ପ୍ରତିଶୋଧ ଖୋଜିଲା । ବୟସ ଆଗେଇ ଯାଇଥିଲା । ହଉଡ଼ିଆ ମନ ବସା ଖୋଜୁଥିଲା । ତେଣୁ କମଳୀ ଜିଦ କରି ରହିଲା—ଆଚ୍ଛା କଣ ହେଉଛୁ ହେଇଯାଉ । ସେ ଝାଣ ହୋଇ ରହିବ ଏଣିକି । ସପନ ନ ଦେଖି ଚେଇଁ ଚେଇଁ ଶୋଇବ । ପୁରୁଷ ଜାତି ଉପରେ ପ୍ରତିଶୋଧ ନେବ । ବନ୍ଶୀ ପକେଇବ—ଥୋପ ପାଖକୁ ଝାଣି ହୋଇ ଆସି ଥୋପ ଗିଳିବା ବେଳକୁ ସେ ଥୋପ ଉଠେଇ ନେବ । ହାଇଁପାଇଁ କରି ମାରିବ । କଉତୁକିଆ ପଦ୍ମଫୁଲ ହୋଇ ପୁରୁଷଙ୍କ ଆଖିକି ଭୁଲେଇବ । ଯେତେ ଯେତେ ପାଣିକି ଗୋଡ଼ ବଢ଼େଇବେ, ସେତେ ସେତେ ପୁହୁଁପୁହୁଁ ଯିବ ସେ ପାଣି ଭିତରକୁ—ଏକବାର ଅଥଳ ଥଳ ଗଣ୍ଡକୁ । ଶେଷରେ ଅଧାକପାଳିଆଗୁଡ଼ାଙ୍କୁ ପାଣିରେ ଉବୁଟୁବୁ କରାଇ ମାରିବ ।

କମଳୀର 'ନାରୀତ୍ୱ' ଗର୍ଜି ଉଠିଥିଲା, ନାରୀର ଯେଉଁ ଅଂଶଟା ପୁରୁଷ ସଙ୍ଗେ ପ୍ରତିଦ୍ୱନ୍ଦିତା କରେ, ସେଇ ଅଂଶଟା କମଳୀର ଥରି ଉଠିଲା ପୁରୁଷର ବିରୁଦ୍ଧରେ । କମଳୀର ମନ ପଥର ହୋଇଚାଲି । ଉପରେ ମଲ୍ଲୀଫୁଲ ପରି ବେଶ ସାଜି ଭିତରେ କିଆଫୁଲ ରଖିଲା । ଅସୁ; ମଲ୍ଲୀର ଗନ୍ଧରେ ପାଗଳ

ପର ଛୁଟିଆସୁ ବାଡ଼ପଡ଼ା ଭଅଁର—କଥା କଣ୍ଠାରେ ଫୋଡ଼ ହୋଇ ମରବ । ଆସନ୍ତୁ, କଏ ଆସିବେ ଆସନ୍ତୁ । ମରଦ, ଟୋକା, ପିଲା, ବୁଢ଼ା ଯିଏ ଆସିବ ଆସୁ । ବାଡ଼ପଡ଼ାଙ୍କ ଚେଙ୍ଗେଲେଖା ଦେବ ଯେ । ତାଛୁଲ୍ୟ ହସ ହସିଲା କମଳୀ—ଭୟଙ୍କର ଦେଖାଉଡ଼ ହସ ।

ଠିକ୍ ତାର ପରେ ପରେ କମଳୀ ମୁଣ୍ଡରୁ ସିନ୍ଦୂର ଲଭିଲା ଚରକାଳ ପାଇଁ । କଚ୍ଛୁ ବଶେଷ ଦୁଃଖ ହେଲନ ତାର । ଲୋକଦେଖାଣିଆ କାନ୍ଦ କାନ୍ଦସାର ସେ ଅଣ୍ଟାରେ ପିନ୍ଧିଲା ଚଉଡ଼ା ଅଣ୍ଟାସୂତା । ବାହୁରେ ପିନ୍ଧିଲା ମୋଟା କଡ଼ା, କାନରେ ନାଇଲା ଫାସିଆ, ବେକରେ ପିନ୍ଧିଲା ସୁନାର ହାର । ଧଳା ଶାଢ଼ି ଭିତରେ ଗୋରା ଚକ୍‌ଚକ୍ ଦେହେରା—ସପନ ରାଇଜର ପରୀ—କୁହୁଡ଼ିଆ ଜହ୍ନରାତରେ କଇଁ । ଲୋଭେଇ ପଡ଼ିଲେ ଗାଁର ଟୋକା, ପିଲା, ବୁଢ଼ା । ଗୋଟି ଗୋଟି ହୋଇ ଛୁଟିଆସିଲେ—କମଳ, ଧରମା, ରତନା, ଦୁଆଣ, ଅଗାଧୁ—ଲୁଚ ଲୁଚ ଛପିଛପିକା । କଏ ଲାଞ୍ଚ ଯାଚିଲା—କିଏ ଟଙ୍କା ପଇସା ବା ରସଗୋଲା ମିଠେଇ ।

ଖୁବ୍ ହୁସିଆର ରହ, ଗ୍ରାମ ଦମ୍ପକଣ ଚେତ୍ରରହି କମଳୀ ହସିଲା—ଅଭିମାନ କଲା, ରୁଷିଲା । କେତେବେଳେ ବା ମିଠାକଥା କହି ମନ ତୋଷିଲା । ସୁନ୍ଦର ରୂପ, ପୁଣି ମିଠା କଥା— ଲୁଣ୍ଡା— ଅଙ୍ଗଭଙ୍ଗୀ—ଆଖିଠାରା—ଅଧମାଗୁଡ଼ାଙ୍କ ଅସ୍ଥିର କଚପକାଇଲା । କଏ ବାହା ବଢ଼େଇଲା—କିଏ ଓଠ ବଢ଼େଇଲା—କିଏ ବା ଗ୍ରାମ ଉପରକୁ ହାତ ବଢ଼େଇଲା । ଠିକ୍ ବେଳରେ, ଉଚତ ମୁହୂର୍ତ୍ତରେ କମଳୀ କାହାର କାନ ମୋଡ଼ିଲା ତ କାହାକୁ ମାରିଲା; କାହାକୁ ବା ବକିଲା ।

ପଶିଲା ପଶିଲା ଗାଲ, ରାତ ଉଜାଗର ମଇଳା ଆଖି—ଛଡ଼ା ଛଡ଼ା ଫାଙ୍କ ଓଠ ଗୁଡ଼ାକରେ ଅତୃପ୍ତିର ଗ୍ରୁପ ପକାଇ, ଶୁଖିଲା ନିଃଶ୍ୱାସ ମାରି, ଚଉଡ଼ା ଗ୍ରାମରେ ହାଡ଼ ଦେଖାଇ ଫେରିଗଲେ ମାଧବ ଗାଁର ଅଧମା ଭେଣ୍ଡା, ଟୋକା, ପିଲାଗୁଡ଼ାକ—ଲୁଚିଲୁଚି ଛପିଛପିକା । ଯିଏ ଟୋକା ଦେଖିଲେ ଆଖିମାରନ୍ତି, ବୋହୂ ଦେଖିଲେ ମୋହ ହୁଅନ୍ତି, କୋହ ଉଠାନ୍ତି, ଝିଅ ଦେଖିଲେ ମହିଁ ଫିଟାନ୍ତି. ଥଟ୍ଟା କରନ୍ତି—ପଣି ଫେରିଲେ ଉପର ମହଲ

ଡାଲକୁ କାଶ; ଧୋଳକା ଚମକୁ ଅଣ୍ଟୁରି ଧୋଳକା କାଶ—ଦାନ୍ତ ରଗଡ଼ । ଗାଁର ମାମଲତକାରଆ ବୁଢ଼ା ସବୁ, ଯିଏ ଭାଗବତ ଘରେ ଭାଗବତ ଶୁଣନ୍ତି—ଭଜନ କରନ୍ତି—ଡ଼ ଦ୍ଧା ଧରନ୍ତି—"କାମିନୀ କାଞ୍ଚନ ନଶା ତେଜ ଆରେ ମନ"; ଆଉ ଯିଏ ପର ବୋହୂକୁ "ବୋଉ" ବୋଲି ଡାକନ୍ତି—ପଢ଼ିଥିବା ଧର୍ମ ହିଁ ଅ କରନ୍ତି—ସମସ୍ତେ ଫେରିଲେ ଉଜ୍ଜ୍ୱଳ ବିକଳ ହୋଇ । ପାଇ ପାଇଲେନି । ଅଧ୍ୟାପକଙ୍କାରଆ—ଧରି ଧରିଲେନି । ସମୁଦ୍ରକୂଳେ ପହଁରି ଶେଷରେ ତଳ୍ପି ଶୁଖେଇଲେ । କମଳୀର ଓରମାନ ମେଣ୍ଢି ଲି—ମନର ଗଳ୍ପ ମଲା ।

ସେ ଦିନ ଚାଲିଯାଇଛି ।

ଫେରେ ଚକ ଓଲଟିଛି । ବଦଳିଛି ସେ ବୟସ । ଆଗର ମେଞ୍ଚ ଗୁହଫୁଲ ଠାଣି ଭାଙ୍ଗିଯାଇଛି । କମଳୀର ମନ ବଦଳିଛି । ପୂର୍ବର ସେଇ ନାରୀତ୍ୱ ଆଜି ଭିନ୍ନ ରୂପ ଧାରଣ କରିଛି । ଆଜିକାଲି ମହନକୁ ଖାଇବାକୁ ଦେଲାବେଳେ କମଳୀ ଯେପରି ତା ଭିତରେ ଏକ ତୀବ୍ର ଯନ୍ତ୍ରଣା ଅନୁଭବ କରୁଛି । ଯଦିଓ ଆଗ ଅପେକ୍ଷା ସୁଖରେ ଅଛି—ହସୁଚି, କଥା ଗପୁଛି, ତଥାପି କଅଣ ସେ ବରାବର ସୁଖରେ ଅଛି ?? ଶଙ୍କର—ନାହିଁ ଅକଟା ସାତବରଷର ଟୁଆ—ବୋଉ ବୋଉ ବୋଲି ଡାକିଦିଏ ସତ—ଯିଏ ଜାଣେନି କିଏ ମା, କିଏ ମାଉସୀ । କମଳୀ ତାକୁ କୋଳରେ ଧରେ । ବାପଲୋ ଧନଲୋ କହି ଗେଲ କରେ । ତା ବୋଉ ଡାକର ଜବାବ ଦିଏ । ସବୁ କରେ, କିନ୍ତୁ କମଳୀର ମନରେ ରହିଯାଏ ଖଟକା । ଗୁହର ବୋଉ କାଣରେ ପରାସ ଲାଗେ । ଶଙ୍କର ତା'ର ପୁଅ ନୁହଁ । ଶଙ୍କର !! ମହନର ସ୍ତ୍ରୀ ତାକୁ ଅନ୍ତଫାଡ଼ି ଜନ୍ମ ଦେଇଛି । ମହନ ରକତ ଖାଲି ତା'ଠାରେ ବହୁଛି । ନିଜର ରକତ, ନିଜ ଦେହର ଗୁପ ତ ତା' ଉପରେ ପଡ଼ିନି ! ଶଙ୍କର ତାର ପୁଅ ନୁହଁ । ସେ ଏପର୍ଯ୍ୟନ୍ତ ମାଆ ହୋଇ ପାରିନି, ଏଥିପାଇଁ ତାକୁ ବଡ଼ ହୀନମାନ ଲାଗେ ।

କାଳିଆ ବଳେଇ ବଇଦିଇଟା ଟୁଆ ଖେଳେଇ ଖେଳେଇ, ଭୁମଫୁଲ ଲାଙ୍ଗୁଳ ହଲେଇ ହଲେଇ କମଳୀ ଗୋଡରେ ଘଷିହୁଏ । କମଳୀର ଦେହ ସହେନି । ଦେଖ ତ ବଡ଼େଇ ! ବୋଗୀଣୀ ପିଲାଟିଏ ଧରିଛି ବୋଲି ଦହରେ

ଘଷି ହେବ ! ଯୋଉ ତ ଝିଅ ! ତୁମ ଉପୁଡ଼ ଯାଉଛ, ଆଖି କଣା, ଆଖି କଣରେ କଣେ ନେଇଯିବ ! ଝିଅ ଦେଖେଇ ହଉଛ ! କମଳୀ ଚଡ଼ିଯାଏ —ଗୋଡ଼ ଛୁଞ୍ଚାଡ଼େ । ବଲେଇ ଛୁଆଗୁଡ଼ାକ କରଗ୍ରଡ଼ିଆ ହେଇ ପଡ଼ନ୍ତି । କମଳୀ ପୁଣି 'ଆହା' କହେ । ରୋଗୀଣା ଛୁଆଙ୍କୁ ଚୂଟୁ କରି ପାଖକୁ ଡାକେ —ଆଉଁସେ—ଖାଇ ଦିଏ । ଆଖିରୁ ବହେ ଲୁହ—ଲୁହ ନୁହଁ ଚଟଳ ଲହୁ ।

ମଦନ ଭାବେ—କମଳୀ ଅବଶ୍ୟ ତାକୁ ପରବୋଲି ଭାବୁନି । ଠିକ୍ ନିଜ ଘର ମଣିଷ ପରି ପେଟ ଭିତରର ଦରଜ ବୁଝେ କମଳୀ । ଶଙ୍କରକୁ କେବେ କାହିଁରୁ ଓହ୍ଲେଇନି ସେ । ତଥାପି ମଦନର ମନ ବୋଧ ହୁଏନି । କମଳୀ ତାର ଅତି ନିକଟରେ—କିନ୍ତୁ ତାକୁ ଲାଗେ ଯେତେ ବା ଖୁବ୍ ଦୂରରେ ! ଏକା ଘରେ କମଳୀ ସହିତ ଦିନ କଟିଛି—ରାତି ବି କଟିଛି । କାହିଁକି କେଜାଣି ମଦନର କମଳୀ ପ୍ରତି ଭୟ ହୁଏ; ଅବିଶ୍ୱାସ ବି ହୁଏ । କମଳୀ ବଳରେ ଚୁଲି ଚଳେଇ । ଖାଇପିଇ ରହିଛି ସତ, କିନ୍ତୁ କାଲେ ସେ ଛାଡ଼ି ଚାଲିଯିବ ! କମଳୀ ଉପରେ ତାର ଦାବି କଣ ? ନାଁ—ଆଉ ଥରେ ଭଙ୍ଗା ଘରକୁ ଯୋଡ଼ିବାକୁ ଇଚ୍ଛା ହୁଏ ମଦନର ।

କମଳୀର ମନ ଅସ୍ଥିର ହୁଏ । ଲୁଚିଲା ମାତୃତ୍ୱ ଅସମ୍ଭାଳ ହୁଏ ଛାତି ଭିତରେ । ସେ ଭାବେ—ଏତେ ଦିନ ହେଲାଣି ସେ ଯେ ଏ ସଂସାରକୁ ଆସିଛି—ଶ୍ରେଷ୍ଠ ହେଉ ପଛେ—ଦୁନିଆଁ ଭିତରେ ସେ ଯେ ବଂଚିଛି ତାହାର ପ୍ରମାଣ କଣ ? ଏ ବିରାଟ ସଂସାରର ଗହଳ ଚହଳ ଭିତରେ, ଗଳି ଅଗଳି ଭିତରେ ତାର ନିଜର ଅସ୍ଥିତ୍ୱକୁ ପ୍ରମାଣ କରିବା ଲାଗି କଅଁଳ କୁଆଁ କୁଆଁ ରଡ଼ି କାହିଁ । ନାଃ ! କମଳୀ ଛଟପଟ ହୁଏ । ତାର ସନ୍ତାନ ଦର-କାର । 'ବୋଉ' ଡାକ ନ ଶୁଣିଲେ ତା' ପ୍ରାଣ ଆଉ ରହିବନି । ସନ୍ତାନ ଦରକାର କେବଳ । ଯେ କୌଣସି ଉପାୟରେ ସନ୍ତାନ ଚାହିଁ । କମଳୀ ପୁଣି ଚମକିଉଠେ । ଏଁ, ସେ ଯେ ରାଣ୍ଡି, ଆଣ୍ଟୁକୁଡ଼ୀ ! କମଳୀର ଆଖିରୁ ବାହାରେ ନିଆଁ, ଫୁଲି ଫୁଲି ବଙ୍କା ହୁଏ ଓଠ । ନାଁ, ନାଁ, ସେ ରାଣ୍ଡି ସତ—କିନ୍ତୁ ଅଣ୍ଟୁକୁଡ଼ୀ ସେ ହୋଇପାରିବନି, ରାଣ୍ଡି ହବ ପଛକୁ ।

ତେବେ କିଏ ହେବ ତାର ଭବିଷ୍ୟତ ସନ୍ତାନର ଜନକ ? କମଳ ? ଛି ଛି ! ତେବେ ଆଉ କିଏ ? ସେଇ କମଳପରି ଆଉ ଜଣେ—ମାଳ ପାଢ଼ୀ—ଯିଏ ସ୍ତ୍ରୀ ପୁରୁଷର ଭାବ ନାବକୁ ସପନ ଭଳି ମନେକରେ ? ଯେ କେବଳ ଧୂଳିଘର କରି ଖୁସିହୁଏ ? ଯିଏ କେବଳ ବୋହୂବୋହୂକା ଖେଳରେ 'ଗେରସ୍ତ' ହୋଇପାରେ ? ଏଇ ବିରାଟ ସୃଷ୍ଟିର 'ସ୍ରଷ୍ଟା' ହେବାର ବୋଝକୁ ସମ୍ଭାଳିବାରେ ଅକ୍ଷମ ହୋଇ ଯେ ପଳାଇଯାଏ, ଗୋଟେ ଫୁଲିଫାଙ୍କିଆ ଜୀବନ କଟେଇବାକୁ ? ଯାହା ପାଖରେ ଜୀବନର ଭାର ନାହିଁ, ଦାୟିତ୍ୱ ନାହିଁ ? ଛୁଆ ! ଛୁଆ ! ତା ବାପ ହବା ମୁହଁରେ ନିଆଁ ଲଗୁ । ସେ ହେଇପାରେନା ତାର ସନ୍ତାନର ବାପ ।

ଆଉ କିଏ ? ମଦନ ? କମଳୀ ଛେପ ଢୋକେ । ମୁହଁ ରଙ୍ଗେଇ ଅସେ । ହଁ, ଏଇ ଘୁଙ୍ଗା ମଦନ ! ପରର ଭଲ ମନ୍ଦରେ ଯେ ନ ଥାଏ । ମାଲିମକଦମା, ନ୍ୟାସ୍ତ ନିଶାପ, ଭଜନ କୀର୍ତ୍ତନ ପରି ଲୋକଦେଖାଣିଆ କୁଣ୍ଢେଇ ନାଟରୁ ଯେ ଦୂରେଇ ରହେ, ସେଇ ବୋକା ମଦନ ହେବ ତାର ସନ୍ତାନର ବାପ । ସେଇ ମଉନମୁହାଁ ପୋଡ଼ାମୁହାଁ ମାଇଚିଆ ମଦନ ପଧାନ ହବ ତାର ସନ୍ତାନର ବାପ ? ଚମକିପଡ଼େ କମଳୀ ।

ଚମକିପଡ଼ିଲା ମଦନ । ଅନ୍ଧାରିଆ ଆଟୁଘର ଉପରେ ଓଳିଆ ପାଖେ ହେଁସ ପାରି, ଉଦୁଲ ବିକଳ ହୋଇ ଧଦାକୁ ବାହାରିଆସିଲା ମଦନ— "କଅଣ କହୁଚୁ ତୁ କମଳୀ ? ଜାତଆଣ କଥା—ଏ କଣ ପିଲାଖେଳ ? ଜାତଭାଇ ରାଜି ହେଲେ ତ ଫେର୍ ?"

ଚମକ ପଡ଼ିଲା ଶଙ୍କର । ଓଳିଆ ସନ୍ଧିରୁ ଚେଁ ଚେଁ ଚୂଚୁନ୍ଦ୍ରା ଗୋଡ଼ାଗୋଡ଼ି ଶବଦରେ ଚରଚର ହେଲା ଶଙ୍କର ।

କମଳୀ ରାଗିଗଲା—"ସେମିତ ମାଇଚିଆ ପରି ହୁଅନା । ସଫା ଜବାବ ଦିଅ । ଫେର୍ ଥରେ ମୋ ସାଥିରେ ଏ ଘରକୁ ଯୋଡ଼ିବ କି ନାହିଁ ?"

—"ଆଉ ଥରେ ? ତା ହେଲେ ତୁ କହୁଚୁ ଆମେ ଦୁହେଁ ଦୁଆସ୍ତ ହୋଇ ରହିବା ? ତୁ ରାଜି ଅଛୁ ତାହେଲେ, ନାହିଁ ?" ମଦନ କାହିଁକି

କଥା ପଦେକ କହୁ କହୁ ହସିପକେଇଲ ।

ତା'ପରେ ଦୁହେଁ ଯାକ ତଳକୁ ମୁହଁ ପୋତ କରୁ ସମସ୍ତ ଠିଆ ହୋଇ ରହିଲେ । ଅଧଘଡ଼ି—ନଣା ଗଲ୍ଲୁଚୁ । ହଠାତ୍ ନୀରବତା ଭାଙ୍ଗି ମହନ କହିଲ—"ଗୃହିଣୀ କମି, ତୁ ସିନା ଏ କଥା ଅଜ ଭାବୁଚ, କିନ୍ତୁ ମୁଁ ଏକଥା ବହୁତ ଆଗରୁ ଭାବିସାରିଲଣି । ଏଇ ଶଙ୍କରଯୋଗୁଁ—ମାଛେଉଣ୍ଡ ପିଲଟା —କାଳେ କିଏ ତାକୁ ହୀନସନ୍ନ କରିବ—ଏଇଥି ପାଇଁ ଆଉ ସେ ବାଟକୁ—।"

କମଳୀ କଣ ବୋଧେ କହୁଥାନ୍ତା, ମାତ୍ର ଏତିକିବେଳେ ଅନ୍ଧାରିଆ କାଗୁଡିଆ ଶୋଇଲା ଘରୁ ବିଛଣା ଉପରେ ଶଙ୍କର ବାଳିବଳେଇ ଉଠିଲା— ବୋଉଲୋ···ଓ···ଓ··· !!

କମଳୀ ଉଠିଆସିଲ ଶଙ୍କର ପାଖକୁ । ପିଲ ଲେକ—ଡରମାଡ଼ୁଚି ଏକୁଟିଆ ଘରେ ! ଆହା, ବିଚର ମାଛେଉଣ୍ଡ ନଥିମାଖି ପିଲଟି !! "ଯାଉଚୁରେ ଧନ ।" ଶଙ୍କର ପୁଣି ଥରେ ଡାକିଲ—"ବୋଉଲେ······" । କମଳୀ ଢେରଥର ଶଙ୍କର ପାଟିରୁ 'ବୋଉ' 'ବୋଉ' ଡାକ ଶୁଣିଚୁ । ମାତ୍ର ଆଜିର ଏଇ 'ବୋଉ' ଡାକରେ ସତେ ବା ସେ ନୂଆକରି କେଉଁ ହଜିଲା ଧନର କେଉଁ ଏକ ମିଠା ସ୍ପନର ସୁଆଦ ପାଇଲା !

ଆଉ ଶଙ୍କର ବି ନିଶ୍ଚୟ କମଳୀର ଆଜି ଏଇ "ଯାଉଚୁରେ ଧନ" ଉତ୍ତରରେ କେଉଁ କାଳରେ ଏକ ହଜିଲା ମାଧୁର୍ଯ୍ୟର ସୁଆଦ ପାଇଥିବ !

କିନ୍ତୁ ମହନ ! ସେ କଅଣ ପାଇଲା ? ହଁ ପାଇଥିବ ନିଶ୍ଚୟ ! ନିଶ୍ଚୟ ପାଇଥିବ !!



# ଡାକ୍ତର ମୃଣାଳିନୀ

ଭାବିବାକୁ ବେଳ ନାହିଁ, ତଥାପି ଥରେ ଭାବିବସିଲେ ଭାବନାର ଖିଅ ରହେନାହିଁ । ସବୁ ଖାଲି ଅଡ଼ୁଆ ଆଉଡ଼ୁଆ ନୁଖୁରା ! ଫୁରୁଫୁରୁ ଅଲରା ବାଳ । କଚୁବୁଣିରେ କାଂଚ କାଂଚ କରି କାଟିଦେବାକୁ ମନହୁଏ । କିନ୍ତୁ ଚାରିପଟେ ଜମାହୁଏ ରାଶି ରାଶି ମେଞ୍ଚା ମେଞ୍ଚା ଆବର୍ଜନା । ଶିହରି ଉଠେ ଦେହ । ଘୃଣାରେ ହଲ୍କିପ୍ରି ଉଠେ ଛାତି—ଇଃ, ଏତେ ଆବର୍ଜନା ! ଏତେ ବାସନା !! ଏତେ କଦର୍ଯ୍ୟ !!!

ଏଇ ଆବର୍ଜନାର ଖୋଳ ମଧ୍ୟରୁ ନିଖୁଣ ଓ ସୁନ୍ଦରଭାବେ, ନିରାପଦରେ ପ୍ରଜାପତିପରି ଉଡ଼ିଯିବାକୁ ମନହୁଏ ଡାକ୍ତର ମୃଣାଳିନୀ ନାୟକଙ୍କର ।

ଛଟପିଟି ହୁଏ ମନ—କାମରେ ଲାଗେନି ମନ—ସୁରୁଣ୍ଡି ହୁଏ ଛାତି । ଅନ୍ୟମନସ୍କ ଭାବେ ଟେବୁଲ ଚାରିପଟେ ସମାବୃତ ରୋଗୀମାନଙ୍କର ରୋଗର ଲକ୍ଷଣ ଓ ଉପସର୍ଗ ବାର୍ତ୍ତା ଶୁଣୁ ଶୁଣୁ ମୃଣାଳିନୀ ଦଶଥର ଔଷଧଖାନା ଭିତରକୁ ଉଠି ଯାଆନ୍ତି । ପୁଣି ଫେରି ଆସନ୍ତି । କାହିଁକି ଉଠିଯାଇଥିଲେ ମନେପଡ଼ୁନି ।

ଡାକ୍ତର ମୃଣାଳିନୀଙ୍କର ଭୟ ହେଉଛି ଆଜିକାଲି—ସେ ବୋଧେ ଏ ବୟସରେ ପାଗଳ ହୋଇଯାଉଛନ୍ତି । ଆଉ ଏ ଅବସ୍ଥାରେ ଔଷଧ ବ୍ୟବସାୟ କରିବା ତାଙ୍କ ପକ୍ଷରେ ନିରାପଦ ନୁହେଁ । କିନ୍ତୁ କାହିଁକି ଏପରି ହେଉଛି ? ଏ ଚିତ୍ତବିକ୍ଷେପର କାରଣ କଣ ? କଣ ହୋଇପାରେ ? ଡାକ୍ତର ମୃଣାଳିନୀ ଅସ୍ଥିର ହୋଇ ଉଠନ୍ତି । ସେଦିନ ମେଡ଼ିକାଲର ଆସିଷ୍ଟାଣ୍ଟ ସର୍ଜନ ବୃଦ୍ଧ ଡକ୍ଟର ଭଟ୍ଟାଚାର୍ଯ୍ୟ ଦୋକାନକୁ ଆସି ମୁହଁରେ ସ୍ୱସ୍ତିର ପ୍ରବୋଧନା ଦେଇ

କହିଲେ—"ଡକ୍ଟର ମିନାଲିନ୍ ! ଆପଣଙ୍କର ସ୍ୱାସ୍ଥ୍ୟ ଦରକାର କରୁଛି ବିବାହ । ହଁ ହଁ—ଆପଣ ବିଶ୍ୱେ କରେ ଫେଲନ୍ ।

ବିବାହ ? ହଁ ହଁ ବିବାହ ! ବୟସ ୪୦ ଧରିଲାଣି । ଦେହ ଅବଶ୍ୟ ମୋଟାସୋଟା । ସେ ଯୌବନକୁ ଭୁଲିଗଲେ ବି ଯୌବନ ହୁଏତ ତାଙ୍କର ମୋହ ଗ୍ରାଡ଼ିପାରିନି ! ହୁଏତ ତାଙ୍କର ଦେହ ଉପରେ ପୂର୍ବାପେକ୍ଷା ଯୌବନରଙ୍ଗ ବେଶୀ ଲାଗିଛି । କିନ୍ତୁ ତଥାପି ବି ଦର୍ପଣ ଆଗରେ ଠିଆହୋଇ କେତେ ଥର ଡାକ୍ତର ମୃଣାଳିନୀ ତାଙ୍କ ମୁଣ୍ଡର ଘନ କୃଷ୍ଣ କେଶରାଶି ମଧ୍ୟରୁ ଗୋଟିଏ ଦୁଇଟି ପକ୍ୱ କେଶର ଉତ୍ପାଟନ ଯେ ନ କରିଛନ୍ତି ଏମନ୍ତ ନୁହଁ ।

କିନ୍ତୁ ବିବାହ ? କିଏ କରିବ ତାଙ୍କୁ ବିବାହ ? ସେ ବି ଆଉ ବିବାହ କରିପାରିବେ କେମିତି ? ବେଦୀ ଉପରେ ଅବଗୁଣ୍ଠନବତୀ ହୋଇ, କପାଳରେ ସିନ୍ଦୂର ଟୋପା ଲଗାଇ ନବବଧୂରୂପେ କିପରି ସେ, ନିଜକୁ ସଜାଡ଼ି ନେଇ ପାରିବେ ପରିସ୍ଥିତି ସଙ୍ଗରେ ? ଏବଂ ଶେଷରେ କିଏ ହେବ ତାଙ୍କର ସ୍ୱାମୀ ?

ଡାକ୍ତର ଭଟ୍ଟାଚାର୍ଯ୍ୟଙ୍କର ପ୍ରଶ୍ନର ପରିହାସମୟ ଉତ୍ତର ଦିଅନ୍ତି ମୃଣାଳିନୀ—"ବିବାହ ପାଇଁ ମୁଁ ରାଜି ଅଛି ଡାକ୍ତର ଭଟ୍ଟାଚାର୍ଯ୍ୟ ! କିନ୍ତୁ ମୋର ଏଇ ସ୍ଥୂଳକାୟ ଶରୀରଟିକୁ ବିଶେଷ ଭାବେ ବହନ କରି ପାରିବ ଏପରି କିଏ ସେ ପୁରୁଷପୁଙ୍ଗବଟି ? ତା ଛଡ଼ା ମୋଠାରେ ବି ଏତେ ଜୋର୍ କାହିଁ, ମୋର ଅନାଗତ ସ୍ୱାମୀ ଦେବତାଟିକୁ ମୋର ସ୍କନ୍ଧରେ ବସାଇ ବହନ କରି-ନେବାକୁ ? ମୁଁ ତ ବାଟ ଚାଲିଲେଇ ଧଇଁସଇଁ ହୋଇଯାଉଛି ।" ପାକୁଆ ପାଟିରେ ନକଲି ଦାନ୍ତର ଧାଡ଼ି ଦେଖାଇ, ହସି ହସି ଲେଟିଯାଆନ୍ତି ପଚାଶ ବର୍ଷ ବୟସରୁ ବିପର୍ଯ୍ୟକ ଡାକ୍ତର ଭଟ୍ଟାଚାର୍ଯ୍ୟ ।

× × × ×

ଡାକ୍ତର ମୃଣାଳିନୀ ନାୟକ—ଦିନକୁ ଦିନ ବେଶୀ ଅନ୍ୟମନସ୍କ ଭାବ । ବାଟ ଚାଲିଲେ ହଜାର ଥର ଝୁଣ୍ଟି ପଡ଼ନ୍ତି । କିଏ ଯେପରି ହଳେଇ ଦେଇଛନ୍ତି । ନିଜର ଅଜାଣତରେ—ନା ନା, ନିଜର ଜାଣତରେ ବି ସେ

ଯେପରି କିଛୁ ଗୋଟେ ପାଣିରେ ପକେଇ ଦେଇଛନ୍ତି ! ଅଥଚ ସେ ପାଣିରୁ ଆଉ ତାକୁ ଉଦ୍ଧାର କରିବାର କୌଣସି ଆଶା ବି ନାହିଁ !!

ଔଷଧଖାନାର ଠିକ୍ ଦୁଆରବନ୍ଧ ଉପରେଇ ଗୋଟେ ପୁରୁଷ ମୁଣ୍ଡର ବଡ଼ ଛବି । ସୁନ୍ଦର, ସୁଠାମ, ଲୋଭନୀୟ ସେ ମୂର୍ତ୍ତିଟି । ସମଗ୍ର ମୁଖମଣ୍ଡଳରେ ୧୮-୧୯ ବରଷ ବୟସ ତରୁଣର ସରଳ ଲାବଣ୍ୟମୟ ତାରୁଣ୍ୟ । ମାଂସଳ ଗଣ୍ଡଦେଶ । ଲୋମଶ ଆଖିପତା । କାକକୃଷ୍ଣ ତରଙ୍ଗାୟିତ ଘନ କେଶଗୁଚ୍ଛକ ପୃଷ୍ଠଦେଶକୁ ଆମନ୍ତ୍ରିତ । ସୁବିସ୍ତୃତ ଚକ୍ଷୁ ଦିଓଟିର ମଧ୍ୟବର୍ତ୍ତୀ ତାରକା ଦୁଇଟି ଦୀପ୍ତିମନ୍ତ—ମାତ୍ର ତାହା ଦର୍ଶକର ଚକ୍ଷୁକୁ ଝଲସାଇ ଦିଏନାହିଁ—ବରଂ ତାକୁ ଉପଭୋଗ କରିବାପାଇଁ ସ୍ୱାଗତ ଜଣାଏ । ନାକତଳେ ଗଜୁରି ଆସୁଛି ନିଶ । ପାତଳ ଓଠ ଦିଓଟିରେ ଓଠ ଲଗାଇଦେବାକୁ ମନ ହୁଏ । ମୋଟ-ଉପରେ ସମଗ୍ର ମୂର୍ତ୍ତିଟିରେ ଏକ ସରଳ ଲାବଣ୍ୟମୟ କିଶୋର କିଶୋରୀଙ୍କର ଅପୂର୍ବ ସମନ୍ୱୟ । ଡାକ୍ତର ମୃଣାଳିନୀ ଏଇ ଫଟୋଟି ଆଡ଼କୁ ଚାହିଁରହନ୍ତି ଅନେକ ସମୟରେ । ସମସ୍ତେ ଜାଣନ୍ତି ଡାକ୍ତରାଣୀଟି ଅବିବାହିତା । କିନ୍ତୁ କାନ୍ଥପରିକି ଏଇ ଫଟୋଟି ସଙ୍ଗେ ତାଙ୍କର କି ସମ୍ପର୍କ ସେ କଥା ତ କେହି ଜାଣନ୍ତି ନାହିଁ । କିନ୍ତୁ ସେ ସମ୍ବନ୍ଧେ ଗବେଷଣାର ଅନ୍ତ ନାହିଁ । ଡାକ୍ତରାଣୀ ନାୟିକ ଓ ଏଇ ଫଟୋଟିକୁ ନେଇ କେତେ ରୋମାଞ୍ଚକର ଗଳ୍ପ, କେତେ ମନସ୍ତାତ୍ତ୍ୱିକ ଗବେଷଣା ଯେ ହୋଇନଯାଇଛି, ତା ନୁହେଁ । ଅଜି ପର୍ଯ୍ୟନ୍ତ ବି ତାର ବିରତି ନାହିଁ । ଔଷଧଖାନା ପାଖର ପାନଦୋକାନୀ ସଇତା ସିଂ କହେ, 'ଡାକ୍ତରାଣୀଙ୍କ ବୟସ ବେଳେ, ସେତେବେଳେ ସେ ସ୍କୁଲରେ ପଢ଼ା କରୁଥିଲେ । ଏଇ ଟୋକା ସାଙ୍ଗରେ ତାଙ୍କର ଲଭ୍ ଥିଲା । ସେ ଟୋକା କୁଆଡ଼େ ଟାଇଫଏଡ଼ରେ ମରିଗଲା । ଆଉ ସେଇଦିନୁ ଡାକ୍ତରାଣୀ ବାହା ହେଲେନି ।' ଘୋଡ଼ାଗାଡ଼ିବାଲା କରିମ୍ ଖାଁ କହେ—'ସେ ଟୋକାକୁ ଡାକ୍ତରାଣୀ ଧରମ୍‌ପୁଅ କରିଥିଲା । ପଇସାପତର ଦେଇ—ଖାଇବାକୁ ଦେଇ—ନିଜ ଘରେ ରଖି ସେ ଟୋକାକୁ କଲେଜରେ ପଢ଼ାଉଥିଲା । ସେ ନିମକ୍‌ହାରାମ୍ ଟୋକା ସବ୍ ଖାଇ ପିଇ ଦିନେ ଦେଲା ଚମ୍ପଟ୍ ।'

ତଳ ମହଲରେ ଏସବୁ ଆଲୋଚନା ।

ଉପରମହଲରେ କେହି କନ୍ତୁ ସାହସ କରି ଡାକ୍ତର ମୃଣାଳିନୀଙ୍କୁ ପଚ୍ଚରି ପାରନ୍ତନି ସେ ଫଟୋ ବିଷୟରେ । ସମସ୍ତଙ୍କର ଭୟ—କେଜାଣି କି ବେଦନାମୟ ଇତିହାସ ସେ ଫଟୋତଳେ ଲୁଚି ରହିଛି !! ଅକାରଣ ଜାଣିଶୁଣି କିଏ ବା କାହିଁକି ସେ ରହସ୍ୟର ଆବରଣ ଭେଦ କରିବାକୁ ଚେଷ୍ଟା କରିବ ? ହୁଏତ ଡାକ୍ତରଣୀ······

କିଛି ଦିନ ପରେ ଦେଖାଗଲା—ଡାକ୍ତର ମୃଣାଳିନୀଙ୍କର ଔଷଧ ଦୋକାନରେ ଆଉ ଭିଡ଼ ନାହିଁ । କେହି ଆଉ ଡାକ୍ତରଣୀଙ୍କଠାରୁ ରୋଗର ବ୍ୟବସ୍ଥା ବା ଔଷଧ କିଣିବାକୁ ଆସୁନାହାନ୍ତି । ଡାକ୍ତରଣୀ ମନା କରି-ଦେଇଛନ୍ତି—ତାଙ୍କର ମୁଣ୍ଡ ଠିକ୍ ନାହିଁ—ଏପରି ଅବସ୍ଥାରେ କାହାକୁ ଔଷଧ ବା ବ୍ୟବସ୍ଥା ପତ୍ର ଦେବା ତାଙ୍କ ପକ୍ଷେ ଅସମ୍ଭବ ।

ଦୋକାନ ଉଠିଗଲା ।

କିନ୍ତୁ ପ୍ରତିଦିନ ଅପେକ୍ଷାଗାରରେ ଡାକ୍ତର ମୃଣାଳିନୀ ବସି ରହନ୍ତି—ଗମ୍ଭୀର ହୋଇ କଣ ଯେପରି ଭାବୁଛନ୍ତି ସବୁବେଳେ । ଏ ବୟସରେ ଡାକ୍ତରଣୀଙ୍କଠାରେ ଆକସ୍ମିକ ଏ କି ପରିବର୍ତ୍ତନ ? ସବୁରି ମୁହଁରେ ପ୍ରଶ୍ନବାଚକ—ସବୁରି ମୁହଁରେ ସନ୍ଦେହର ମେଘ । ଡାକ୍ତରଣୀଙ୍କର କଅଣ ହୋଇଛି ? ମେଡ଼ିକାଲ କଲେଜର ପ୍ରଥମ ବାର୍ଷିକ ଛାତ୍ରୀ ମିସ୍ ସ୍ୱର୍ଣ୍ଣଲତା କୁହନ୍ତି—ଅବିବାହିତ ଅବସ୍ଥାରେ ବହୁଦିନ ଭଲଖାଦ୍ୟ ଓ ଭଲ ଜଳବାୟୁରେ ଖାଲି ବସିରହିଲେ ଅନାବଶ୍ୟକ ମେଦ ବୃଦ୍ଧି ହୁଏ । ଆଉ ଏଇ ମେଦ ବୃଦ୍ଧିହିଁ ଡାକ୍ତର ମୃଣାଳିନୀଙ୍କର ଏଇ ପରିସ୍ଥିତିର କାରଣ ।

× × ×

ମୋର କାର୍ଯ୍ୟକ୍ଷେତ୍ରରୁ ମୋର ବସାକୁ ଫେରିବା ପଥରେ ଡାକ୍ତର ମୃଣାଳିନୀଙ୍କ ଘର ଓ ଦୋକାନ ପଡ଼େ । ସବୁ ଦିନେ ସେଇ ପଥ ଦେଇହିଁ ମୁଁ ବଜାରରୁ ମୋ ଘରକୁ ଫେରେ । ମୋ ବସାରେ ମୋତେ ଅପେକ୍ଷା କରିବାକୁ କେହି ନ ଥାନ୍ତି । ଏ ପ୍ରକାର ନିର୍ଜ୍ଜନ ଓ ଘଟନାବିହୀନ ଥିଲା ମୋର ଜୀବନ । ଯେ ଯାହାହେଉ, ଡାକ୍ତର ମୃଣାଳିନୀଙ୍କ ସଙ୍ଗେ ରୋଗୀ ହିସାବରେଇ ମୋର ଖୁବ୍ ପରିଚୟ ଥିଲା । ତା ଛଡ଼ା, ମୋ ବସାଟି ଯେଉଁ ଗଳିରେ ସେଠାରେ

ଡାକ୍ତର ମୃଣାଳିନୀହିଁ ଏକମାତ୍ର ଓ ସୁଦକ୍ଷ ଡାକ୍ତର । ବୟସରେ ମୋଠାରୁ ଅନ୍ତତଃ ପନ୍ଦର ଷୋଳବର୍ଷ ବଡ଼ ହେବେ । ତେଣୁ ମାନନୀୟା ।

କାହିଁକି କେଜାଣି ଡାକ୍ତରାଣୀଙ୍କର ମୋ ଉପରେ ସାଧାରଣ ରୋଗୀଙ୍କ-ଠାରୁ ଟିକେ ବେଶୀ ଅନୁରାଗ ବଢ଼ି ଉଠିଲା । ପ୍ରେମ ତ ନୁହେ—କାରଣ ତା ଅସମ୍ଭବ । ବନ୍ଧୁତ୍ୱ ବି ନୁହେଁ—କାରଣ ତା ଅସ୍ୱାଭାବିକ । ପାକସ୍ଥଳୀର ବିଶୃଙ୍ଖଳା ହେତୁ ଡାକ୍ତର ମୃଣାଳିନୀଙ୍କ ସଙ୍ଗେ ଏହା ଭିତରେ ମୁଁ ବହୁବାର ବସି ଆସିଛୁ । ମୋର ଶିକ୍ଷା ଓ ଡାକ୍ତରାଣୀଙ୍କ ଶିକ୍ଷା ପ୍ରାୟ ସମପର୍ଯ୍ୟାୟରେ ପଡ଼ିଲେ ବି ରୋଜଗାରରେ ଆମ ଦୁହିଁଙ୍କ ମଧ୍ୟରେ ବୟସ ଅପେକ୍ଷା ବି ଖୁବ୍ ବେଶୀ ତଫାତ୍ । ମୁଁ ଅବିବାହିତ—ତେଣୁ ଡାକ୍ତରାଣୀ ମୋ ଉପରେ ଭାରି ଚିଡ଼ନ୍ତି ।—"ଶ୍ରୀମାନ ହର୍ଷବର୍ଦ୍ଧନ, ତୁମେ ମୋ କଥା ମାନ ଯଥାଶୀଘ୍ର ବିବାହ କରିନିଅ । ମୁଁ ଲେଖିଦେଉଛି—ବିବାହ ପରେ ତୁମର ଏ ଉଦରାମୟ ପୀଡ଼ା ବା ଅଜୀର୍ଣ୍ଣବାତ କିଛି ରହିବନି । ଦେଖ, ମୁଁ ତୁମକୁ ଅଙ୍କା କରୁନି । ତୁମେ ମୋର ସାନଭାଇ ପରି । ଯଦିଓ ସାନଭାଇ ତ ସାନଭାଇ, ମୋର ପରିବାରରେ ବି ଆଉ କେହି ନାହାନ୍ତି ।"

ମୁଁ କେବଳ ଟିକେ ହସେ । ଡାକ୍ତର ମୃଣାଳିନୀ କେଡ଼େ ନିର୍ଲିପ୍ତ ଭାବରେ କହି ଚାଲନ୍ତି ତାଙ୍କ ଉପଦେଶ । ମୋର ଲଜ୍ଜା ହୁଏ । ତଳକୁ ମୁହଁପୋତି ମୁଁ ଜବାବ ଦିଏ—

"କିନ୍ତୁ ବିବାହ ?······ ଆପଣ ତ ?······"

"ଆଃ, ପିଲାଲୋକ ତୁମେ ! ଏମିତି ମୁକ୍ତିର ଝାଣ ଆମର ବି ଥିଲେ ଥିଲା ।" ହଠାତ୍ ସାହସ ପାଇ ଆବେଗରେ କହିଉଠେ—"କିନ୍ତୁ ଆଜି ବି ତ ଆପଣ ସେଇ ମୁକ୍ତିର ଝାଣ ଭିତରୁ ମୁକ୍ତି ପାଇପାରି ନାହାନ୍ତି ।" ମୃଣାଳିନୀ ହଠାତ୍ ଗମ୍ଭୀର ହୋଇ ଉଠନ୍ତି । ତାଙ୍କର ଏଇ ଗାମ୍ଭୀର୍ଯ୍ୟଟାଇ ମୋତେ ସବୁଠାରୁ ଭଲ ଲାଗେ । କେଡ଼େ ସୁନ୍ଦର ! କେଡ଼େ ରୁଚିକର ! ଦେହ ଓ ମୁହଁରେ କି ସାତ୍ତ୍ୱିକତା !! ଠିକ୍ ସରସ୍ୱତୀଙ୍କ ପରି ରୂପ—ଯାକୁନ୍ଦେନ୍ଦୁ ତୁଷାର ହାର ଧବଳା··· ··· ···

ମୁଁ ମୋର ମୁହଁ ତଳକୁ କରେ । ଏମିତି ଭାବେ ଉତ୍ତର ଦେବା ହୁଏତ

ମୋ ପକ୍ଷରେ ଠିକ୍ ହୋଇନ । ସେ ମୋଠାରୁ କେତେ ବଡ଼ !! ବାସ୍—ସେଦିନ କଥା ଆଉ ଅଗାଏ ନାହିଁ । ଔଷଧ ନେଇ ମୁଁ ଘରକୁ ଫେରେ । ମନେରହେନା ଔଷଧର ଦାମ୍ ଦେବାକୁ, ସେ ବି ମାଗନ୍ତି ନାହିଁ । ଏହିପରି ଅନେକ ଥର—ଅନେକ ଥର ।

ଆଉ ଦିନେ—ହୁଏତ ସେହି ରୋଗ ପାଇଁ ମୁଁ ଯାଇଛୁ । ଭିଡ଼ ଶେଷ ପର୍ଯ୍ୟନ୍ତ ମୃଣାଳିନୀ ମୋତେ ଅପେକ୍ଷା କରନ୍ତି । ମୋତେ ବି ଭଲ ଲାଗେ—କୁଆଡ଼େ ଯାଇ ଏଣେ ତେଣେ ବୁଲିବା ଅପେକ୍ଷା ନୀରବରେ ଏଇ ସୁନ୍ଦରୀ କଲ୍ୟାଣୀ ମାତୃରୂପା ଡାକ୍ତରାଣୀଟିକୁ ଚାହିଁ ରହିବାକୁ ।

ହଠାତ୍ ସେ ପ୍ରଶ୍ନ କରନ୍ତି— "ଫୁଏଡ୍ ପଢ଼ିଚ ହର୍ଷ ? ବି. ଏ.ରେ ମନପ୍ରାଣ ଥିଲ ନା ତୁମର ?" ମୁଁ ନ ଶୁଣିଲି ପରି କହେ—"ଆଜ୍ଞା, ଅଳ୍ପ ଆଉ ଅଫିସରେ ବସି ବି ପାରିଲିନି । ପେଟଟା ଅଛୁ ଅଛୁ, ଏତେ ଜୋର୍‌ରେ କାମୁଡ଼ି ଧରୁଚ···ଇଃ !"

"ହଁଅ ହେ—ସେଇଆ ମୁଁ କହୁଚି । ସବୁ ତୁମର ଏହି ଅବିବାହିତ ରହିବାର ଉପସର୍ଗ । ମୁଁ ଜାଣେ, ପ୍ରତିଦିନ ରାତିରେ ତୁମକୁ ନିଦ ହୁଏନାହିଁ । ସବୁଦିନ ରାତି ତିନଟା ଯାଏ ଏ ରାସ୍ତାରେ ତୁମେ ଘୂରୁନା ? ସତ କୁହ—କୁହ··· ।" କଥାଟା ମୋ ଦେହକୁ ଲାଗିଯାଏ । ମୁଁ କହେ, "କିନ୍ତୁ ମିସ୍ ନାୟକ ! ଆପଣ ବା ସବୁ ଦିନେ ରାତି ତିନଟା ଯାଏ ମୋର ଗତିବିଧି ଲକ୍ଷ୍ୟ କରନ୍ତି କେମିତି ?" ଡାକ୍ତରାଣୀ ନାୟକ ମୋର ମୁହଁକୁ କଟମଟ କରି ଚାହିଁ ରହନ୍ତି । ମୁଁ ହଠାତ୍ ସଜାଗ ହୋଇଉଠେ—ମୋର ପ୍ରଗଲ୍‌ଭତା ହୁଏ ତ ଟିକିଏ ବଢ଼ିଉଠିଚି ।

ଡାକ୍ତର ମୃଣାଳିନୀଙ୍କୁ ମୁଁ ଭୟ କରେ—ଭକ୍ତି କରେ—ଭଲ ବି ପାଏ । ସେ ବି ଦିନେ ଦିନେ ମୋର ଗାଲରେ ସରୁ ଚାପଡ଼ାଟିଏ ବସାଇ କହନ୍ତି—"ହର୍ଷ ! ତୁମେ ଗୋଟିଏ ସୁନା ପିଲା ।" ଆଉ ବି କେବେ ମୋର କଥା-ବାର୍ତ୍ତାର ସମାଲୋଚନା କରି କହନ୍ତି—"ବୃଦ୍ଧିଲ୍ ହର୍ଷ, ଅବିବାହିତ ରହିଚ ବୋଲି ତୁମେ ଆଜି ଏତେ ଅସହିଷ୍ଣୁ ।"

ମୁଁ କିଛି ପ୍ରତିବାଦ କରେ ନାହିଁ । ମୋର ସବୁ କଥା ଘଟଣାରେ ଏଇ

ଅବବାହିତ ଅବସ୍ଥାଟାଇ ଯେ ଏକମାତ୍ର କାରଣ ଏକଥା ମୁଁ ସ୍ୱୀକାର ନ କରୁଥିଲେ ବି ଡାକ୍ତର ମୃଣାଳିନୀଙ୍କର ଏ ମନ୍ତବ୍ୟ ସତେବା ମୋତେ ଖୁବ୍ ସୁହାଏ—ଖୁବ୍ ଭଲଲାଗେ ! ମୋଟ ଉପରେ ମୋତେ ସାନ ବୋଲି ଭାବିବାରେ ତାଙ୍କର ବେଶ୍ ଏକ ଆମୋଦଦାୟକ ଖିଆଲ । ମୋ ଉପରେ ହାକିମି ଜାରି କରିବାରେ ସେ ଯେପରି ମୁକ୍ତହସ୍ତ, ସଙ୍ଗେ ସଙ୍ଗେ କ୍ଷମା ମାଗି-ନେଇ ପଇସା ନ ନେଇ ଔଷଧ ଦାନ କରିବାରେ ବି ସେ ସେହିପରି ମୁକ୍ତହସ୍ତା । ମୋତେ ଭଲ ଲାଗେ ଏପରି ବ୍ୟବହାର । ଡାକ୍ତର ମୃଣାଳିନୀଙ୍କ-ଠାରେ ମୁଁ ଏକାଧାରରେ ଦେଖିବାକୁ ପାଏ—ଜନନୀ ଓ ପ୍ରିୟାକୁ ! × × × × ବାସ୍ ଏଇ ହେଲା ଡାକ୍ତର ମୃଣାଳିନୀଙ୍କ ସଙ୍ଗେ ମୋର ସମ୍ପର୍କ ବା ସମ୍ବନ୍ଧ ।

କିନ୍ତୁ ଦୋକାନ ବନ୍ଦହେଲା ଦିନୁ ଆଉ ତାଙ୍କ ଘରକୁ ମୁଁ ଯାଏନା । କାହିଁକି ବା ଯିବି ? କି ସମ୍ବନ୍ଧ ତାଙ୍କ ସଙ୍ଗେ ମୋର ? ରୋଗୀ ଓ ଚିକିତ୍ସକ ବ୍ୟତୀତ ଆଉ କି ବା ଉପଲକ୍ଷ ବ୍ୟବହାର କରିଯାଇପାରେ ତାଙ୍କ ପାଖକୁ ଯିବାକୁ ? ଡାକ୍ତର ମୃଣାଳିନୀଙ୍କୁ ମୁଁ ପାଶୋରି ଦେଇଥିଲି ଏକ ରକମ । ତଥାପି ସେ ବାଟ ଦେଇ ଗଲାବେଳେ ତାଙ୍କ ଘର ଆଡ଼କୁ ଥରେ ଚାହେଁ । ଏକ ଗମ୍ଭୀର, ବିଷାଦବଦନା, ଶୁକ୍ଳାମ୍ବରା ପୁତୁଳା ନାରୀ ମୂର୍ତ୍ତି—ରାସ୍ତା ଆଡ଼କୁ ମୁହଁ କରି ନିଃଶବ୍ଦରେ ବସିରହିଛି । କାହାକୁ, ସତେ ବା କାହାପାଇଁ ଅପେକ୍ଷା ନାହିଁ; କୌଣସି ପ୍ରତି ଆକାଂକ୍ଷା ନାହିଁ; କାହା ପ୍ରତି ଅଭିଯୋଗ ନାହିଁ । ଦୁନିଆରେ ସେ ସତେବା ଅବହେଳିତା, ଅପାଂକ୍ତେୟା ! ଦୁନିଆରେ ସତେବା କାହାର ଲୋଡ଼ା ନାହିଁ ଡାକ୍ତର ମୃଣାଳିନୀଙ୍କର ! ସେ କେବଳ କେଉଁ ପ୍ରାଗୈତିହାସିକ ଯୁଗର ଏକ ଜୀବନ୍ତ ଡାକ୍ତର ମୃଣାଳିନୀଙ୍କର ସ୍ମାରକ ଫସିଲ । କେଉଁ ଦୂର ଅତୀତର ଏକ ମର୍ମର ନିର୍ମିତ ସ୍ମୃତିରକ୍ଷକ ଜଡ଼ ପ୍ରତିମା ! ଯୁଗ ଯୁଗ ଧରି ଡବଡବ ଆଖିରେ କେବଳ ବସି ରହିଛି ! ନିଜର ଅନୁଭୂତି ଦେଇ, ନିଜର ସଂବେଦନାର ମାଧ୍ୟମରେ ମୁଁ ଭାବି ନିଏ ଡାକ୍ତର ମୃଣାଳିନୀ-ଙ୍କର ତତ୍କାଳୀନ ଅବସ୍ଥା । ମୁହଁ ବୁଲାଇ ନେଇ ମୁଁ ଆଗକୁ ଚାଲେ ! ସେ ବି ମୋତେ ଡାକନ୍ତି ନାହିଁ । ମୋତେ ଦେଖନ୍ତି, କିନ୍ତୁ ସତେ ବା ସେ ମୋତେ ଜାଣନ୍ତି ନାହିଁ । ରାସ୍ତାରେ ଅଗଣିତ ଅଜଣା ପଥିକଙ୍କ ପରି

ସତେ ବା ମୁଁ ଜଣେ ! ମୋର ଅଭିମାନ ହୁଏ—ମନେ ମନେ ଗାଳିଦିଏ—ଆତ୍ମମୃଗ୍ଧା, ଉନ୍ମାଦିନୀ !! ଝିଙ୍କିଏ ଯାଇ ନମସ୍କାରଟା କରି ଆସିବାକୁ ଇଚ୍ଛା ହେଉଥିଲେ ବି ଆଉ ଯାଏ ନାହିଁ । ଅଭିମାନରେ ଗ୍ରୀବ ଫୁଲାଇ ଏକ କୃତ୍ରିମ ନିଲିପ୍ତ ମନୋଭାବରେ ମୁହଁ ଟେକି ମୁଁ ବାଟ ଚାଲେ ।

କେତେଦିନ ବିତି ଗଲା ! ଦିନେ-

ସେ ଏକ ଗ୍ରୀଷ୍ମ ସନ୍ଧ୍ୟା । ଆକାଶ ଓ ଧରଣୀର ଏକ ଉତ୍ତପ୍ତ ଧୂସରତା । ରାସ୍ତାରେ ଅସମ୍ଭବ ଧୂଳି ପଟଳ । ଅଫିସରୁ ଫେରୁଥିଲି । ହଠାତ୍ ଡାକ୍ତରାଣୀଙ୍କ ପିଣ୍ଡାକୁ ଉଠିଲି ।

ସେଇପରି ବସିରହିଛନ୍ତି ମୃଣାଳିନୀ । ଭୂମି, ଚେୟାର ଓ ସେ—ସତେବା ଗୋଟିଏ କଣ୍ଠାରେ କିଏ ଯୋଡ଼ି ରଖିଚି ଏଇ ଜଡ଼ ପ୍ରତିମାଟିକୁ !

"ନମସ୍କାର ମିସ୍ ନାୟକ !"—ଘର ଭିତରକୁ ପଶିଲି । ମୃଣାଳିନୀ କିଛି ନ କହି ଖାଲି ହାତ ଦୁଇଟିକୁ ଉଠାଇଲେ । ମୁଁ ଚେୟାର୍ ଟାଣି ବସିଲି । ଘର ଆଲମାରି ଶୂନ୍ୟ । ମୁଁ ଜାଣିଥିଲି ଏଗୁଡ଼ିକ ବିକି ହୋଇ-ଯାଇଚି । ତଥାପି କଥା ଆରମ୍ଭ କରିବା ପାଇଁ କହିଲି—"କଣ ଦୋକାନଟା ଭାଙ୍ଗି ଦେଲେ ?

"କଣ ଆଜି ଜାଣିଲେ ସେଇଟା ?"—ପୋଡ଼ା ପାଉଁଶ ଉପରେ ପାଣି ପଡ଼ିଲେ ଯେପରି ସେଁ କରି ବାମ୍ପ ବାହାରେ ତାଙ୍କ ଉତ୍ତରରେ ବାମ୍ପ ସେମିତି ମୋ ଦେହରେ ବାଜିଲି ।

"ନା-ନା, ଜାଣିଥିଲି ଯେ ! ଅଚ୍ଛା ଘରର ଆସବାବପତ୍ରଗୁଡ଼ାକ ବିକି କରିସାରିଛନ୍ତି ?"

"ହଁ, ସବୁ ବିକି କରିସାରିଛି—ଶେଷକୁ ମୁଁ ରହିଚି କେବଳ ।"

କଥାଟା ବୁଝି ପାରିଲିନି । କିଛି ସମୟ ନୀରବତା । ତା'ପରେ ସାହସ ସଞ୍ଚୟ କରି ପଚାରିଲି—

"ଆଚ୍ଛା—ମିସ୍ ନାୟକ ! କ୍ଷମା କରିବେ—କିଛି ମନେ କରିବେ ନାହିଁ । ହୁଏତ ମୁଁ ଆପଣଙ୍କୁ ଖୁବ୍ ପୀଡ଼ା ଦେବି, ହୁଏତ ମୁଁ ମୋର ସୀମା

ଲଙ୍ଘନ କରିପିବ—ହୁଏତ ମୋ ପକ୍ଷରେ ଏଇଟା ଅନାବଶ୍ୟକ ଅନଧିକାର ଚର୍ଚ୍ଚା ହୋଇପାରେ । ମୁଁ ଏସବୁ ବ୍ୟାପାରରେ ଅଦାବେପାଶ୍ୱ । କିନ୍ତୁ କେବଳ କୌତୁହଳ ପାଇଁ-ହଁ, ହଁ—ମୋର ଆଉ କିଛି ଉଦ୍ଦେଶ୍ୟ ନାହିଁ—ଈଶ୍ୱରଙ୍କ ଶପଥ ନେଇ କହୁଚ—ଆସ୍ତା, ଆପଣଙ୍କର ଏ ମାନସିକ ଅବସ୍ଥାର କାରଣଟା ?

ଡାକ୍ତର ମୃଣାଳିନୀଙ୍କ ମୁହଁ ରଙ୍ଗେଇ ଆସିଲା । ଓଠର ଫାଙ୍କରେ ଫାଙ୍କରେ ଦେଖାଦେଲା ଟିକେ ଆକୁଞ୍ଚନ—ଟିକଏ କମ୍ପନ । ଚେୟାର ଉପରେ ଆଉଟିକେ ସିଧା ଭାବେ ବସି ସେ ଉତ୍ତର ଦେଲେ, "ମୁଁ ଜାଣେ ହର୍ଷ, ତୁମଭଳି ଅବବାହିତମାନେଇ କେବଳ ଏସବୁ ରହସ୍ୟ ନେଇ ଏତେ ମୁଣ୍ଡ ଘୂରାନ୍ତି ! କିନ୍ତୁ······"

"ନାଁ-ନାଁ, ମିସ୍ ନାୟକ, ଆପଣ କଷ୍ଟସ୍ତ କହନ୍ତୁ—ଆପଙ୍କ ଠାରୁ ନଶୁଣିଲେ ମୁଁ ଆଜ କୌଣସିମତେ ଆପଣଙ୍କୁ ଛାଡ଼ୁନାହିଁ । ଆପଣଙ୍କ ପ୍ରତି ମୋର·········"

"ସତେ ? ମୋପ୍ରତି ତୁମର ଏତେ ଦୟା ? ଏତେ ସହାନୁଭୂତି ? କାହିଁ—ଅନେକ ମାସେ ହେଲା—ଦୋକାନ ବନ୍ଦ ହେଲା ଦିନଠାରୁ ତ ତୁମର ଜମା ଦେଖାନାହିଁ—କାହାର ଦେଖାନାହିଁ—କେହି ଆଉ ଅସୁ-ନାହାନ୍ତି, ହର୍ଷ—'

ଡାକ୍ତରାଣୀଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା । "ମୋ ଉପରେ ଆଉ କାହାର ଆସ୍ଥା ନାହିଁ—ମୁଁ ସମସ୍ତଙ୍କର ଅଦରକାରୀ । ମୋର ଅତୀତ ସରିଚ—ବର୍ତ୍ତମାନ ବି ସରିବା ଉପରେ । ଭବିଷ୍ୟତ କାଆଁଳ ଆସି ପହୁଁଚିବ । ଏଇଭଳି ଅନାବଶ୍ୟକ ଭାବେ—ଏହିଭଳି ଅସହାୟ ଭାବେ ମୁଁ ହୁଏତ ଦିନେ ମରିଯିବି, ହର୍ଷ ! ମୁଁ ମରିଯିବି······"

ଡାକ୍ତର ମୃଣାଳିନୀ ରୁମାଲରେ ଆଖି ପୋଛିଲେ । ମୁଁ ପ୍ରମାଦ ଗଣିଲି । ଇସ୍—କାହିଁକି ଭଲା ମୁଁ ଏଇ ଉଷ୍ଣବାଷ୍ପପୂର୍ଣ୍ଣ ଅଲଟିର ମୁହଁ ଖୋଲିଦେଲି ! ଅବସ୍ଥାର ସ୍ରଷ୍ଟା ମୁଁ—ତେଣୁ ମୋତେଇ ସମ୍ଭାଳିବାକୁ ହେବ ମୋ ସୃଷ୍ଟିର ଝଂଜା—ମୋ ଦୃଷ୍ଟିର ଉତ୍ତାପ ।

ପୁଣି କିଛି କ୍ଷଣ ନୀରବତା । ମୋର ନିଃସଙ୍ଗ ଜୀବନର ଅସହାୟ୍ୟ ହୃଦୟତଟର ନୀରବ ଆର୍ତ୍ତକ୍ରନ୍ଦନ ସଙ୍ଗେ ଡ କ୍ରିଷଣୀଙ୍କର ହୃଦୟର କରୁଣ ଭାବାବେଗ ଏକ ହୋଇଗଲା । ତାଙ୍କ ପ୍ରତି ସହାନୁଭୂତିରେ ମନ ମୋର ଭରି ଉଠିଲା । ସେ ପୁଣି କହିବାକୁ ଆରମ୍ଭ କଲେ—ଟିକିଏ କାଶି ଗଳାଟିକୁ ସଫା କରିନେଲେ—"କୁଡ଼ିଲ ବର୍ଷ ! ବାଇଶି ବର୍ଷରେ ମୁଁ ଡାକ୍ତରୀ ପାଶ୍ କଲି । ସେତେବେଳେ ମୁଁ ଏପରି ମୋଟା ନ ଥିଲି । ସବୁ ଝିଅ ଭିତରେ ମୁଁ ଥିଲି ତନୁପାତଳୀ—ମୁଁ ଥିଲି ସୁନ୍ଦରୀ । ସେ କାଳର କେତେ ଭାବବିଳାସୀ ତରୁଣ କବି 'ତନ୍ୱୀ ମୃଣାଳିନୀ' ଉପରେ କବିତା ଲେଖିଛନ୍ତି । ରୁକିଙ୍ଗ କରିଥିଲେ ଭଲ ରୁକିଙ୍ଗ କରିଥାଆନ୍ତି । ପ୍ରଥମ ହୋଇଥିଲି କ୍ଲାସରେ । ମୁଁ ଥିଲି ସ୍ୱଚ୍ଛଳ ପରିବାରର କନ୍ୟା ; ତେବେ ଧନୀ ନୁହେଁ । କିନ୍ତୁ ମୋର ବାପା ମାଆ ବ୍ୟତୀତ ଆଉ କେହି ନ ଥିଲେ । ସେମାନଙ୍କ ମୃତ୍ୟୁ ପରେ ମୁଁ ଗ୍ରାମରେ ଥିବା ସମସ୍ତ ସମ୍ପତ୍ତି ବିକି କରି ଏଠାରେ ବ୍ୟବସାୟ ଆରମ୍ଭ କଲି । ମୋର ବାପ ମାଆ ମୋର ବିବାହ ଦେଖିବାକୁ ବ୍ୟଗ୍ର ଥିଲେ । କିନ୍ତୁ ମୁଁ ଥିଲି ଖୁବ୍ ଜିଦ୍‌ଖୋର । ପୁରୁଷଙ୍କ ପ୍ରତି ମୋର କୌଣସି ଘୃଣା ନ ଥିଲା । ମୋର ପୁରୁଷ ବନ୍ଧୁ ବି ଖୁବ୍ ଥିଲେ । କିନ୍ତୁ ମୁଁ ବିବାହ କଲି ନାହିଁ । ମୋର ଏ ବିବାହ ନ କରିବା ପଛରେ ମୋର କୌଣସି ସୁଚିନ୍ତିତ ଯୁକ୍ତିସମ୍ମତ କାରଣ ବି ଯେ ଥିଲା ତା' ନୁହେଁ । କେବଳ ଗୋଟେ ଖିଆଲ—ହଁ ହଁ, ସେଇଟାକୁ ବଦଖିଆଲ ବି ତୁମେ କହିପାର ବର୍ତ୍ତମାନ । ପୁରୁଷବନ୍ଧୁଙ୍କର ତ ଅଭାବ ନ ଥିଲା ମୋର, ପ୍ରଣୟାକାଙ୍କ୍ଷୀ ବି କମ୍ ନ ଥିଲେ ମୋର !! ତାପରେ ମୋର ବ୍ୟବସାୟ ବଢ଼ି ଚାଲିଲା । ମୋର ପୁରୁଷବନ୍ଧୁମାନେ ବି କିଏ କୁଆଡ଼େ ଗଲେ । କେତେ ବା ଆଉ ଅପେକ୍ଷା କରନ୍ତେ ?"

ମୃଣାଳିନୀ ଟିକିଏ ରହି ପୁଣି ଆରମ୍ଭ କଲେ । "ମୋ ଦୋକାନରେ କିନ୍ତୁ ରୋଗୀଙ୍କ ସଂଖ୍ୟା ଖୁବ୍ ବୃଦ୍ଧି ପାଇଲା । ବେଶୀଭାଗ ହୃଦୟ ପୀଡ଼ିତ । ମୋ ଔଷଧ ଭଣ୍ଡାର ଅପେକ୍ଷା ମୋର ରୂପର ଭଣ୍ଡାର ହିଁ କେତେକଙ୍କୁ ବେଶୀ ଆକୃଷ୍ଟ କରୁଥିଲା । ଅଧିକାଂଶ ସ୍କୁଲ କଲେଜ ଛାତ୍ର—ବଡ଼ ଅଫିସର, କାରଣ ମୁଁ ନାରୀ ପୁରୁଷ ସମସ୍ତଙ୍କର ଚିକିତ୍ସା କରୁଥିଲି । ସେଇ ଅନୁ-

ପାଖରେ ମୋର ବି ଏକ ଅଯଥା ଅହଂକାର ବଢ଼ି ଉଠିଲି । ହଁ ହଁ, ଅଯଥା ଅହଂକାର ! ମୁଁ ଏତେଦିନ ଅବିବାହିତ ରହିପାରିଚି, ଏତେ ଧନ ଧରି ପୁରୁଷକୁ ସଙ୍ଗ ଦେଇ ମଧ ଦେଇ ନାହିଁ—ପୁରୁଷର ମନକୁ କ୍ଷତ କରି, ନିଜର ଦେହକୁ ଅକ୍ଷତ ରଖିପାରିଚି—ଏଇ ଅନାବଶ୍ୟକ ଲଘୁ ସଫଳତା ଯୋଗୁଁ କ୍ଷଣେ ଅହଂକାରୀ ହୋଇ ଉଠିଥିଲି । ମୋ ସାଥିର ସବୁ ଝିଅ ଆଗପଛ ହୋଇ ବାହା ହୋଇଗଲେ । କିନ୍ତୁ ସବୁ ସାଧାରଣଙ୍କ ମଧ୍ୟରେ ମୋର ଏଇ ଖିଆଲି ଅସାଧାରଣତ୍ୱଟା ମୋତେ ଏକ ଅସାମାଜିକ ଦମ୍ଭ ଆଣିଦେଉଥିଲି । ମୋର ବ୍ୟବସାୟ କାଳ ମଧ୍ୟରେ, ଭଲ ଡାକ୍ତର ହିସାବରେ ଖୁବ୍ ଅଳ୍ପଦିନରେ ମୁଁ ଖ୍ୟାତି ଅର୍ଜନ କରିଗଲି । କଲେଜ ଛାଡ଼ିବା ପରେ ବି ଅନେକ ପୁରୁଷ ମୋର କରୁଣାପ୍ରାର୍ଥୀ ହୋଇଥିଲେ । ମାତ୍ର ମୁଁ କାହା ଅଡ଼କୁ ଗ୍ରହୁଁ ବି ନ ଥିଲି । ପୁରୁଷର ନାଡ଼ୀ ଚିପି—ପୁରୁଷର ଆଖି ଦେଖି —ଜିଭ ଦେଖି—ଜିଭ ତଳେ ଥର୍ମମିଟର ଦେଇ ତା ଦେହର ଉତ୍ତାପ ପରୀକ୍ଷା କରି—ପେଟର ପ୍ଲୀହା ଚିପି—ଷ୍ଟେଥେସ୍‌କୋପ୍ ଦ୍ୱାରା ତା ଛାତିର ଧକ୍ ଧକ୍ ଶବ୍ଦ ଶୁଣି ଶୁଣି ପୁରୁଷର ଦେହ ଉପରେ ମୋର ଆଉ ଲୋଭ ବି ନ ଥିଲି ।

"ନ ଥିଲି ବି ସେମିତି କିଛି ଆକର୍ଷଣ-ସେପରି କିଛି ଉତ୍ତେଜନା ! ମୋଟଉପରେ ମୁଁ ମୋ ଭିତରେ ନାରୀ ଅପେକ୍ଷା ପୁରୁଷର ଅନୁଭୂତିଟାକୁ ବେଶୀ ଭଲପାଉଥିଲି । ମୋର ମନେ ହେଉଥିଲା ସତେ ବା ମୁଁ ଜଣେ ପୁରୁଷ । ମୋର ଦୈହିକ ଗଠନକୁ ମୋର ମାନସିକ ପ୍ରବୃତ୍ତି ଆଦୌ ସ୍ୱୀକାର କରୁ ନ ଥିଲି । ମୁଁ ଯେପରି ଏକ ସୃଷ୍ଟି ଛଡ଼ା ସୃଷ୍ଟି !

"ମୋ ବ୍ୟବସାୟର ବୃଦ୍ଧି ସଙ୍ଗେ ସଙ୍ଗେ ମୁଁ ଆଉ ଜଣେ ସହକର୍ମୀ ଦରକାର କଲି । ଜଣେ କମ୍ପାଉଣ୍ଡରର । କାଗଜରେ ବିଜ୍ଞାପନ ଦେଲି । ପାଞ୍ଚ ଜଣ ଦରଖାସ୍ତକାରୀଙ୍କ ମଧ୍ୟରୁ ମୁଁ ଜଣେ ବୟସ୍କ ପ୍ରୌଢ଼କୁ ମୋର ବ୍ୟବସାୟ ପାଇଁ ଉପଯୁକ୍ତ ଭାବି ରଖିଲି । ତାର ବୟସ ସେତେବେଳେ ପ୍ରାୟ ୩୫ । ୩୬ । ରୁଗ୍ଣ ସ୍ୱାସ୍ଥ୍ୟ, କିନ୍ତୁ ବଡ଼ କର୍ମତତ୍ପର । ମୋର ବ୍ୟବହାର ତ କେବେ ରୁକ୍ଷ ନଥିଲା, ତେଣୁ ସେ ମୋର ଅଧୀନରେ ବେଶ୍

କାମ କରିବାକୁ ଲାଗିଲା । ତାର କାର୍ଯ୍ୟ ଦକ୍ଷତା ଓ ବ୍ୟବହାରରେ ମୁଁ ବଡ଼ ମୁଗ୍ଧ ହେଲି । ମୋର ବସାରେ ତା'ର ଖାଇବାର ବନ୍ଦୋବସ୍ତ କରିଦେଲି —ରହିବାର ବି ବନ୍ଦୋବସ୍ତ କରିଦେଲି । ବ୍ୟକ୍ତିଗତ ବ୍ୟବହାରରେ ସେ ଟିକେ ମାଇଚିଆ ପ୍ରକୃତିର ଥିଲେ । ଟିକେ ବି ଗମ୍ଭୀର—ନା, ନା ଠିକ୍ ଗମ୍ଭୀର ନୁହେଁ—ବଡ଼ ମଉନମୁହାଁ । ବେଶୀ କଥା କୁହେ ନାହିଁ । କୌଣସି କଥାରେ ଆପତ୍ତି କରେ ନାହିଁ—କୌଣସି ଆଦେଶର ପ୍ରତିବାଦ ବି କରେ ନାହିଁ—ସବୁକଥା କରିଯାଏ ଅତି ବିନୀତଭାବେ—ମୋର ବଜାର ସଉଦାଠାରୁ ଆରମ୍ଭ କରି ମୋ ପାଇଁ ଚା' ତିଆରି କରିବା ପର୍ଯ୍ୟନ୍ତ । ଅବଶ୍ୟ ଏଥିପାଇଁ ମୋର ସ୍ୱତନ୍ତ୍ର ଭୃତ୍ୟ ଓ ପାଚକା ଥିଲେ । ମାତ୍ର କମ୍ପାଉଣ୍ଡରଟି ମୋର ଏତେ ଅନୁରକ୍ତ ! ଏତେ ପ୍ରଭୁଭକ୍ତ ! ଏତେ ଆଜ୍ଞାଧୀନ ! ଏତେ ବଶମ୍ବଦ !''

ଡାକ୍ତରାଣୀଙ୍କ ଶୁଖିଲା ମୁହଁରେ ଟିକେ ହସ ଦେଖାଗଲା—ପୁଣି ଉଭେଇଗଲା । ''ତୁମେ ବିଶ୍ୱାସ କରିପାରିବନି ହର୍ଷ ! କୌଣସି ନାରୀ ନିକଟରେ କୌଣସି ଅସମ୍ପର୍କିତ ପୁରୁଷର ଏପରି ଆଜ୍ଞାଧୀନତା—ଏତେ ବଶମ୍ବଦତା ! ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ତୁମେ ବି ଆଶ୍ଚର୍ଯ୍ୟ ହେବ ହର୍ଷ ! ଦିନେ ମାସ ଶେଷରେ ସେ ତା ଦରମା ନେବାକୁ ବି ମନାକଲା । ମୁଁ ବିରକ୍ତ ହେଲି—କ୍ରୁଦ୍ଧ କଲି—ଗାଳିଗୁଲଜ କଲି—ଦରମା ନ ନେଲେ ଚାକିରିରୁ ବିଦାୟ କରିଦେବାକୁ ଧମକାଇଲି । ସେ କିଛି କହୁ ପ୍ରତିବାଦ ବି କଲାନି । କେବଳ ତଳକୁ ମୁହଁ ପୋତି କାନ୍ଦିଲା—ନଖରେ ଭୂଇଁ ଚିରିଲା । ମୁଁ ଅପ୍ରସ୍ତୁତ ହୋଇଉଠିଲି । ଇସ୍, ଏଇଟା ପୁରୁଷ ନାଁ ନାରୀ !!

''ମୁଁ କିଛି ଜାଣି ପାରୁ ନ ଥିଲି ହର୍ଷ, ସେ ମୋ ଠାରୁ କଣ ଚାହୁଁଥିଲା ? ତାର ଏତେ ସେବା, ଏତେ ପୂଜା ଆରାଧନା ପାଇଁ ସେ ମୋଠାରୁ କି ବର ଆଶା କରୁଥିଲା ? ସେ ବି ମୁହଁ ଫିଟାଇ କେବେ କିଛି କହେ ନାହିଁ କି ତାର ବ୍ୟବହାରରେ ସେଭଳି କୌଣସି ସଙ୍କେତର ଚିହ୍ନ ନ ଥିଲା । ସେ କେବଳ ଥିଲା ମୋର ଏକ ନୀରବ ନିଷ୍କାମ ପୂଜାରୀ । ମୋର ଆଜ୍ଞା ତାର ଶିରୋଧାର୍ଯ୍ୟ—ମୋର ଆଦେଶ ପାଳନ ତାର ପ୍ରିୟ କର୍ତ୍ତବ୍ୟ । କର୍ମରେ

ଥିଲା ତାର ଅଧିକାର; ଫଳରେ ନୁହେଁ ।''

ଡାକ୍ତର ମୃଣାଳିନୀ ଗମ୍ଭୀର ହୋଇ କିଛି ସମୟ ଟେବୁଲ ଉପରେ ଟିପ ସଞ୍ଚାଳନ କଲେ । ତା'ପରେ ଫେରେ କହିଲେ—

''ଘାଟରେ ଥିଲା ମୋର ଗୋଟିଏ ବଡ଼ ଫଟୋ । ସେ ତାକୁ ପ୍ରତି-ଦିନ ମୋ ଅଲକ୍ଷ୍ୟରେ ସଫା କରିଦିଏ । କେତେ ସମୟ ତାକୁ ଅନାଇଁ ରୁହେ । ଯଦିଓ ମୋ ସଙ୍ଗେ ପ୍ରତିଦିନର ବ୍ୟବହାରରେ ସେ ମୋ ମୁହଁକୁ କେବେ ଚାହିଁନାହିଁ, ସେ ମୋର ଅଲକ୍ଷ୍ୟରେ ନିଶ୍ଚୟ ସବୁଦିନ ସେ ଏପରି କରୁଥିଲା । ଦିନେ ଦୈବାତ ସେ ଦୃଶ୍ୟ ମୋ ଆଖିରେ ପଡ଼ିଲା । କିଛି ସମୟ ଚୁପ୍ ରହି ଲୁଚି ଠିଆ ହେବା ପରେ ହସିହସି ମୁଁ ତାକୁ କହିଲି—''ସେ ନିର୍ଜୀବ ଫଟୋଟାରୁ କ'ଣ ପାଉଛ କମ୍ପାଉଣ୍ଡର ? ସେଇ ଜଡ଼ ଫଟୋଟାକୁ ସମ୍ମୋହନ କରିପାରିଲେ ତାର ପ୍ରଭାବ କି ଜୀବନ୍ତ ଉପରେ ପଡ଼ିପାରିବ ?'' ସେ କିଛି ଉତ୍ତର କଲା ନାହିଁ, ହାତ ଯୋଡ଼ି, ମୁହଁ ପୋତି କେବଳ ନୀରବରେ ହସିବାକୁ ଲାଗିଲା । ବଡ଼ କୃତକୃତ୍ୟ ଭାବ—ଠିକ୍ ଯେପରି ପୋଷାକୁକୁର ମୁନିବଠାରୁ ଖଣ୍ଡେ ମାଂସଲଗା ହାଡ଼ ପାଇଲେ ଲାଞ୍ଜ ହଲାଇ, ମୁହଁ ହଲାଇ—କୁଁ କୁଁ ଶବ୍ଦ କରି ମୁନିବ ନିକଟରେ କୃତକୃତ୍ୟ ଭାବ ଦେଖାଏ—ଖୁସି—କୃତଜ୍ଞ— ।

''ତା' ଉପରେ ମୋର ରାଗ ବି ହୁଏ—ଦୟା ବି ହୁଏ । ତାକୁ ମୁଁ ଘୃଣା ବି କରେ, ଭଲ ବି ପାଏ । ତା'ର ବି ନ ଥିଲା—ଘରଦ୍ୱାର—ପିଲା ପିଚିକା—ଅଜୀବନ ନିଃସଙ୍ଗ, ସେ ଆଜୀବନ ସ୍ନେହ-ରଙ୍କ । କ୍ରମେ ତା ପ୍ରତି ମୋର ଆକର୍ଷଣ ବଢ଼ିଚାଲିଲା । ତାକୁ ପ୍ରେମ ବୋଲି ଭାବ ନାହିଁ ହର୍ଷ—ପ୍ରଶ୍ରୟ ବୋଲି ଧରି ନିଅ ନାହିଁ । ପ୍ରେମ କରିବା ସେ ଜାଣି ନ ଥିଲା । ସେ କେବଳ ଦେଇ ଜାଣିଥିଲା, ନେଇପାରିବାର ଦକ୍ଷତା ତାର ନ ଥିଲା ।

''କେବଳ ପୂଜାରୀ କେବେ କି ପ୍ରେମିକ ହୋଇପାରେ ? ତା'ଠାରେ ପ୍ରଭୂତ୍ୱ ନଥିଲା—ସେ ପ୍ରଶ୍ରୟ କାହୁଁ କରନ୍ତା ? ମୋଠାରୁ ଟିକେ ଅନୁ-କମ୍ପାରେ ସେ କମ୍ପି ଉଠେ । ଟିକିଏ ଦୟାରେ ସେ ତରଳିଯାଏ । ସେ କେବଳ ଫେନାୟିତ ଅନୁଭୂତିର ଏକ ଲଘୁ ପିଣ୍ଡ ମାତ୍ର । ସେ ଯେତେବେଳେ ନିଜେ

ଅନୁଭୂତ—ପ୍ରଣୟର ଅନୁଭୂତ ତା ପକ୍ଷରେ ସମ୍ଭବ ହୁଅନ୍ତା କପର ?

“ଶୁଣ । ଏଇଭଳି ଲୋକଟି ସଙ୍ଗେ ମୁଁ କିଛି ଦିନ କଟାଇଲି । ଏହା ମଧ୍ୟରେ କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ । କମାଣ୍ଡେଣ୍ଟରର ବ୍ୟବହାର ପ୍ରତି ମୁଁ କ୍ରମେ ଅଭ୍ୟସ୍ତ ହୋଇ ଆସିଲି । ତା ସମ୍ବନ୍ଧେ ମୋ ମନରେ ଆଉ ପ୍ରଶ୍ନ ନଥିଲା—ନ ଥିଲା ବା ସେମିତି କୌତୁହଳ । କିନ୍ତୁ ହର୍ଷ, କଣ ହେଲା ଜାଣିଚ ?”

ଡାକ୍ତର ମୃଣାଳିନୀ କିଛି ସମୟ ନୀରବ ରହିଲେ । ସେତେବେଳକୁ ଅନ୍ଧାର ହୋଇଆସିଲାଣି । ମୋତେ କିନ୍ତୁ କ୍ଳାନ୍ତ ଲାଗୁନ । ଖୁବ ଭଲ ଲାଗୁଛି ଡାକ୍ତର ମୃଣାଳିନୀଙ୍କ ଅତୀତ ଇତିହାସର ଏ ରହସ୍ୟ । ସେ ବତୀ ଟିପି ପୁଣି ଆରମ୍ଭ କଲେ । ବିଜୁଳି ଆଲୁଅରେ ମୃଣାଳିନୀଙ୍କ ମୁହଁ ଲାଲ ହୋଇ ଉଠିଚ ।

“ହଁ ଶୁଣ, କଣ କହୁଥିଲି ଟି ? ହଁ ବେଶ୍ ବେଶ୍, ତୁମର ଧୈର୍ଯ୍ୟ ଅଛି ତ ? ଆଚ୍ଛା ହେଉ—ଶୁଣ—୧୯୪୬ ମସିହା ମାର୍ଚ୍ଚ ୧୯ ତାରିଖ ! ହିଁ ହିଁ—ତାରିଖଟା ବି ମୋର ମନେ ଅଛି ହର୍ଷ—ସବୁ ମୋର ମନେଅଛି । ସେ ଏକ ସକରୁଣ ସନ୍ଧ୍ୟା । ଦୋକାନରେ କେହି ନାହାନ୍ତି । ଘର ଭିତରୁ ମୋର ରେଡ଼ିଓରୁ ଗୋଟିଏ ଗୀତ ଭାସି ଆସିଲା—ଏକ ସଙ୍ଗୀତ—ରବୀନ୍ଦ୍ରନାଥଙ୍କର ।

‘ଯଦି ଡାକେ ତୋର କେଉ ନାହିଁ ଆସେ, ତବେ ଏକଲା ଚଲେରେ—’ । ଖୁବ ଆଘାତ କଲା ମତେ । ଟେବୁଲ୍ ଉପରେ ଟିପ ଚଳାଇ ଗୀତଟାକୁ ବେଶ୍ ଉପଭୋଗ କରୁଥିଲି । କିନ୍ତୁ ସଙ୍ଗୀତଟାର ଯାହା ଭାବ, ତାର ଓଲଟା ଫଳଟାଇ ମୋତେ ବ୍ୟାସକ୍ତ କରି ରଖିଲା । ଏକଲା ଚଲେରେ ! କିଏ ଏଡ଼େ ସ୍ପର୍ଦ୍ଧାଶୀଳ ଗାୟକ ? ଏ ଲଘୁ ମୀମାଂସା କେଉଁ ଅପରିଣାମଦର୍ଶୀ କରିବ ? ଡାକ ମାଇଲେ ବା ଡାକ ଶୁଣିବନି କିଏ ? ପଦୁଟୋଳା ବୋଲି ଜାଣିଲେ ନାଗର ଅଭାବ ରହେ, ହର୍ଷ ? ମୋର ଅଭିଜ୍ଞତାରୁ କହୁଛି ହର୍ଷ—ଡାକିଥିଲେ କଣ ସଙ୍ଗୀ ମିଳି ନ ଥାନ୍ତେ ମତେ ? ଡାକିଲି ନାହିଁ । ଫଳରେ ଏକୁଟିଆ ବୁଲିବାକୁ ପଡ଼ିଲା । କିନ୍ତୁ କଣ ଏ ଜୀବନ ? କଣ ଏଥିରେ ଲଭ ? ମଣିଷ କାହିଁକି ଏକୁଟିଆ ବୁଲିବ ? କେଉଁ ଆଦର୍ଶ ଅଛି ସେଥିରେ ? କି ଅଧିକ

ସ୍ୱାଦ କି ମିଳେ ? ଶ୍ରେଷ୍ଠୀ ହୋଇ ଜନ୍ମିଲେ ଅନ୍ଧ କାନ୍ଧରେ ବସାଇ ପଥ ବାହିବ, ଅନ୍ଧ ହୋଇ ଜନ୍ମିଲେ ଶ୍ରେଷ୍ଠୀଙ୍କୁ କାନ୍ଧରେ ବହି ବୁଲିବ । ଏଇ ତ ଜୀବନ ! ଏଇ ତ ମନୁଷ୍ୟର ସାମାଜିକ ମନୋବୃତ୍ତିର ଚରମ ସ୍ପୃହା—ପରମ ଅନୁଭୂତି ! ଗୋଟିଏ ହୋଇ କୋଟିଏର ସୃଷ୍ଟି କରିବା ଏବଂ ମଧ୍ୟରୁ ବହୁର ସୃଷ୍ଟି କରି ବହୁ ମଧ୍ୟରେ ଏକକୁ ଲୀନ କରାଇଦେବା ତ ଜୀବନର ଧାରା—ଜୀବର ପରମ୍ପରା ! ଆଉ ଏକଲା ଚଳେରେ ? ଛି ଛି··· ଆଦର୍ଶ ନାମରେ ଦର୍ଶନହୀନତା······କର୍ତ୍ତବ୍ୟ ନାମରେ ଗଳାକର୍ତ୍ତନ !!

"ମୋର ଅବସ୍ଥା ସଙ୍ଗେ ବିରୋଧୀ ଏଇ ସବୁ ଚିନ୍ତାରେ ମୁଁ ଉବୁଟୁବୁ ଖାଉଥିଲି ।

"ହଠାତ୍ ଏକ କୋମଳ କଣ୍ଠସ୍ୱର ।"

"ମହାଶୟା ! ଆପଣ ଡାକ୍ତର ମୃଣାଳିନୀ ତ ?"

"ହିଁ ହିଁ—ଉପରକୁ ଆସନ୍ତୁ—ବସନ୍ତୁ ଏଠି । କଣ ଦରକାର ? ମୁଁ ତ ଡାକ୍ତର ମୃଣାଳିନୀ ! ବାସ୍-ବାସ୍—ଆସନ୍ତୁ ଆସନ୍ତୁ ! ମୁଁ ହଠାତ୍ ସବୁ ଭୁଲିଗଲି । ମୋର ବ୍ୟବସାୟ—ମୋର ବୟସ—ମୋର ଅଭିଜ୍ଞତା—ମୋର ଚିନ୍ତାଧାରା—ମୋର ଅନୁଭୂତି—ମୋର ପ୍ରତିଷ୍ଠା ! ଚେୟାର୍ ଟାଣି ମୋ ଆଗରେ ବସିଲେ ଗୋଟିଏ କିଶୋର ! ବୟସ ୧୮-୧୯ ଭିତରେ ହେବ । ବଳିଷ୍ଠ ଦେହ, ଗୌରବର୍ଣ୍ଣ, ପୁଚୁପୁଚୁ ଗାଲ, ନାକ ତଳେ ଗଜୁରି-ଆସୁଛି ନିଶ; ଗାଲରେ ଦାଢ଼ି ଅଦୌ ଉଠିନି—ଜୁଳୁଜୁଳୁ ଆଖି ତାରକା ମୁହଁରେ କି ସାରଲ୍ୟ—କି ସ୍ୱାଭାବିକତା—ବଳିଷ୍ଠ ବ୍ୟକ୍ତିତ୍ୱର କି ଉଜ୍ଜ୍ୱଳ-ମୟ ଜ୍ୟୋତି—ଶୀତଦିନର ସକାଳେ କାକରଭିଜା ସଜ ଫୁଲକୋବିଟି ପରି ମୁହଁଟି ତାଙ୍କର ବଡ଼ ସତେଜ ! ହଁ, ଭୁଲିଯାଅନା ହର୍ଷ, ମୋତେ ସେତେ-ବେଳେ ବୟସ ୩୦ । ଜାୟା ଓ ଜନନୀ ମନୋବୃତ୍ତିର ଠିକ୍ ମଧ୍ୟଭାଗରେ ସେତେବେଳେ ମୁଁ । ଏପରି ସୁନ୍ଦର କିଶୋରଟିଏ ମୁଁ ପୂର୍ବରୁ ଦେଖି ନ ଥିଲି ! ନାରୀର ମନ ତୁମେ ବୁଝିପାରିବନି ହର୍ଷ ! ମୋତେ ତାଙ୍କର ଚେହେରା ଓ ବ୍ୟବହାର ଖୁବ୍ ଭଲ ଲାଗିଲା । ସେ କଲେଜରେ ନାମ ଲେଖାଇବାକୁ ମୋର ସାହାଯ୍ୟ ଭିକ୍ଷା କରିବାକୁ ଆସିଥିଲେ । ତୁମେ ବୋଧେ ଜାଣିନା

ହର୍ଷ, ମୁଁ ସେତେବେଳେ ବହୁତ ଦାନ କରୁଥିଲି—ଓଃ ! ବହୁତ । ଏତେ ଟଙ୍କା କଣ ନା ମୋର ହୁଅନ୍ତା ? କେହି କେବେ ନଗ୍ନରେ ମୋ ପାଖରୁ ଫେରନି । ମୁଁ ତାକୁ ମୋ ଘରେ ଆଶ୍ରୟ ଦେଲି ।

"ପିଲାଟି ଛୁଆକାଳରୁ ମାକୁ ହରାଇଛି । ମାନେ ମାଆ କାହାକୁ କୁହନ୍ତି ଜାଣି ନ ଥିଲା । ସେ ଘରେ କେବଳ ବାପ, ଆଉ କେହି ନାହିଁ—ବ୍ରାହ୍ମଣ ପିଲାଟିଏ । ବାପ୍, ମୋର କୋଠରି ପାଖେ ତାକୁ କୋଠରିଟିଏ ଛାଡ଼ିଦେଲି । ହେଇଟି, ସେ ଆଉ ଘରଟା ।" ଡାକ୍ତର ମୃଣାଳନୀ ଚେୟାରରୁ ଉଠି ମୋର ହାତ ଧରି ଆଉ ଘରକୁ ନେଇଗଲେ । ସେ ଘରେ ଆଲୁଅ ଜଳୁଚି । ଖଟଟିଏ ଓ ତା' ଉପରେ ବିଛଣା ପଡ଼ିହୋଇଛି । କିନ୍ତୁ ସେଇଟା ଯେ ବହୁଦିନୁ ବ୍ୟବହୃତ ହେଉନି, ସେଟା ମୁଁ ଜାଣି ପାରୁଥିଲି । ପାଖରେ ଗୋଟିଏ ଟେବୁଲ ଗୋଟିଏ ଚଉକି । ଟେବୁଲ ଉପରେ କେତେଖଣ୍ଡି ଆଇ. ଏସ୍‌ସି. କ୍ଲାସର ପାଠ୍ୟପୁସ୍ତକ । ଖଣ୍ଡିଏ ୧୯୪୭ ମସିହାର କାଲେଣ୍ଡର, ଗୋଟିଏ ର୍ୟାକେଟ—ସେଥିରେ କେତୋଟି ମଇଳା ସାର୍ଟ ଝୁଲୁଚି । ଘର ଭିତରଟା ମୋତେ କାହିଁକି ଖାଁ ଖାଁ ଗୋଡ଼ାଇଲା । ଅଳ୍ପ ପାୱାରର ଗୋଟିଏ ବଲ୍‌ବ ଆଲୁଅ ଜଳୁଚି । ସମଗ୍ର କୋଠରିଟା ମନେହେଲା ଯେତେ ବା କେଉଁ ହିଂସ୍ର ପଶୁର ଗୁମ୍ଫା !!

"ଏଇ ଘରେ—ଏଇ ଘରେ ହର୍ଷ—ସେ ରହୁଥିଲା । ତା'ର ହସ—ତାର କୌତୁକ—ତାର ଅଳି—ତାର ଅଭିମାନ ତାର ମଧୁର ସରଳ ପରିହାସ ସବୁ ଏଇ ଘର ଜାଣିଚି । ମୁଁ ତାକୁ ଖୁବ ଭଲପାଉଥିଲି ହର୍ଷ—ଠିକ୍ ଭଉଣୀ ଯେମିତି ଭାଇକୁ ଭଲପାଏ—ଠିକ୍ ମାଆ ଯେମିତି ପୁଅକୁ ଭଲପାଏ—ନାଁ-ନାଁ—ଠିକ୍ ସ୍ତ୍ରୀ ଯେମିତି ସ୍ୱାମୀକୁ ଭଲପାଏ । ଇସ୍ ବଡ଼ ଗୋଳମାଳିଆ ହୋଇ ଯାଉଚି ମୋର ମୁଣ୍ଡ, ହର୍ଷ ! ମୁଁ ଠିକ୍ ବୁଝିପାରୁନି ମୁଁ କଣ କହିବାକୁ ଯାଉଚି ! ମୁଁ ଠିକ୍ କହିପାରୁନି ମୁଁ ତାକୁ କେମିତି ଭଲ ପାଉଥିଲି, ମାଆ, ଭଉଣୀ, ସ୍ତ୍ରୀ କୌଣସିଟାର ଅଭିଜ୍ଞତା ନାହିଁ କି ନା ମୋର !! ତେବେ ମୁଁ ତାକୁ ଖୁବ୍ ଭଲ ପାଉଥିଲି—ଖୁ-ଉ-ବ୍ । ସେମିତି ଆଉ କାହାକୁ ଭଲପାଇନି । କଲେଜକୁ ଗଲାବେଳେ ମୁଁ ତାକୁ ବେଶ କରିଦେଉଥିଲି । ତା ଟେବୁଲ ସଜାଡ଼ି ଦେଉଥିଲି । ଭାତଥାଳି ପାଖେ ବସି

ଜୋର କରି ତାକୁ ଖୁଆଇ ବି ଦେଉଥିଲି । ଆଉ-ଆଉ..." ଡାକ୍ତର ମୃଣାଳିନୀ କାନ୍ଦି ଉଠିଲେ । "ଆଉ ଏତିକି ବାଧ୍ୟ ପିଲା ସେ ? ଏତିକି ସରଳ ? ମୁଁ ତାକୁ ମୋ ପାଖରେ ରାତିରେ ଶୁଆଉ ବି ଥିଲି ।"

"ମିସ୍ ନାଏକ, ଆପଣ ସଜାଗ ଅଛନ୍ତି ତ ? ପରିଷ୍କାର ପ୍ରତି ଆପଣ ସଚେତନ ଅଛନ୍ତି ତ ? ଆପଣ ପାଗଳ ନା କଣ ?" ମୁଁ ଅସମ୍ଭାଳ ହୋଇ ତାଙ୍କୁ ବନ୍ଦ କରିବାର ଚେଷ୍ଟା କଲି । "ଡାକ୍ତର ନାଏକ, ଆପଣ ପ୍ରକୃତିସ୍ଥ ହୁଅନ୍ତୁ । ମୁଁ ହର୍ଷବର୍ଦ୍ଧନ...ଆପଣ ସ୍ୱନାମଧ୍ୟନ୍ୟା-—"

"ହଁ-ହଁ-ଡାକ୍ତର ମୃଣାଳିନୀ ନାଏକ, ଏମ୍: ବି: ବି: ଏସ୍: ବୟସ ୪୦ ବର୍ଷ—ପିତା ମୃତ ନଟବର ନାଏକ । ଏ ପର୍ଯ୍ୟନ୍ତ ମୁଁ ଠିକ୍ ଅଛି ହର୍ଷ । ତୁମେ ଜାଣିନ...ମିଛ କହୁନି ହର୍ଷ—ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ।

"ମୁଁ ତାକୁ ଭଲପାଉଥିଲି—ଭଲ ପାଉଥିଲି ତାକୁ ପ୍ରଚୁର । ସେ ବି କେବେ ମୋର ଅବାଧ୍ୟ ହୋଇନି—ପ୍ରତିଦାନ ଦେବାରେ କେବେ ବି କୁଣ୍ଠିତ ହୋଇନି । ବେଶୀ କଥା କହୁ ନ ଥିଲା ସେ, କିନ୍ତୁ ଭାରି ବୁଦ୍ଧିମାନ —ଭାରି ସରଳ—ଭାରି ବଳବାନ୍—ଭାରି ଦୁର୍ବଳ—ମୋଟ ଉପରେ ଭାରି ଭଲ ସେ ଥିଲା ହର୍ଷ ! ମୁଁ ତା'କୁ ଚୁମ୍ବନ କରେ—ମୁଁ ତାକୁ ଗେଲ କରେ । ସେ ବି, ସେ ବି, ମୋତେ ତାର ପ୍ରତିଦାନ ନ ଦେଇ ଛାଡ଼େ ନାହିଁ । କିନ୍ତୁ ଏହା ବୋଲି ଲାଜ ତା'ଠାରେ କମ୍ ନ ଥିଲା । ଦିନରେ ସେ ମେଣ୍ଢା—କିନ୍ତୁ ରାତିରେ ???

"ନାଁ ନାଁ—ତାର ଚରିତ୍ର ଉପରେ ତୁମେ ଅବିଶ୍ୱାସ କରନା ହର୍ଷ । ସେ ଦେବକୁମାର । ରାତିରେ ତାକୁ ଛାତି ଉପରେ ଶୁଆଇ ମୁଁ ନିଦ ଯାଇଚି । ସେ କିନ୍ତୁ ମୋର ସତୀତ୍ୱର ଅବମାନନା କେବେ କରି ନାହିଁ । ହଁ, ହୋଇପାରେ ସେ ନିର୍ବୋଧ—ନାଁ-ନା, ନିର୍ବୋଧ ନୁହଁ ସେ—ତାକୁ ତୁମେ ବରଂ ସୁବୋଧ କହିବ । ମୁଁ ତାକୁ ପୁଅ ପରି ଭଲ ପାଉଥିଲି—ନାଁ-ନାଁ-ମୁଁ ତାକୁ ଭାଇ ପରି—ନାଁ—ନାଁ,—ହର୍ଷ—ମୋର ଫେର୍ ଭୁଲ ହୋଇଯାଉଚି ! ମୁଁ ଠିକ୍ କହିପାରୁନି ମୁଁ ତାକୁ କିପରି—"

ମୋର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । ମୁଁ ସ୍ୱପ୍ନ ଦେଖୁନାହିଁ ତ ?

ଘଣ୍ଟାରେ ମୋର ଆଠଟା ବାଜଚ, ନାଁ—ନାଁ, ଠିକ୍ ଅଛୁ । ଏଇତ ଡାକ୍ତର ମୃଣାଳିନୀ ନାଏକ—ନାଁ—ନାଁ—, ଠିକ୍ ଅଛୁ । ମୁଁ ମୋର ଜାନିରଣ ସମ୍ବନ୍ଧେ ଅଧିକ ସଜାଗ ହେବାକୁ ଯାଇ ପଗ୍ଚରିଲି—"ହଁ, ଲୁହନୁ ମିସ୍ ନାଏକ, ତାପରେ କଣ ହେଲା ? କୁଆଡ଼େ ଗଲା ସେ ?"

"କୁଆଡ଼େ ଗଲା ସେ ???" ଡାକ୍ତର ମୃଣାଳିନୀ ସେଇ ଖଟ ଉପରେ ହାଲେଇ ଖାଇ ପଡ଼ିଗଲେ । "କୁ—ଆ— ଡ଼େ—ଗଲା ସେ ? କୁ—ଆ—ଡ଼େ—ଗ—ଲା—ସେ ??"

"ତୁମେ ପଗ୍ଚରୁଛ ହର୍ଷ—କୁଆଡ଼େ ଗଲା ସେ ? ହଁ—ହଁ, କୁଆଡ଼େ ସେ ଆଉ ଯାଆନ୍ତା ? ବିଷ—ବିଷ—ବିଷ—" ଡାକ୍ତର ମୃଣାଳିନୀ ମୋ-ଆଡ଼କୁ ଉଠି ଆସିଲେ ।

"ପ—ଟା—ସି—ଅମ୍—ସା—ଇ—ନା—ଇଡ଼" । ସେ ଆହୁରି ମୋ ଆଡ଼କୁ ଚଢ଼ିକ ଆସିଲେ । ମୁଁ ଚମକିପଡ଼ିଲି—ମୁଁ ଜଡ଼ ପାଲଟି ଗଲି ।

"ବିଷ ? ଡାକ୍ତର ନାଏକ ! ବିଷ ?? ଆପଣ କହୁଛନ୍ତି !"

"ହଁ ହଁ, ଯେବେ ମୋର ଅନୁପସ୍ଥିତିରେ ଖାଇବା ଜିନିଷରେ ସେଇ ସଇତାନ କମ୍ପାଉଣ୍ଡରଟା—ସେଇ ମଉନମୁହଁ । କମ୍ପାଉଣ୍ଡରଟା— ସେଇ ଜାଲୁଆର କମ୍ପାଉଣ୍ଡରଟା ତାକୁ ବିଷ ଦେଇ ମାରି ଦେଲା । ମୁଁ ଜାଣିନି କେମିତି—ମୁଁ ଜାଣିନି କାହିଁକି ? ତା'ପରେ—ତା' ପରେ—ସେ ପଶୁଟାକୁ ମୁଁ ଆଉ ଦେଖିନି !! ସମସ୍ତେ ଜାଣିଲେ ପିଲାଟା ସେଲିବ୍ରଅମ ମାଲେରିଆରେ —" ତା'ପରେ ଗଭୀର ନିସ୍ତବ୍ଧତା । ଡାକ୍ତର ମୃଣାଳିନୀ ସେଇ ଖଟ ଉପରେ ତକିଆରେ ମୁହଁ ପୋତି ଫକି ଫକି କାନ୍ଦୁଥାଆନ୍ତି । ମୁଁ ସେଠି ଛିଡ଼ା ହୋଇ ରହିଥାଏ । ସମଗ୍ର ଘଟଣାଟାକୁ ଏକାଠି ଯୋଡ଼ଯାଡ଼— ତାର ଗୋଟେ କମ ଆଣି ମୁଁ ତାକୁ ବୁଝିବାକୁ ଚେଷ୍ଟା କରୁଥାଏ । କିନ୍ତୁ ମୁଁ ଏତେ ଅଭିଭୂତ ଜଡ଼ୀଭୂତ ହୋଇଯାଇଥିଲି ଯେ ଏହା ପୂର୍ବରୁ କ'ଣ ସବୁ ମୁଁ ଶୁଣିଛି ସେ ସବୁ ଘଟଣା ମୋର କିଛି ମାତ୍ର ମନେ ପଡ଼ୁ ନ ଥାଏ । ମୁଁ କେବଳ ଏଇ ରହସ୍ୟର ରୋମହର୍ଷକ ପ୍ରଭାବଟାରେ ବୁଡ଼ି ରହିଥିଲି ।

କିନ୍ତୁ ମୋର ମନ ସମଗ୍ର ରହସ୍ୟଟାର ଅବଧାରଣ କରି ପାରୁ ନଥିଲା । ଡାକ୍ତର ମୃଣାଳିନୀ ସେଇ ପରି କହିଁ କହିଁ ହୋଇ କାନ୍ଦିଉଠୁଥାନ୍ତି ।

ବର୍ତ୍ତମାନ ମୋର କର୍ତ୍ତବ୍ୟ କଣ ? ମୁଁ କଣ କରିପାରେ ? ଡାକ୍ତର ମୃଣାଳିନୀ ହଠାତ୍ ଖଟ ଉପରୁ ଉଠି ଆସିଲେ । ଠିକ୍ ହିଷ୍ଟିରିଆ ରୋଗୀ ପରି ଚଟାପଟ୍—ଦେହର ଶାଢ଼ୀ ଅସମ୍ଭାଳ, ଶ୍ଳଥ—କବଚରେ ବନ୍ଧନ ଶିଥିଳ । ପୃଥୁଳ ଦେହରେ ଏକ ପାଶବିକ ଅଥଚ ଅସହାୟ କରୁଣ ନଗ୍ନତା ।

ସେ ମୋତେ କୁଣ୍ଢାଇପକାଇଲେ ।

"କିନ୍ତୁ ହର୍ଷ, ତୁମେ ବି ମୋତେ ଫାଙ୍କି ଦିଅ ନାହିଁ ! ନାଁ—ନାଁ, ମୁଁ ତୁମର କୌଣସି ଆପତ୍ତି ଶୁଣିବି ନାହିଁ । ତୁମେ ଆଉ ଏଠାରୁ ଯାଅ ନାହିଁ.........ଆମକୁ କାହାରି କିଛି କହିବାର ଅଧିକାର ନାହିଁ—କାହାରି ଉପଦେଶ ଆମର ଲୋଡ଼ା ନାହିଁ । କହ, କହ ହର୍ଷ । ମୋତେ ନିରାଶ କର ନାହିଁ —ମୁଁ ନିରୁପାୟ—ମୁଁ ମରିଯିବି !"

ସେ ମୋର ଉପରକୁ ଆଉଜିପଡ଼ି ମୋ ଛାତିରେ ମୁହଁ ଲଗାଇ କହିଁ କହିଁ ହୋଇ କାନ୍ଦିଉଠିଲେ ।

ମୁଁ ପଡ଼ିଯାଇଥାନ୍ତି ଏତେ ବଡ ପୃଥୁଳ ଶରୀର ସମ୍ଭାଳିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିଥାନ୍ତା । କିନ୍ତୁ ମୋ ପଛରେ କାନ୍ଥ ଥିଲା ।

ଆମେ ଦୁହେଁ କେତେବେଳଯାଏ ସେମିତି ରହିଲୁ ମୁଁ କହି ପାରୁନି । କାରଣ ମୋ ଘଣ୍ଟାର ଚାବି ସରିଯାଇଥିବାରୁ ବନ୍ଦ ହୋଇଯାଇଥିଲା । ମୁଁ ତାଙ୍କୁ କଣ ବା ଉତ୍ତର ଦେଇଥାନ୍ତି ? କିଛି କଥା ମୋ ମୁଣ୍ଡକୁ ଢୁକୁ ନ ଥିଲା । ମୁଁ କେବଳ ସ୍ତମ୍ଭିତ—ମୋହିତ—ବଶୀଭୂତ ।

× × × ×

କିନ୍ତୁ ବର୍ତ୍ତମାନ ମୁଁ ଭାବୁଚି, ଡାକ୍ତର ମୃଣାଳିନୀଙ୍କୁ କିପରି ଭାବେ ଗ୍ରହଣ କରିଯାଇପାରିଥାନ୍ତା ? ଜନନୀ ରୂପେ—ନା ଭଗିନୀରୂପେ—ନା ଜାୟା ରୂପେ ?



# ନଦୀ ଓ ନାରୀ

ତଳକୁ ଓହ୍ଲାଇଛନ୍ତି ଶ୍ରୀମତୀ ବନଜା ଗନ୍ତାୟତ—କ୍ରମାଗତ ତଳକୁ । ନିମ୍ନଗାମୀ ବନ୍ୟା, ପ୍ରଖର ନଦୀ ଯେତେ ଉତ୍‌କୂଳ ଆଉ ଉଦ୍‌ବେଳ ହୋଇ ବହିଗଲେ ବି ଶେଷରେ ନିଜର ସଂକୀର୍ଣ୍ଣ ସତ୍ତାକୁ ହରାଇଦିଏ ଏକ ଅନନ୍ତ ସାଗରର ପରିବ୍ୟାପ୍ତ ସତ୍ତା ମଧ୍ୟରେ । ତେଣୁ ମିଳନାନ୍ତରର ଏହି ସାଗର ସଙ୍ଗମରେ ତା ଜୀବନର ସମସ୍ତ ଆବିଳତା, ସମସ୍ତ ଉତ୍‌କୂଳତା ଓ ସମସ୍ତ ଚଞ୍ଚଳ ବ୍ୟାକୁଳ ଉଦ୍‌ବେଳତା ସେତେବେଳେ ହୁଏତ ଧନ୍ୟ ହୁଏ—ସାର୍ଥକ ହୁଏ, ଆଉ ଏକ ଗଭୀର ପ୍ରଶାନ୍ତିର ସଲୀଳ ସରଳତାରେ ମୁକ୍ତିର ଆସ୍ୱାଦ ଗାଏ ।

ମାତ୍ର ଡାକ୍ତର ସୁଦର୍ଶନ ଗନ୍ତାୟତଙ୍କର ଦ୍ୱିତୀୟ ପକ୍ଷର ତରୁଣୀ ଭାର୍ଯ୍ୟା ଶ୍ରୀମତୀ ବନଜା ଗନ୍ତାୟତଙ୍କର ଏହି ଉତ୍‌କୂଳ ଉଦ୍‌ବେଳତା ତ ସାଗରାଭିମୁଖୀ ନୁହେଁ—ଏ ଯେପରି ଏକ ଉଚ୍ଛଳ ପ୍ରାଣବତୀ ବନ୍ୟାସ୍ରୋତର ଉଦ୍‌ଭ୍ରାନ୍ତ ଲକ୍ଷ୍ୟହୀନ ଜଳଯାତ୍ରା ! କେଉଁଠି ଏହି ପ୍ରବହମାନ ଜଳୀୟ ଉଦ୍‌ବେଳତାର ଶେଷ ଯେପରି ଜଣାନାହିଁ ।

ବନଜା ବୁଝିନାହାନ୍ତି—କେତେ ଏହି ଭଳି ଉତ୍‌କୂଳ ସ୍ରୋତସ୍ୱିନୀ ଲକ୍ଷ୍ୟହରା ହୋଇ ହଠାତ୍ ପଥ ମଧ୍ୟରେ ମରୁଭୂମିର ଚିର ଅଶାନ୍ତ ତୃଷାର୍ତ୍ତ ଶୁଷ୍କତା ମଧ୍ୟରେ ଧାରା ଲୀନ ହୋଇଯାଇଛନ୍ତି । ସେ ବୁଝିନାହାନ୍ତି ଏହି ଉଦ୍‌ଭ୍ରାନ୍ତ ଉତ୍‌କ୍ଷିପ୍ତ ଜୀବନର ଶେଷରେ ହୁଏତ କେଉଁଠି ଆକସ୍ମିକ ଭାବରେ ଅପେକ୍ଷା କରି ରହିଛି ଏକ ଚିର ହାହାକାରମୟ ଜ୍ୱାଳାପୂର୍ଣ୍ଣ ମରୁ ଆଲିଙ୍ଗନର ନାରକୀୟ ଶୂନ୍ୟତା ।

ସେ ବୁଝିନାହାନ୍ତି ।

ପାତାଳପୁରୀର କେଉଁ ଏକ ଅପଦେବତା ତାଙ୍କ ହାତ ଧରି ତାଙ୍କୁ ଟାଣି ନେଉଛି କ୍ରମାଗତ ତଳକୁ ତଳକୁ ।

ଶ୍ରୀମତୀ ବନଜା ସୁନ୍ଦରୀ ।

ପରିପୂର୍ଣ୍ଣ ଯୌବନ—ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ—ଆଉ ପରିପୂର୍ଣ୍ଣ ସ୍ୱାସ୍ଥ୍ୟର ଅପୂର୍ବ ସମାବେଶରେ ବନଜା ଯେପରି ବହୁ ଜନକାମ୍ୟ ଉପଭୋଗର ଏକ ଲୋଭନୀୟ ପରିପୂର୍ଣ୍ଣ ସୁରାପାତ୍ର ! କାମ ବିଳାସର ବନ୍ୟେଲ ପ୍ରମତ୍ତତାରେ ଅତି ଉଦ୍ଧତ ଏହି ବକ୍ଷୋଜ ଯୁଗଳ । ଉନ୍ମାଦ ମଦନ ବିଳାସର ସୁଗଚ ରଙ୍ଗଭୂମି ଭଳି ଅତି ବିସ୍ତୃତ ଏହି ନିତମ୍ବ ଦେଶ । ଆଉ ଶେଷରେ ଅଜସ୍ର କାମନାର ଉଚ୍ଛ୍ୱସିତ ତରଙ୍ଗରେ ବିକ୍ଷୁବ୍ଧ ନୀଳସିନ୍ଧୁର ନୀଳିମାରେ ଉଦ୍‌ଭାସିତ ଏହି ନିତମ୍ବସ୍ପର୍ଶୀ ଘନ କେଶ ସମ୍ଭାର ମଧ୍ୟରେ, ସେହି କାମସିନ୍ଧୁ ଉତ୍‌ଥିତ କାମନାର ବାଡ଼ବାଗ୍ନି ଶିଖା ଭଳି ତାଙ୍କ ଦେହ ଓ ମୁଖର ଏହି ଜ୍ୱଳମାନ ସ୍ୱର୍ଣ୍ଣଦୀପ୍ତି । ଏତେ ଐଶ୍ୱର୍ଯ୍ୟରେ ଐଶ୍ୱର୍ଯ୍ୟ ଗର୍ବିତା, ସୁଭଗା ବନଜା ଜୀବନର ପ୍ରମତ୍ତ ବେଗରେ ସ୍ପୃହାବତୀ ନ ହୁଅନ୍ତେ କିପରି ?

ସମସ୍ତେ ଜାଣନ୍ତି ଡାକ୍ତର ସୁଦର୍ଶନ ଗନ୍ତାୟତଙ୍କର ଏହି ତରୁଣୀ ସହଧର୍ମିଣୀ ଶ୍ରୀମତୀ ବନଜା ଗନ୍ତାୟତ ସ୍ୱୈରିଣୀ, ବ୍ୟଭିଚାରିଣୀ । ସ୍ୱାମୀ ସହରର ସବୁଠାରୁ ସୁଯୋଗ୍ୟ ଓ ସ୍ୱନାମଧନ୍ୟ ଡାକ୍ତର । ଅଜସ୍ର ଉପାର୍ଜନ, ଅଜସ୍ର-ଖ୍ୟାତି, ଆଉ ଅଜସ୍ର ବିଶ୍ୱାସ ଓ ଆସ୍ଥାଉପରେ ଦୃଢ଼ାସୀନ ଏହି ଡାକ୍ତର ଗନ୍ତାୟତ । ମାତ୍ର ସ୍ୱାମୀଙ୍କର ଏହି ଦୃଢ଼ ପ୍ରତିଷ୍ଠା ଉପରେ ଠିଆ ହୋଇ ତଳକୁ ଡେଇଁପଡ଼ୁଛନ୍ତି ବନଜା ।

କାହିଁକି ?

ସ୍ୱାମୀ କଣ ତାଙ୍କୁ ଭଲ ପାଆନ୍ତି ନାହିଁ ? ସ୍ୱାମୀଙ୍କର ହୃଦୟରେ କଣ ତାଙ୍କ ଲାଗି ଯଥେଷ୍ଟ ପ୍ରେମସ୍ରୋତ ସଂଚିତ ହୋଇ ରହିନାହିଁ ? କିମ୍ବା ପତନୋନ୍ମୁଖୀ ଏହି ସୁନ୍ଦରୀ ତରୁଣୀ ପତ୍ନୀଟିର ପଦସ୍ଖଳନ ଉପରେ ଯଥେଷ୍ଟ ସତର୍କ ଦୃଷ୍ଟି ରଖିବାର ଆବେଗାକୁଳ-ଆକାଂକ୍ଷାଶୂନ୍ୟତାର ନିର୍ମମ ଅବହେଳା ଉପରେ ସ୍ୱାମୀ ତାଙ୍କୁ ଉତ୍‌କ୍ଷିପ୍ତା କରି ରଖିଛନ୍ତି ?

ବନଜାଙ୍କୁ ପଚ୍ଚାରିଲେ ହୁଏତ ସେ ଏହାର ଉତ୍ତର ଦେବେ ନାହିଁ । କିନ୍ତୁ ନିଜେ ସେ ଯେତେବେଳେ ନିଜକୁ ପଚ୍ଚାରିବସନ୍ତି—ଏ ଭଳି ସ୍ୱାମୀ ପ୍ରତି କେଉଁ ଦୁର୍ଜ୍ଜୟ ଅଭିମାନରେ ଉତ୍ତେଜିତା ହୋଇ ତୁମେ ଅନ୍ୟ ପୁରୁଷର ଉତ୍ସଙ୍ଗ ଭିତରକୁ ଚାଲିପଡ଼ିଛ ବନଜା—ନିଜେ ହିଁ ଦିଅନ୍ତି ସେ ନିଜକୁ ଉତ୍ତର—କ୍ଷୋଭ—କ୍ଷୋଭ, ଏକ ଗୋପନୀୟ—ଏକାନ୍ତ ଗୋପନୀୟ ଭୟଙ୍କର ଦୁର୍ବାର କ୍ଷୋଭ ।

ସ୍ୱାମୀଙ୍କ ପ୍ରତି ଏକ ଭୟଙ୍କର ସନ୍ଦେହ ତାଙ୍କର ଅବଚେତନ ମନ ଭିତରେ ଭୂତ ଭଳି ଲୁଚିରହିଛି । ସେହି ଭୟଙ୍କର ଭୂତଟା ହିଁ ତାଙ୍କୁ ଉତ୍କ୍ଷିପ୍ତ କରିଦେଉଛି······ସେ ଉନ୍ମାଦିନୀ । ସେ ଉପାୟହୀନା !

ସ୍ୱାମୀ ତାଙ୍କୁ ଯଥେଷ୍ଟ ପ୍ରେମ କରନ୍ତି । କିନ୍ତୁ ସ୍ୱାମୀଙ୍କର ପ୍ରେମଟା ହିଁ ସତେ ବା ସେହି ଭୟଙ୍କର ଭୂତ ! ଏ ପ୍ରେମ ତାଙ୍କୁ ଆଶ୍ୱାସନା ଦେଇ ନାହିଁ, ସାନ୍ତ୍ୱନା ଦେଇ ନାହିଁ—ବରଂ ଭୟଭୀତ କରିଛି । ତାଙ୍କର ହୃଦୟକୁ ନିତ୍ୟ ଏକ ଭୟଙ୍କର ହିଂସ୍ର ସନ୍ଦେହରେ ଅସ୍ଥିର କରି ରଖିଛି । ସ୍ୱାମୀଙ୍କର ପ୍ରେମପୀଠରୁ ସେ ଭୟରେ ତଳକୁ ଡେଇଁପଡ଼ିଛନ୍ତି । ସ୍ୱାମୀଙ୍କର ପ୍ରେମପୀଠ—ସତେବା ଯଜ୍ଞ ପଶୁ ଲାଗି ଗୋଟାଏ ହିଂସ୍ର ଭୟଙ୍କର ବଳିପୀଠ । ପ୍ରଣୟର ବରମାଲ୍ୟ ଗଳାରେ ଲମ୍ବାଇ ଦେଇ, ମଧୁର ପ୍ରୀତି ମନ୍ତ୍ରର ଗୁଞ୍ଜନରେ ସମ୍ମୋହିତ କରିଦେଇ, ପ୍ରଣୟ ବାଦ୍ୟର ଉନ୍ମତ୍ତ ବାଜଣାରେ ଚତୁର୍ଦ୍ଦିଗକୁ ଚମକିତ କରିଦେଇ; ଶେଷରେ ସତେବା ସେ ପ୍ରେମର ଖଡ୍‌ଗରେ ହିଁ ଶିରଚ୍ଛେଦ କରି ନିଃଶେଷ କରିଦେବେ ତାଙ୍କର ପ୍ରେମଯଜ୍ଞ । ଏ ଆଶଙ୍କା କେବଳ ତାଙ୍କର ଅଳୀକ କଳ୍ପନା ନୁହେଁ । ଏ ଆଶଙ୍କା ପଛରେ ତାଙ୍କର ଯଥେଷ୍ଟ ହେତୁ ରହିଛି ! ମାତ୍ର କାହାକୁ କହିବେ ସେ ଏହି ଭୟଙ୍କର କ୍ଷେତ୍ରଟି ? କହି ପାରିବେ ? କହି ପାରିବେ କି ? ଛାତି ଫାଟିଯିବ ନାହିଁ ? ଇସ୍‌······

ତା' ଅପେକ୍ଷା ବରଂ······ହେଇ ବାହାରେ ମଟର ହର୍ଣ୍ଣ ଶୁଭିଲାଣି । ମିଷ୍ଟର୍ କାମରାଜନ ଆସିଲେ ବୋଧହୁଏ । ମିଷ୍ଟର୍ କାମରାଜନ୍ ଅବିବାହିତ ଆଇ. ଏ. ଏସ୍‌ ଅଫିସର—କ୍ଷମତା, ପଦ, ଅର୍ଥ ଆଉ ବେଶ ।

ଜୀବନକୁ ସେ ସୁନ୍ଦର କହନ୍ତି ନାହିଁ, କହନ୍ତି ଚମତ୍କାର ! ପ୍ରେମକୁ ପବିତ୍ର କହନ୍ତି ନାହିଁ, କହନ୍ତି ମଧୁର । ତାଙ୍କର ଆଲିଙ୍ଗନ ଭିତରେ ନିଜକୁ ସମର୍ପିଦେଲେ ବନଜା କ୍ଷଣକ ଲାଗି ହେଉଥିଲେ ନିଶ୍ଚିନ୍ତ ହୋଇପଡ଼ନ୍ତି । ସ୍ୱାମୀଙ୍କର ମଧ୍ୟ ସେ ଜଣେ ବିଶିଷ୍ଟ ବନ୍ଧୁ । ତାଙ୍କ ସଙ୍ଗେ ଅବାଧ ମିଳାମିଶାରେ ସ୍ୱାମୀ କେବେ ବାଧା ଦିଅନ୍ତି ନାହିଁ, ବରଂ ସୁଯୋଗ ଦିଅନ୍ତି । ଏଇ ମିଷ୍ଟର କାମରାଜନଙ୍କୁ ବନଜାଦେବୀଙ୍କ ସଙ୍ଗେ ଯୋଡ଼ି ଏ ସହରରେ ବିଶୃଙ୍ଖଳାକର ଜନରବ ସୃଷ୍ଟି ହୋଇଛି ଯେ, ବନଜା ବ୍ୟଭିଚାରିଣୀ ।

ଲୋକେ କହୁଛନ୍ତି ବନଜା ଗନ୍ଧାସକ୍ତ ବ୍ୟଭିଚାରିଣୀ । ଲୋକେ କହୁଛନ୍ତି ବନଜା ଗନ୍ଧାସକ୍ତ ସ୍ୱାମୀ ଉପହୃତ ପ୍ରସାଧନର ବିଳାସବେଦୀ ଉପରେ ପରପୁରୁଷର ପ୍ରମତ୍ତ କାମନାସବ ପାନ କରି ମତ୍ତହୁଏ ।

ଭଲ ହେଲା—ଆଚ୍ଛା ହେଲା—ବେଶ୍ ହେଲା ।

ବନଜା ଗନ୍ଧାସକ୍ତ ଲୋକଙ୍କ ରୁଚି ଉପରେ ବଞ୍ଚିନାହିଁ । ବନଜା ଗନ୍ଧାସକ୍ତ ଲୋକଙ୍କ ନୀତି ଉପରେ ବଞ୍ଚିନାହିଁ । ବନଜା ଗନ୍ଧାସକ୍ତ କାହାର ମନ୍ତବ୍ୟକୁ ଜୀବନର ପାଥେୟ ବୋଲି ବଡ଼କରି ଧରେ ନାହିଁ । ବନଜାର ଜୀବନ ଆଉ କାହା ହାତରେ ନାହିଁ । ଯେତେ ଦୁର୍ବୋଧ ବା ଯେତେ ଦୁର୍ଗମ ହେଲେ ମଧ୍ୟ ସେ ଜୀବନ ଖଣ୍ଡିଏ ଚମତ୍କାର ବହି ଭଳି । ସେ ତାକୁ ନିଜେ ନିଜର କାଖରେ ଯାକି ବୁଲିପାରିବ, ଆଉ ଯେତେବେଳେ ସେ ବୁଲିବାରେ କ୍ଳାନ୍ତ ବୋଧ କରିବ ସେତେବେଳେ କେଉଁ ଗୋଟେ ନିରୁଛିଆ ବରଗଛ ତଳେ ବସି ସେ ସେହି ବହିଟାକୁ ମେଲାଇ ନିଜେ ନିଜେ ପଢ଼ି ତାର ଅର୍ଥ ବୁଝିପାରିବ ବା ବୁଝିବାକୁ ଚେଷ୍ଟା କରିବ ।

ବନଜା ନିର୍ବୋଧ ନୁହେ ।

ସମାଜର ଆଉ ପାଞ୍ଚଟା ସତୀ ସାବିତ୍ରୀଙ୍କ ପରି ବନଜା ତା' ଜୀବନର ଅର୍ଥ ଅନ୍ୟ ମୁଖରୁ ଶୁଣି ନିଶ୍ଚିନ୍ତ ହୋଇ ନ ପାରେ । କିମ୍ବା ସେମାନଙ୍କ ଭଳି ଜୀବନ ଅପେକ୍ଷା ସତୀତ୍ୱକୁ ବଡ଼ବୋଲି ମାନିନେବାକୁ ସେ ବାଧ୍ୟ ନୁହେଁ ।

ସେ ଯାହା ବୁଝିଛି ତାହାହିଁ ଠିକ୍ । ଜୀବନ ବଡ଼ । ସତୀତ୍ୱ ଜୀବନପାଇଁ—ଯେମିତି ଜୀବନ ପାଇଁ ଭାତ, ଡାଲି, ତରକାରୀ । ଖାଦ୍ୟର

ବଦଳ ହୁଏ ରୁଚିର ତାଗିଦରେ । ସେହିଭଳି ସବୁପ୍ରକାର ନୀତି ଓ ସ୍ଥିତିକୁ ମଧ୍ୟ ଜୀବନର ରୁଚି ଦୃଷ୍ଟିରୁ ପରିବର୍ତ୍ତିନ କରିଯାଇପାରେ । ସମସ୍ତଙ୍କ ଜୀବନ ଗୋଟାଏ ଜୀବନ ନୁହେଁ । ସମସ୍ତଙ୍କ ଜୀବନର ଆବଶ୍ୟକତା ବା ସମସ୍ୟା ବି ନୁହେଁ ସେମିତି ଗୋଟାଏ ।

ଲୋକେ କହୁଛନ୍ତି ବନଜା ଗଲ୍ପାସ୍ପଦ ଅଧୋଗାମିନୀ । ସେ ଗଡ଼ି ଗଡ଼ି ଚାଲିଛି ତଳକୁ ତଳକୁ, କିନ୍ତୁ କେଉଁଟା ତଳ, କେଉଁଟା ଉପର ?

ସେ ଗୋଟାଏ ରବିବାରର ଅଳସ ନିଃସଙ୍ଗ ଅପରାହ୍ଣ । ସ୍ୱାମୀ ଏକ ସପ୍ତାହ ଲାଗି ବାହାରକୁ ଯାଇଛନ୍ତି । ଏହି ବହୁ ପ୍ରତୀକ୍ଷାକାଂକ୍ଷିତ ସୁଯୋଗଟିର ସୁଯୋଗ ନେଇଥିଲେ ସେମାନେ—ବନଜା ଆଉ ମିଃ କାମରାଜନ୍ । ତାପରେ ···ସେଦିନ ଦର୍ପଣ ସମ୍ମୁଖରେ ଶ୍ଳଥ କେଶଶୃଙ୍ଖଳକୁ ମୁକୁଳିତ କରିଦେଇ ବନଜାଦେବୀ ନିଜର ପ୍ରତିବିମ୍ବକୁ ଦଣ୍ଡେ ଚାହିଁରହିଲେ । ଘନ ଚିକ୍କଣ କୃଷ୍ଣକୁଂଚିତ ଆଲୁଳାୟିତ କେଶରାଶି ମଧ୍ୟରେ ତାଙ୍କର ମୁଖମଣ୍ଡଳଟି କାମନାଗ୍ନିର ଆଲୋକରେ ଉଦ୍ଦୀପ୍ତ ହୋଇ ଉଠିଛି । ବନଜା ଦେବୀ କେଶ ସମ୍ମାର୍ଜନ ଲାଗି ଚିରୁଣୀଟି ଧରି ସୀମନ୍ତରେ ଲଗାଉ ଲଗାଉ ହସି ଉଠିଲେ ଗୁଣୁଁ ଗୁଣୁଁ । ସୀମନ୍ତରେ ସିନ୍ଦୂରରେଖା ତଥାପି ଉଜ୍ଜ୍ୱଳ ଦିଶୁଛି ।

ଯୌବନ-ସୁରାପାତ୍ରର କମନୀୟ ଧାର ଭଳି ଅଧରରୁ ଲିପ୍‌ଷ୍ଟିକ୍‌ର ରଙ୍ଗ ଛାଡ଼ିଯାଇଛି । କାମତପ୍ତ କପାଳରୁ ରୁଜ୍ ଆଉ ପାଉଡ଼ରର ପ୍ରଲେପ ବିବର୍ଣ୍ଣ ହୋଇ ଉଠିଯାଇଛି । ପୋଛି ହୋଇଯାଇଛି ମଧ୍ୟ ଭୋଗକ୍ଳାନ୍ତ ଘର୍ମସିକ୍ତ କପାଳ ଉପରୁ ସିନ୍ଦୂର ବିନ୍ଦୁ । ଆଉ ଅସ୍ତ ବ୍ୟସ୍ତ ହୋଇ ବିଶୃଙ୍ଖଳିତ ହୋଇଯାଇଛି ତାଙ୍କର ଅନୁପମ କେଶରାଜିର ଲୋଭନୀୟ ପରିପାଟୀ ।

କିନ୍ତୁ ସୀମନ୍ତର ଏହି ସିନ୍ଦୂର ଧାରଟି ଘନ କେଶର ଗମସାରଣ୍ୟରେ ନିଜର କ୍ଷୀଣ ଅଥଚ ଉଜ୍ଜ୍ୱଳ ତନୁଟିକୁ ଲୁଚାଇ ବଞ୍ଚି ରହିଛି ଏ ପର୍ଯ୍ୟନ୍ତ । ସ୍ୱାମୀଙ୍କ ଅନୁପସ୍ଥିତିର ସୁଯୋଗ ନେଇ ପରପୁରୁଷ ସଙ୍ଗେ ଗୋପନ କାମୋ-ତ୍ସବରେ ପ୍ରମତ୍ତା ବନଜାର ସମସ୍ତ ଗୋପନ ବ୍ୟଭିଚାରର ସାକ୍ଷୀ ତା ହେଲେ

ସୀମନ୍ତର ଏହି ସିନ୍ଦୂର ରେଖାଟି ! କେତେ କ୍ଷୀଣ, ଅଥଚ ଉନ୍ମତ୍ତ ଉଜ୍ଜ୍ୱଳ-ତାରେ କେତେ ତୀକ୍ଷ୍ଣ ଏହି ସୀମନ୍ତ-ସିନ୍ଦୂର ରେଖାଟିର ଉପହାସ୍ୟ ରକ୍ତିମ ପରିହାସ !!

ଦାନ୍ତରେ ଦାନ୍ତ ଚପି ବନଜା ଦେବୀ ସୀମନ୍ତଦେଶର ସେହି କ୍ଷୀଣ ଅଥଚ ତୀକ୍ଷ୍ଣ ପରିହାସର ଉଜ୍ଜ୍ୱଳ ରକ୍ତିମତା ଉପରେ ଚିରୁଣୀଟି ଚଲାଇ-ଦେଲେ । କାମୋଷ୍ଣ ହୃଦସ୍ପର ଅକପଟ ଉଚ୍ଛ୍ୱାସଭଳି ଦୁଇପଟକୁ ଲହରିତ ହୋଇ ଖସିଁ ପଡ଼ିଲା ତାମସୀ କେଶଶୃଙ୍ଖଳର ଦୁଇଟି ଢେଉ ।

ସୀମନ୍ତର ସିନ୍ଦୂର ରେଖା ତଥାପି ହସୁଛି । ସେହିଭଳି କ୍ଷୀଣ ଅଥଚ ତୀକ୍ଷ୍ଣସରଳ ରକ୍ତମୋଜ୍ଜ୍ୱଳ ହସ । ସେ ଯେପରି ଜଣାଇଦେବାକୁ ଚାହେଁ, ବନଜା ! ଚପଳ ଯୌବନର, ଲୋଭକାତର ଗୋପନ ମଦନୋତ୍ସବରେ ବେପରୁଆ ନୃତ୍ୟ କରି କରି ଯେତେବେଳେ ତୁମର ତାଳ ଭଙ୍ଗ ହେବ, ସେତିକବେଳେ—ସେତିକବେଳେ ତୁମେ ବୁଝିବ, ବନଜା ଜୀବନର ସମସ୍ତ ରଙ୍ଗ ଲିଭିଯାଇଛି, ଯୌବନର ସମସ୍ତ ରେଖା ଲିଭିଯାଇଛି, ଉତ୍ସବର ପାନପାତ୍ରରୁ ସରିଯାଇଛି ଜୀବନର ମଦିରା । ଉତ୍ସବ ସମାପ୍ତିର ଯବନିକା ପଡ଼ିବା ଆଗରୁ ମନେକର ସେହି ଶେଷ ଦୃଶ୍ୟଟି—ନଟଶୂନ୍ୟ ରଙ୍ଗମଞ୍ଚ ଉପରେ, ଦର୍ଶକଶୂନ୍ୟ ପ୍ରେକ୍ଷାଳୟ ସମ୍ମୁଖରେ, ମଳିନ ଆଲୋକରେ ଏକାକିନୀ ତୁମର ପ୍ରାଣପକ୍ଷୀ ଅସୀମ ଶୂନ୍ୟତାରେ ଛଟପଟ ହୋଇ କାନ୍ଦି ଉଠୁଛି । ତୁମେ ସତର୍କ ହୁଅ ବନଜା ! ଏହି କ୍ଷୀଣ, ତୀକ୍ଷ୍ଣ ଉଜ୍ଜ୍ୱଳ ରକ୍ତିମ ହାସ୍ୟ-ରେଖାଟି ଉଦ୍ଦେଶ୍ୟହୀନ ନିରର୍ଥକ ହାସ୍ୟବିଳାସ ନୁହେଁ, ବନଜା ! ଏହା ହିଁ ତୁମ ଲାଗି ଗୋଟିଏ ସରଳ ଧାଡ଼ିରେ ରକ୍ତାକ୍ଷରରେ ଲିଖିତ ଗୋଟାଏ ସତର୍କବାଣୀ ।

ବନଜା ଦେବୀ ଦର୍ପଣରେ ନିଜର ପ୍ରତିବିମ୍ବକୁ ଚାହିଁ ପୁଣି ଥରେ ହସି-ଉଠିଲେ । ହସର ଆଘାତରେ ତାଙ୍କର ଯୌବନବନ୍ୟାକୁଳିତା ବାସନା-ଚଞ୍ଚଳ ଦେହଲତାଟି ଦୋହଲିଗଲା ।

ଯାଃ, ବାଜେ କଥା । ଯୌବନର ମୃତ୍ୟୁ ନାହିଁ, ଉତ୍ସବର ଶେଷ ନାହିଁ । ପାନପାତ୍ର ଖାଲି ହୁଏ ନାହିଁ । ମଦିରାର ନିଶାବିହ୍ୱଳତା ଚିରନ୍ତନ

ମଧ୍ୟରେ ବି ଲହି ଲହି ହୋଇ ନୃତ୍ୟ କରେ । ଜୀବନ ଜୀବନ, ମୃତ୍ୟୁ ମୃତ୍ୟୁ !

ହସୁଥାଉ ସିନ୍ଦୂରରେଖା ସୀମନ୍ତର ସୀମା ନିର୍ଦ୍ଦେଶ କରି—ହସୁଥାଉ । ବିରକ୍ତି ଆଉ ଉପେକ୍ଷାରେ ଚିରୁଣୀଟିକୁ ଡ୍ରେସିଂ ଟେବୁଲ ଉପରେ ପକାଇ-ଦେଇ ବନଜା ସେହିପରି କେଶ ମୁକୁଳିତ କରି ଗ୍ରୀତ ଉପରକୁ ଚଳେ ।

ଏଇ ଗ୍ରୀତ ଉପରଟାଇ ବେଶ୍ । ସନ୍ଧ୍ୟା ହୋଇଆସୁଛି । ଶେଷ ଆଶ୍ୱିନର ବୈଚିତ୍ର୍ୟବହୁଳ ବର୍ଣ୍ଣାଢ଼୍ୟ ସନ୍ଧ୍ୟା । ପଶ୍ଚିମ ଦିଗନ୍ତରେ ଅସ୍ତାସ୍ତମାନ ସୂର୍ଯ୍ୟର ଅପର୍ଯ୍ୟାପ୍ତ ରଙ୍ଗ ବିଳାସ । ଏହି ତ ଜୀବନଧର୍ମୀ ପ୍ରକୃତିର ରଙ୍ଗୀନ୍ ଜୀବନଦର୍ଶନ—ଧାହାଡ଼ ସେପଟେ ଢଳିପଡ଼ିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏଇ ହୋରି ଉତ୍ସବରେ ରଙ୍ଗ ନେଇ ମାତିବା । ଜୀବନଟା ନୁହଁ ପେଡ଼ୀ ଭିତରେ ଚକା ବାନ୍ଧି ମୋଡ଼ିହୋଇ ଶୋଇ ଆପଣାର ରୁଦ୍ଧ ବିଷାକ୍ତ ନିଃଶ୍ୱାସରେ ଆପେ ଆପେ ଦଗ୍ଧ ହୋଇ ମରିବା ! ସନ୍ଧ୍ୟା ବା ପ୍ରଭାତର ସୁନେଲି କିରଣରେ ଆପଣାର ସର୍ପିଳ ତନୁକୁ ଉଜ୍ଜ୍ୱଳତାରେ ଉଦ୍‌ଭାସିତ କରି, କଅଁଳ ଛନ ଛନ ଘାସ ପଡ଼ିଆ ଉପରେ ସର୍ପିଳ ଗତିରେ ଲହରେଇ ଲହରେଇ ଜୀବନର ମୁକ୍ତ ଆନନ୍ଦକୁ ଭୋଗ କରିବାକୁ ହେବ ।

ସନ୍ଧ୍ୟାରାଗର ସୁନେଲି କିରଣରେ ବନଜାଙ୍କର ଗୌର ସୁନ୍ଦର ତନୁଲତା ଫୁଟିଉଠିଲା । ବାଃ, ଏଇ ତ ! ଜୀବନ ସୁନ୍ଦର । ଜୀବନ ରସମୟ । ଜୀବନର ଏଇ ରସମାଧୁର୍ଯ୍ୟକୁ ବିଭିନ୍ନ ପାତ୍ରରେ ପାନ କରିବା ହିଁ ଜୀବନ ପ୍ରତି ସର୍ବଶ୍ରେଷ୍ଠ ମମତା ଓ ସର୍ବଶ୍ରେଷ୍ଠ ବିଚାର ।

ମିଷ୍ଟର କାମରାଜନ ଠିକ୍ କହନ୍ତି । ଆଜି ରବିବାରର ଏଇ ଅଳସ ଦୁଇପ୍ରହରରେ ସମସ୍ତ ନିର୍ଜନତା ଓ ନିଃସଙ୍ଗତାକୁ ସାର୍ଥକ କରି ତାଙ୍କର ଆଖି ଉପରେ ଚୁମା ଦେଉଁ ଦେଉଁ ସେ କେଡ଼େ ସୁନ୍ଦର କଥାଟାଏ ନ କହିଲେ ଭଲା !! ମିଷ୍ଟର କାମରାଜନ୍—ଆଃ, କବିତ୍ୱ ଅଛି ଲୋକଟାର ! ଶାସନବିଭାଗର କଠୋର ନିର୍ମମ ଶୃଙ୍ଖଳ ଭିତରେ ବି ଲୁଚି ରହିଛି ଗୋଟିଏ ସବୁଜ କବି ମନର ଉଚ୍ଛ୍ୱସିତ ବିଶୃଙ୍ଖଳା ।

ଆଖି ଉପରେ ଚୁମା ଦେଉ ଦେଉ ସେ କହିଲେ, "ନୀଳ କଞ୍ଚର ପାତ୍ର ଭିତରେ ମଧୁପାନ କରିଛ ବନଜା ? ଦେଖ, ମୁଁ କିପରି ପିଉଛି !!

ସବୁ ମଧୁ ତ ମିଠା ଲାଗେ ! ମାତ୍ର ନୀଳକଣ୍ଠର ସୌରଭରେ ସୁରଭିତ ଏଇ ମଧୁ ! ଆଃ !"

ବନଜା ମୁଗ୍ଧ ହୋଇ ଚାହିଁରହିଥିଲେ ମିଷ୍ଟର କାମଗ୍ରଜନଙ୍କ ମୁହଁକୁ । ତାଙ୍କର ଆଖି ଦୁଇଟି କି ରଙ୍ଗୀନ୍ ଦିଶୁଥିଲା ସେତେବେଳେ !! ସତେବା ରଙ୍ଗୀନ୍ ସୁରାର ଗ୍ଲାସ ଦୁଇଟି ! ବନଜା ଢଳି ପଡ଼ିଥିଲେ ଅବଶ ହୋଇ ତାଙ୍କର ଆଲିଙ୍ଗନ ଭିତରକୁ ।

ତା'ପରେ ସେ ବନଜାଙ୍କର କେଶସୌରଭ ଆଘ୍ରାଣ କରୁ କରୁ କହିଲେ, "ତୁମ କେଶର ଏଇ ସୁରଭିତ ଅନ୍ଧକାର ମଧ୍ୟରେ ବାଟ ଭୁଲିଲେ ହିଁ ଜୀବନକୁ ଚହ୍ନି ହୁଏ ବନୁ !!"

ତା'ପରେ ତାଙ୍କୁ ନିବିଡ଼ ଆଶ୍ଳେଷ ମଧ୍ୟରେ ଧରି ରଖି ସୋଫା ଉପରେ ଆଉଜି ଯାଇ ସେ କହିଲେ, "ତୁମର ଦେହର ଉଷ୍ଣତା ମଧ୍ୟରେଇ ମୁଁ ପାଏ ଜୀବନର ଶୀତଳ ସ୍ୱାଦ । ତୁମର ବକ୍ଷୋଜଦ୍ୱୟର ଶୈଳକନ୍ଦର ହିଁ ଜୀବନସ୍ରୋତର ଉତ୍ସ, ବନଜା !!"

ତୁମେ ସୁନ୍ଦର···ତୁମେ ମଧୁର···
ତୁମେ କାମ୍ୟ···
ତୁମେ ଆସ···

ବନଜା ଢଳିପଡ଼ିଥିଲେ । ଆବେଶର ଆନ୍ଦୋଳନରେ ସେ ସବୁ ଭୁଲି-ଯାଇ ମିଷ୍ଟର୍ କାମଗ୍ରଜନଙ୍କ ଗ୍ରୀବା ଉପରେ ଢଳିପଡ଼ିଥିଲେ—ଆଜି ନିଜକୁ ସମର୍ପି ଦେଇଥିଲେ ସମ୍ପୂର୍ଣ୍ଣ ଭାବେ ।

ତା'ପରେ—ତା'ପରେ ପରକୀୟା କାମୋତ୍ସବର ଏହି ଗୋପନ ଲୀଳାରେ ବନଜାଙ୍କର ମୁଖମଣ୍ଡଳରୁ ସବୁ ପ୍ରସାଧନର ରଙ୍ଗତକ ଅସ୍ତ ବ୍ୟସ୍ତ ହୋଇ ଲିଭିଗଲେ । ଏହି ଗୋପନ ବ୍ୟଭିଚାରର ମାଧୁର୍ଯ୍ୟ ପୀଡ଼ାରେ ପୀଡ଼ିତ ହୋଇ ଲିଭିଗଲା ମଥାରୁ ସିନ୍ଦୁର ଓ ଆଖିରୁ କଜ୍ଜଳ । ଆଉ ଶେଷରେ ତାଙ୍କର ସତୀତ୍ୱର ବନ୍ଧନ ଫିଟିଯିବା ସଙ୍ଗେ ସଙ୍ଗେ ଫିଟିଯାଇଥିଲା ତାଙ୍କ ଶ୍ଳଥ କେଶ-ପାଶର ପରିପାଟୀ କୌଶଳ । ବହୁତ ଦିନର ଦାରୁଣ ଅପେକ୍ଷା ପରେ ଆଜିର ଏହି ରବିବାସରୀୟ ନିର୍ଜନ ନିଃସଙ୍ଗ ଅଳସ ଅପରାହ୍ଣଟିକୁ ସଫଳ କରି ଉନ୍ମତ୍ତ

ଜୀବନସମ୍ଭୋଗର ସେଉଁ ମଧୁମଦିରା ପିଆଇ ଦେଇଗଲେ ମିଷ୍ଟର କାମରାଜନ୍
ତାହାହିଁ ତ ଜୀବନର ପ୍ରକୃତ ରସ—ଆଉ ଯୌବନର ପ୍ରକୃତ ବେଗ ।

ଏଥିରେ ପାପ କୁଆଡ଼ୁ ଆସିଲା ?

ବାଜେ କଥା ।

ଗଲାବେଳେ ପୁଣି କହିଗଲେ କାମରାଜନ୍—ସମ୍ପୂର୍ଣ୍ଣ ଅଜାଣତରେ ତୁମ ମଥାରୁ ସିନ୍ଦୂର ଲିଭାଇଦେଲି ବନୁ ! ବିରକ୍ତ ହୋଇ ନାହିଁ ତ ?

ରତିକ୍ଲାନ୍ତା ବନଜା ଅଳସିତା ତନୁଲତାଟିକୁ ନିର୍ଭିକ ଛନ୍ଦରେ ବନ୍ଧ କରି ଦୁଇଟି ମୃଣାଳକୋମଳ ଭୁଜଦ୍ୱାରା ମୁଖ ଉପରେ ପରିଧି ରଚନାକରି ହାଇ ମାରୁ ମାରୁ ଅଲକ୍ଷ୍ଯ କଣ୍ଠରେ ଉତ୍ତର ଦେଲେ—ମୁଁ ଏଣିକି ତା'ହେଲେ କୁଙ୍କୁମ ପିନ୍ଧିବି ।

—କିନ୍ତୁ କୁଙ୍କୁମଦ୍ୱାରା ତୁମେ କଣ ସିନ୍ଦୂରର ମର୍ଯ୍ୟାଦା ରକ୍ଷା କରିପାରିବ, ବନୁ ?

ବନଜା ହଠାତ୍ ଚମକିପଡ଼ି ସନ୍ତ୍ରସ୍ତଭାବରେ ମିଃ କାମରାଜନ୍‌ଙ୍କ ମୁହଁକୁ ଚାହିଁ ରହିଥିଲେ । ଏ କଅଣ ? କାମରାଜନ୍ ଥଟ୍ଟା କରୁ ନାହାନ୍ତି ତ ?

ମାତ୍ର କାମରାଜନ୍ ସଙ୍ଗେ ସଙ୍ଗେ ବନଜାଙ୍କର କ୍ଷିପ୍ତ କେଶରାଶିକୁ ଅଳ୍ପ ସଜାଡ଼ି ଦେଇ କହିଲେ—ତା' ଅପେକ୍ଷା ବରଂ ଏଇ ସିନ୍ଦୂରଇ ପିନ୍ଧ ତୁମେ ସବୁଦିନେ ବନୁ ! ତୁମର ପ୍ରେମୋଦ୍ଦୀପ୍ତ କପାଳର ଏଇ ସିନ୍ଦୂରିତ ଲାଞ୍ଛନରେ ନିତ୍ୟ ଲାଞ୍ଛିତ ହେଉ ଗୋଟିଏ ପ୍ରେମାସ୍ପଦର ସମସ୍ତ ଅଶାନ୍ତ ପ୍ରୀତିଲୋଲୁପତା ।

ବନଜା ମୁହଁ ଟେକି ଚାହିଁଲେ । ମିଃ କାମରାଜନ୍‌ଙ୍କ ବକ୍ଷ ଉପର ପୋଷାକର କେତେକାଂଶ ତାଙ୍କର କପାଳର ସିନ୍ଦୂରରେ ଲାଞ୍ଛିତ । ବନଜା ସେହି ସିନ୍ଦୂରଦାଗଗୁଡ଼ିକ ଉପରେ ଅଙ୍ଗୁଳି ଚଳାଇ ଲିଭାଇବାକୁ ବ୍ୟର୍ଥ ଚେଷ୍ଟା କରି କହିଲେ କାତର ସ୍ୱରେ—କି ଲଜ୍ଜାକର ଚିହ୍ନ ଏଗୁଡ଼ାକ ସତେ !!!

ଲଜ୍ଜା କ'ଣ ବନଜା ? ଏତିକି ଲାଞ୍ଛନା ଏତିକି କଳଙ୍କର ମଧୁର

ସ୍ୱର ବୋହିବାକୁ ପଡ଼େ ବୋଲି ତ ଏ ପ୍ରଣୟ ଏତେ ରସପୂର୍ଣ୍ଣ, ଏତେ ସ୍ୱାଦ୍ୟ । ଏଗୁଡ଼ିକ ମୋର ପ୍ରଣୟୀ ଜୀବନର ସଂପଦ କିନ୍ତୁ ! ତୁମେ ଭୟ କରନାହିଁ । ଆଚ୍ଛା, ଥାଅ ବନଜା ! ନିଜର ବେଶଭୂଷା ସଂଯତ କରିନିଅ । ଡାକ୍ତର କୋଉଦିନ ଫେରିବେ ?

ବନଜା ହଠାତ୍ ଚମକି ପଡ଼ିଥିଲେ । ମାତ୍ର ଏତେବେଳେ ଚମକି ପଡ଼ିବାର ଆଉ କ'ଣ ଥିଲା ? ଆଉ ବାକି ଅଛି ଭଲ କଅଣ ?

ମିଃ କାମରାଜନ୍ ପୋଷାକ ପିନ୍ଧି ଘର ଭିତରୁ ବାହାରି ଯାଉ ଯାଉ ବନଜା ତାଙ୍କ ହାତ ଧରି ଅତି ସନ୍ତର୍ପଣ ଆଉ ଭୟରେ ପଚାରି ବସିଲେ—କିଛି ଭୁଲ ହେଲ ନାହିଁତ ମିଃ କାମରାଜନ୍ ? ମୋତେ କାହିଁକି କେମିତି କେମିତି ଲାଗୁଛି !

ହସି ହସି ଉତ୍ତର ଦେଇଥିଲେ ମିଃ କାମରାଜନ୍—( ସବୁବେଳେ ସେ ସେହିପରି ବେପରୁଆ ଆଉ ହସ ହସ ) ଭୁଲ ବୋଲି ଯଦି ସତରେ ମନେହୁଏ କିନ୍ତୁ, ତେବେ ଏହି ଭୁଲଟାଇ ଜୀବନର କାମ୍ୟ । ଏଇ ଭୁଲଟାଇ ଦିଏ ଜୀବନର ନବୀନ ସ୍ୱାଦ । ନୀତି ଓ ଆଦର୍ଶର ଖୋଲ ଭିତରେ ଚିରଦିନ ଯଦି ଆବଦ୍ଧ ହୋଇ ରହେ ଏହି ଦେହମୟ, ପ୍ରାଣମୟ ବାସନାର ଖଡ୍ଗ, ତେବେ ତାହା କଳଙ୍କିତ ହୋଇଯାଏ କିନ୍ତୁ ! ଖୋପରୁ ବାହାରି ବାଆଁରୁ ଡାହାଣ ଆଉ ଡାହାଣରୁ ବାଆଁ, ଉପରୁ ତଳକୁ ବା ତଳୁ ଉପରକୁ ଘୂରି ବୁଲିଲେ ହିଁ ଶାଣିତ ଉଜ୍ଜ୍ୱଳତାରେ ଝଲମଲ କରିଉଠେ ଖଡ୍ଗ । ବାସନାର ଗଳା ରୁଦ୍ଧ କରି ତାକୁ ମାରିଦେବା ଲାଗି ବୃଥା ଚେଷ୍ଟା କର ନାହିଁ । ଦେହର ବାସନାକୁ ନିଷ୍ଠୁର ଭାବରେ ଗଳା ଚିପି ମାରିଦେଲେ ସେ ମନର ବାସନାରେ ବିକୃତ ରୂପ ଧରି ପ୍ରେତ ହୋଇ ମନକୁ ବିଷାକ୍ତ କରିଦେବ । ଦେହର କାମନାକୁ ନୀତିଚକ୍ଷୁର ଅଗ୍ନିରେ ପୋଡ଼ିଦେଇ ତୁମର ଶିବ କଣ କଲେ ? ଦଗ୍ଧ ଦେହର ଭସ୍ମ ଉପରେ ଜୀଇଁ ଉଠି ସର୍ବବ୍ୟାପ୍ତ ହୋଇଉଠିଲା ତାର ବିଦେହୀ ସତ୍ତା···। ନୀତି, ଆଦର୍ଶ, ଉଚିତ ଅନୁଚିତ—ଏ ସବୁ ଆପେକ୍ଷିକ ବିଷୟ କିନ୍ତୁ ! ତୁମେ ନିଶ୍ଚିନ୍ତ ରୁହ । ଆଚ୍ଛା—ବିଦାୟ !!

ଏତିକି କହି ମିଃ କାମରାଜନ୍ କାର୍‌ରେ ବସି ଷ୍ଟାର୍ଟ ଦେଲେ···


Digitized by srujanika@gmail.com

ସଙ୍ଗେ ସଙ୍ଗେ ଏକ ଶବ୍ଦ ଫୁତ୍କାର କରି କାର୍ ଉଡ଼ିଗଲା; ଆଉ ତାର ପଛପଟେ ଭର୍ତ୍ତି ଦେଇ ଉଡ଼ିବୁଲିଲା ଧୂଳି ଓ ଶୁଖିଲା ପତ୍ରର ଗୋଟିଏ ଛୋଟ ଖଣ୍ଡି ଆଭୂତ ।

ବନଜା ମନ ଦୃଢ଼ କରି ଘର ଭିତରକୁ ଫେରିଆସିଲେ । ଠିକ୍ ଅଛି ! ଜୀବନ ସୁନ୍ଦର—ଜୀବନ ଭୋଗ୍ୟ !

ତା'ପରେ ଦେହର ଆବରଣ ସଂଯତ କରି ସେ ଡ୍ରେସିଂ ଟେବୁଲ ପାଖେ ଯାଇ ଦର୍ପଣ ଆଗରେ ଠିଆହୋଇ ନିଜ ମୁହଁକୁ ଗ୍ଚହିଁରହିଲେ । ସବୁ ଲିଭିଯାଇଛି । ମାତ୍ର କେଶାରଣ୍ୟର ନିଘଂଚ ନିଭୃତତାରେ ଲୁଚିରହି ଆତ୍ମରକ୍ଷା କରିଥିଲା ଯେଉଁ ସୀମନ୍ତର ସିନ୍ଦୂର ରେଖାଟି ସୁଯୋଗ ପାଇ ସେହି କେବଳ ତାଙ୍କର ମନ ଭିତରେ ପାପପୁଣ୍ୟର ଦ୍ୱନ୍ଦ୍ୱ ଜଗାଇ ତାଙ୍କୁ ପରିହାସ କରୁଥିଲା । ତାକୁ ଉପେକ୍ଷା କରିଛନ୍ତି ବନଜା । ଚିତ୍ତ ଭୂମିର ଅନ୍ତ-ଆଳରେ ଲଗିରହିଥିବା ସଂସ୍କାରର ଗୋଟିଏ କ୍ଷୁଦ୍ର ଅଥଚ ତୀକ୍ଷ୍ଣ କଣ୍ଟାପରି ଫୋଡ଼ି ଦେଉଛି ମଝେ ମଝେ କେବଳ ଏହି ସୀମନ୍ତର ସିନ୍ଦୂରରେଖା ।

ମାତ୍ର ଏତକ ଯନ୍ତ୍ରଣାକୁ ବି ସେ ଉପେକ୍ଷା କରିବେ, ସହ୍ୟ କରିବେ । ବନଜା ମନେ ମନେ ଭାବିଲେ—ବରଂ ଏତକ ଯଂତ୍ରଣା ହିଁ ଜୀବନର ସ୍ୱାଦ ଭୋଗ ଲଗି ଅନୁକୂଳ । ଯନ୍ତ୍ରଣାହୀନ ଭୋଗ ସ୍ୱାଦ ନୁହେଁ ଆଦୌ । ପାଟି ପୋଡ଼ିଯାଉଥିବ ଅଳ୍ପ ଅଳ୍ପ—ଅଥଚ ପାଟିରୁ ଛାଡ଼ିବାକୁ ଇଚ୍ଛା ହେଉ ନଥିବ । ......ଜୀବନର ରସ ଶୁଦ୍ଧ ମଧୁର ନୁହେଁ, କି ତିକ୍ତ ମଧୁର ବି ନୁହେଁ । ଏହା ଉଷ୍ମ ମଧୁର—ଉଗ୍ର ମଧୁର । ସେଇ ଭଲ ।

ମିଃ କାମଗ୍ରଜନ୍ !! ଆଃ, ଜୀବନ ଅଛି ଲୋକଟାର ! ପୁରୁଷର ସମସ୍ତ ବଳବୀର୍ଯ୍ୟ, ଦର୍ପ, ଆଉ ତୃଷ୍ଣାର ଲୋଭବେଶମୟ ଆଶ୍ଳେଷ ପାଶ ମେଲି ସେ ଯେତେବେଳେ ଠିଆ ହୁଅନ୍ତି—ପ୍ରକୃତରେ ଇଚ୍ଛା ହୁଏ, ତା ଭିତରକୁ ନିର୍ଦ୍ୱନ୍ଦ୍ୱରେ ଡେଇଁପଡ଼ି ପାଶବଦ୍ଧ ହୋଇଯିବାକୁ ।

ବାଃ—ସୁନ୍ଦର !!! କି ଚମତ୍କାର ଏଇ ଅନୁଭୂତି !!

ଛାତ ଉପରେ ସ୍ୱର ଜମିଆସିଲାଣି । ତଳ ଘରେ ବିଜୁଳିବତି ଜଳି

ହେଉଠିଲଣି । ପାଟି ଶୁଭୁଛି—ତଳେ ଆସ୍ତା ବଗିଚାନୀ ସଙ୍ଗେ ଅଠବରଷର ଝିଅ ସୁଚେତା କଣ କଥାବାର୍ତ୍ତା କରୁଛି ।

ସୁଚେତା ଫେରିଲଣି କନ୍‌ଭେଣ୍ଟରୁ ।

—ବଗିଚାନୀ ! ବଗିଚାନୀ ?

ତଳୁ ଉତ୍ତର ଆସିଲା—କଅଣ ମା ?

ନାହିଁ, କିଛି ନାହିଁ । ଚାଲ ମୁଁ ଯାଉଛି ନିଜେ ତଳକୁ ।

ବନଜା ଦେବୀ ତଳକୁ ଓହ୍ଲାଇଲେ ।

ଲୋକେ କହୁଛନ୍ତି—ଡାକ୍ତର ଶତ୍ରୁଘ୍ନଙ୍କର ଦ୍ୱିତୀୟପକ୍ଷ ସ୍ତ୍ରୀ ବନଜା ଦେବୀ ତଳକୁ ଓହ୍ଲାଉଛନ୍ତି, ଆଉ ଛୁଟି ଚାଲିଛନ୍ତି କ୍ରମାଗତ ତଳକୁ । ସବା ଶେଷରେ ସେ ଯେଉଁଠି ପହଞ୍ଚିବେ ସେଇଟା ନରକ ।

କିନ୍ତୁ ବନଜା ଦେବୀଙ୍କର କଣ ଯାଏ ଆସେ ? ସେ ବରଂ ହସି ହସି କହିବେ, କ୍ରମାଗତ ତଳକୁ ଓହ୍ଲାଇ ଓହ୍ଲାଇ ମୁଁ ସବାଶେଷରେ ଯେଉଁଠି ପହଞ୍ଚିବି ସେଇଟା ନରକ ନୁହେଁ ନିର୍ବୋଧଗଣ—ସେଇଟା ରସାତଳ । ମୁଁ ସ୍ୱର୍ଗର ସୁରଧୁନୀ ନୁହେଁ, ମର୍ତ୍ତ୍ୟର ପାବନକାରିଣୀ ଗଙ୍ଗା ବି ନୁହେଁ । ମୁଁ ନିମ୍ନଗାମିନୀ ରସାତଳପ୍ରବାହିନୀ ପାତାଳମୁଖିନୀ ଏକ ସ୍ରୋତସ୍ୱିନୀ ! ମୋତେ ତୁମେ ପାତାଳଗଙ୍ଗା କହିପାର ।

ବନଜା ଦେବୀ ନିମ୍ନକୁଇ ବହିଚାଲିଛନ୍ତି ।



## ଜଣେନୈକା ସୁନ୍ଦରୀଙ୍କ ସଂସ୍ପର୍ଶରେ

ପୁରୁଷମାନେ ସୌଭାଗ୍ୟକୁ ନେଇ ଓ ନାରୀମାନେ ସୌନ୍ଦର୍ଯ୍ୟକୁ ନେଇ ପରସ୍ପରକୁ ଈର୍ଷା କରନ୍ତି, ଏକଥା ଅତି ଜଣାଶୁଣା । ମାତ୍ର ମୋ ସ୍ତ୍ରୀ ଯେପରି ସବୁବେଳେ ସୁନ୍ଦରୀ ନାରୀମାନଙ୍କପ୍ରତି ଅସନ୍ତୁଷ୍ଟ ହୋଇଉଠନ୍ତି ସେ କଥା ବହୁବାର ମୋର ମଧ୍ୟ ଅସହ୍ୟ ମନେହୁଏ । ମାନେ, କୌଣସି ସୁନ୍ଦରୀ ରମଣୀ ମୋ ଘରକୁ ଆସିବାମାତ୍ରେ ଏବଂ ମୁଁ ତାଙ୍କ ସୌନ୍ଦର୍ଯ୍ୟର ଉଚ୍ଚସିତ ପ୍ରଶଂସା କରିବା ମାତ୍ରେ ମୋ ସ୍ତ୍ରୀଙ୍କ ମୁଣ୍ଡକୁ ପିତ୍ତ ଉଠିଯାଏ । ଏପରିକି ଏହି ପିତ୍ତାଧିକ୍ୟ ହେତୁ ସେ ଉପସ୍ଥିତ ସୁନ୍ଦରୀଙ୍କ ଆଗରେ ପିତଳଭଳି କଳା ପଡ଼ିଯାନ୍ତି । ମୁଁ ଭାବେ ଏତେଟା ଈର୍ଷା ବା ଅସନ୍ତୁଷ୍ଟତା ଭଲ ନୁହେଁ । ଏହା ଯେତିକି ଅସ୍ୱାଭାବିକ ସେତିକି ଜାନ୍ତବ ।

ପ୍ରକାଶଥାଉକି ମୋ ସ୍ତ୍ରୀ ବହୁ ସଦ୍‌ଗୁଣର ଅଧିକାରିଣୀ । ସ୍ନେହମୟୀ, ପରୋପକାରିଣୀ ଓ ଈଶ୍ୱରପରାୟଣା । ସେ ଯେ କୌଣସି ଗୁଣବତୀ ନାରୀ ଦେଖିଲେ ତାଙ୍କ ପାଦତଳେ ପଡ଼ିଯିବେ, ତାଙ୍କ ପ୍ରଶଂସାରେ ମୁଖର ହୋଇ-ଯିବେ । କିନ୍ତୁ ରୂପବତୀଟିଏ ଦେଖିଲେହିଁ ଈର୍ଷାଗ୍ନି ହଠାତ୍ ପ୍ରଜ୍ୱଳିତ ହୋଇ ତାଙ୍କର ଦେହକୁ ପୋଡ଼ି ଅଂଗାର କରିଦିଏ ।

ମୋର ବି ଦୁର୍ଭାଗ୍ୟ ଯେ ମୁଁ ବେଳେ ଅବେଳେ ସୁନ୍ଦରୀମାନଙ୍କ ହାବୁଡ଼େ ପଡ଼ିଯାଏ । କିନ୍ତୁ ଏତଦ୍ୱାରା ଆପଣ ଭାବନ୍ତୁ ନାହିଁ ଯେ ମୁଁ ଏମିତି ଜଣେ ସୁପୁରୁଷ ପ୍ରେମିକ, ଯାହାଲାଗି ସୁନ୍ଦରୀମାନେ ବ୍ୟାକୁଳ ହୋଇ ମତେ ଘେରାଇ କରି ବସନ୍ତି । ଅସଲ କଥା ହେଉଛି, ମୁଁ ଜଣେ ନିଷ୍କପଟ ପ୍ରଶଂସା-କାରୀ । ଆଚାରିଛନ୍ତି ନ ବିଚାରି ଯାହାର ଯେଉଁ ଗୁଣ ଦେଖିଲି ତାକୁ ପ୍ରଶଂସା କରିଗଲି । ବିଚାରବନ୍ତ ଲୋକେ ତାଳକୁ ତିଳ କରନ୍ତି, ମାତ୍ର ମୁଁ ବୁଡ଼୍‌ବକ୍

ଢଳକୁ ଭାଲ କରି ଥିଏ । ଏ ଦୁର୍ଗୁଣ ପାଇଁ ମୁଁ ମଧ୍ୟ ପଛରେ ବହୁତ ଅପଦସ୍ଥ ହୋଇଛୁ । ମାତ୍ର କିଏ ଭଲ କାହା ଗୁଣ ବା ଦୁର୍ଗୁଣ ଏତେ ଚଞ୍ଚଳ ଗ୍ରହଣ କରିଥାନ୍ତି—ସେ ନିନ୍ଦୁକ ହେଉ ବା ପ୍ରଶଂସକ ହେଉ ।

ରୂପବତୀ ଓ ଗୁଣବତୀ ରମଣୀମାନଙ୍କ ଭିତରେ ପାର୍ଥକ୍ୟ ହେଉଛି, ଆପଣ ଜଣେ ଗୁଣବତୀଙ୍କୁ ପ୍ରଶଂସା କଲେ ସେ ଲଜ୍ଜାରେ ଆପଣଙ୍କଠାରୁ ଦୂରରେ ରହିବେ । ମାତ୍ର କୌଣସି ରୂପବତୀଙ୍କର ନଖ ମାତ୍ରକୁ ଆପଣ ଟିକିଏ ପ୍ରଶଂସା କରିଦିଅନ୍ତୁ—ଦେଖିବେ, ସେ ଆଉ ଆପଣଙ୍କର ପାଖ ନ ଛାଡ଼ନ୍ତି । ଅବଶ୍ୟ ସ୍ତ୍ରୀ ମାନେ ନୁହେଁ ଯେ ସେ ଆପଣଙ୍କୁ ପ୍ରେମ କରିବେ । ରୂପର ପ୍ରଶଂସା ହେଉଛି ରୂପସୀମାନଙ୍କ ପକ୍ଷରେ ଅଳଙ୍କାର ସଦୃଶ । ରୂପବତୀମାନେ ରୂପର ପ୍ରଶଂସକମାନଙ୍କ ପିଛୁ ଧରିଥାନ୍ତି କେବଳ ସେହି ଲୋଭରେ—ପ୍ରେମ ପାଇଁ ନୁହେଁ ।

ଯେକୌଣସି ଅନୁରକ୍ତ ସ୍ୱାମୀଙ୍କଠାରୁ ମୁଁ ଯେ ମୋ ସ୍ତ୍ରୀଙ୍କୁ କମ୍ ଭଲ ପାଏ ତା' ନୁହେଁ । ମୋ ସ୍ତ୍ରୀ ସେ କଥା ମଧ୍ୟ ଭଲଭାବେ ଜାଣନ୍ତି । ମୁଁ ଯେ ଆଉ କୌଣସି ନାରୀକୁ ଏ ଜନ୍ମରେ ଆଉ ପ୍ରେମ କରିପାରିବି ନାହିଁ ସେ କଥା ମଧ୍ୟ ମୋ ସ୍ତ୍ରୀ ନିଜ ତୁଣ୍ଡରେ ତାଙ୍କର ବନ୍ଧୁ ବାନ୍ଧବୀଙ୍କ ଆଗରେ ପ୍ରଚାର କରି ଆତ୍ମପ୍ରସାଦ ଲାଭକରନ୍ତି । କିନ୍ତୁ ଏତଦ୍‌ସତ୍ତ୍ୱେ ବି ମୁଁ କୌଣସି ଅଗନ୍ତୁକା ସୁନ୍ଦରୀଙ୍କ ରୂପର ପ୍ରଶଂସା କରିବା ମାତ୍ରେ ତାଙ୍କର ମୁଣ୍ଡ ବିଗିଡ଼ିଯାଏ । ପ୍ରକାଶ ଥାଉକି ପ୍ରଚଳିତ ଅର୍ଥରେ ମୋ ସ୍ତ୍ରୀ ସୁନ୍ଦରୀ ହେଲେ ହେଁ ବିଶେଷ ଅର୍ଥରେ ଖୁବ୍ ନଗଣ୍ୟା ।

ଆପଣ ଜାଣନ୍ତି, ଅଛନ୍ତି ଏପରି ଢେର୍ ରମଣୀ ଏ ପୃଥିବୀରେ, ଯାହାଙ୍କର କୌଣସି ପ୍ରତ୍ୟଙ୍ଗ ଅସୁନ୍ଦର ବୋଲି କହି ହେବ ନାହିଁ । ଅଥଚ ତାଙ୍କୁ ସମଗ୍ର ଭାବେ ସୁନ୍ଦରୀଅଙ୍ଗନା ରୂପେ ବିଶେଷିତ ମଧ୍ୟ କରି ହେବ ନାହିଁ—ମୁଖଟି ଚନ୍ଦ୍ର ପରି—ଗ୍ରୀବା ଶଂଖ ପରି—ବକ୍ଷୋଜଯୁଗଳ ମେରୁତୁଲ୍ୟ—କଟି ସିଂହକଟି ପରି—ଜାନୁ ଓଲଟ ରମ୍ଭାତରୁ ସଦୃଶ—ଚକ୍ଷୁ ଦୁଇଟି ହରିଣୀର ଆଖିପରି ଇତ୍ୟାଦି ଇତ୍ୟାଦି । ଅଥଚ ଏସବୁର ମିଶାଣରେ ସମଗ୍ର ଦେହଟି ଚକ୍ଷୁ ବା ଚିତ୍ତର ଆକର୍ଷକ ନ ହୋଇପାରେ ମଧ୍ୟ । ଅଥଚ

ବହୁ ରମଣୀ ଅଛନ୍ତି, ଯାହାଙ୍କର ଗୋଟିଏ ଗୋଟିଏ ଅଙ୍ଗ ବା ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ଲାଗି ସେମାନେ ପ୍ରଥମ ଶ୍ରେଣୀର ନମ୍ବର ପାଇଯାନ୍ତି । ପୁଣି ଆଉ କେତେକ ଅଛନ୍ତି, ଯାହାଙ୍କର ସବୁ ଅଙ୍ଗ ପ୍ରତ୍ୟଙ୍ଗ ପୃଥକ୍ ଭାବେ ଦେଖିଲେ ସୁନ୍ଦର ନୁହଁ—ଅଥଚ ସବୁ ମିଶିଗଲା ପରେ ସେମାନେ ସୁନ୍ଦରୀ ପଦକୁ ଉନ୍ନୀତ ହୋଇଯାନ୍ତି । କବିତାରେ ଅଭିଧା ଅପେକ୍ଷା ଅନ୍ୱିତାର୍ଥ ଭଳି ଏମାନଙ୍କର ସୌନ୍ଦର୍ଯ୍ୟ ।

ଶେଷରେ ଆଉ ଶ୍ରେଣୀଏ ସୁନ୍ଦରୀ ଅଛନ୍ତି, ଯେଉଁମାନଙ୍କର ଈଶ୍ୱର-ଦତ୍ତ ସୌନ୍ଦର୍ଯ୍ୟ-ମୂଳଧନ କିଛି ନାହିଁ । କିନ୍ତୁ ସେମାନେ ନିଜର ବିଶେଷ ରୁଚି ଓ ଚାତୁରୀ ଯୋଗୁଁ ବାହ୍ୟଦ୍ରବ୍ୟର ସଂଯୋଗ ଓ ସାହାଯ୍ୟରେ ସୁବେଶିନୀ ହୋଇ ସୌନ୍ଦର୍ଯ୍ୟ ଝଲକାନ୍ତି । ସେମାନେ ହେଲେ ସୌନ୍ଦର୍ଯ୍ୟ ଜଗତର ସାଧବାଣୀ । କେଶ ନ ଥାଇ କେଶବତୀ—ନିତମ୍ବ ନ ଥାଇ ନିତମ୍ବିନୀ—ସମୁନ୍ନତ ସ୍ତନ ଥିଲେ ବି ପୀନଉରଜା—ଭ୍ରୂ ନ ଥାଇ ଭ୍ରୂବତୀ ହୋଇ, ସେମାନେ କୁଟା ଦେହରେ ମାଟି ଓ ରଙ୍ଗରେ ନିର୍ମିତ ନର୍ତ୍ତକୀର ମୂର୍ତ୍ତିଭଳି କୃତ୍ରିମ ଦୂରରୁ ଶୋଭନ୍ୱିତା ହୋଇ ପ୍ରଲୁବ୍ଧ ଓ ଉଚାଟ କରିଥାନ୍ତି ।

ଆଉ କେତେକ ଅଛନ୍ତି, ସେମାନେ ଆକୃତିରେ ରୂପହୀନା, ମାତ୍ର କିଣ ଏମିତି କମିଆଁ ତାଙ୍କ ଭିତରେ ଲୁଚି ରହିଥାଏ ସେମାନଙ୍କୁ ସ୍ୱାଧୀନ ଭାବ ଭଲ ଲାଗେ । ତାଙ୍କ କଥାରେ, କି ଗୀତରେ, କି ଚାଲିରେ, କିମ୍ବା କୋଉଥିରେ କେଜାଣି କଣ ଗୋଟେ ତାଙ୍କଠାରୁ ବିଚ୍ଛୁରିତ ହୁଏ । କିଛି ହୁଏନି, କେବଳ ବୁଝିହୁଏ ।

କିନ୍ତୁ ଏତେ କଥା କହି ମଧ୍ୟ ସୁନ୍ଦରୀମାନଙ୍କ ବିଷୟରେ ସର୍ବମତରେ ସନ୍ମତ ହେଲାଭଳି କିଛି କଥା କହି ହେବ ନାହିଁ । ଛାଡ଼ନ୍ତୁ ତେବେ ସେ କଥା । ଏବେ ଜଣେ୍ୈକା ସୁନ୍ଦରୀଙ୍କ ବିଷୟରେ ସମ୍ବାଦଟିଏ ଶୁଣନ୍ତୁ ।

ମୁଁ ସେତେବେଳେ ଥାଏ ଗୋଟିଏ କ୍ଷୁଦ୍ର ସହରରେ । ମୋର ପଡ଼ୋଶୀ-ଭାବେ ରହୁଥିଲେ ଜଣେ ପୋଲିସ୍ ସର୍ଜେଣ୍ଟ । ପ୍ରାୟ ମୋର ସମବୟସ୍କ । ଦୂରରୁ ଦେଖିଲେ ଭଦ୍ରଲୋକ ବଡ଼ ଅମାୟିକ ଓ ସୁରୁଚିବାନ୍ । ଘରଦ୍ୱାର

ଖୁବ୍ ଫିଟ୍‌ଫାଟ୍, ପରିଚ୍ଛନ୍ନ । ଘର ଆଗରେ ଗୋଟିଏ ସୁନ୍ଦର ବଗିଚା । କିନ୍ତୁ କ୍ରମେ ମୋର ମନେହେଲା ସର୍ବେଶ୍ବରବାବୁ ବିଶେଷ ମେଳାପୀ ନୁହନ୍ତି ଏବଂ ପ୍ରାୟଶଃ ଘରପଶା । ଥରେ ଦୁଇଥର ଭେଟ ମଧ୍ୟ ହେଲା ତାଙ୍କ ସଙ୍ଗେ । ମାତ୍ର କ୍ରମେ ବୁଝିଲି, ଯେଉଁ ସବୁ ଗୁଣ ଜଣେ ପୁରୁଷର ଥିଲେ ସେ ଆଉ ଗୋଟିଏ ପୁରୁଷର ବନ୍ଧୁତ୍ୱ ପାଇଁ ଉପଯୁକ୍ତ ହେବ, ସେସବୁ ତାଙ୍କଠାରେ ନାହିଁ । ସେ ରାଜନୀତିକୁ ମନେକରନ୍ତି ସୈତାନମାନଙ୍କର ଶେଷ ଆଶ୍ରୟ, ସାହିତ୍ୟକୁ ଭାବନ୍ତି ନିକମା ଲୋକଙ୍କର ଗାଲବାଜି ଏବଂ ଧର୍ମ ବା ଦର୍ଶନାଦି ବ୍ୟାପାରରେ ସେ ଖୁବ୍ ଉଦାସୀନ । ସେ ଏପରି ଅସାମାଜିକ ଯେ ସେହି କ୍ଷୁଦ୍ର ସହରଟିରେ ଘଟୁଥିବା କୌଣସି ସାନବଡ଼ ଘଟଣା ସଂପର୍କରେ ବି ସେ ଅଜ୍ଞ ଓ ଅସମ୍ପୃକ୍ତ । ଏଭଳି ଅସମ୍ପୃକ୍ତ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି ।

ଏତେ ସୁସ୍ଥ ସବଳ ସୁନ୍ଦର ପୁରୁଷଟିର ଏପରି ଶୋଚନୀୟ ଧରଣର କିପରି ଓ କାହିଁକି ହେଲା ଏ ସମ୍ବନ୍ଧେ ମୁଁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଥିଲି । ମାତ୍ର କ୍ରମେ ସବୁକଥା ମୋ ଆଗରେ ସ୍ପଷ୍ଟ ହୋଇଉଠିଲା, ଯେଉଁଦିନ ଶ୍ରୀମତୀ ଚୌଧୁରୀ ଆମ ଘରକୁ ବୁଲିଆସିଲେ । ମୁଁ ସେତେବେଳେ ମୋ ପଢ଼ାଘରେ ସୁନ୍ଦରୀ ନାରୀମାନଙ୍କ ସଂପର୍କରେ ଗୋଟିଏ ରମ୍ୟରଚନା ଲେଖୁଥିଲି, ଯାହାର କି ପ୍ରଥମ ଅଂଶଟି ଏହି ଗଳ୍ପର ଭୂମିକା ରୂପେ ବ୍ୟବହୃତ ହୋଇଛି । ହଠାତ୍ ମୋର କୋଠରୀଟି ଏକ ମୃଦୁ ମଧୁର ସୌରଭ ଓ ସୌନ୍ଦର୍ଯ୍ୟାଲୋକରେ ଝଲସିଗଲା । ମୁଁ ଚମକିପଡ଼ି ଚାହିଁ ଦେଖେ ତ ଜଣେ ଅନିନ୍ଦ୍ୟସୁନ୍ଦରୀ ଆକାଶରେ ଖସିପଡ଼ିଲା ଢଙ୍ଗରେ ଠିଆ ହୋଇଛନ୍ତି । ମୁଁ ଉଠି ଠିଆ ହେଲି । କୌଣସି ରମଣୀ ମୋର ନୟନପଥାରୂଢ଼ ହେଲାମାତ୍ରେ ମୋର ଗ୍ରହାଣୀରେ ଗୋଟିଏ ବଳେଇ ରମଣୀପ୍ରୀତି ଫୁଟିଉଠେ ଏବଂ ସେଇ ସୂତ୍ରକୁ ଅବଲମ୍ବନ କରି ସେମାନେ ମୋ ଭିତରକୁ ସ୍ୱଚ୍ଛନ୍ଦରେ ପ୍ରବେଶ କରିଯାନ୍ତି ଏବଂ ମୋତେ ବଶୀଭୂତ କରି ରଖନ୍ତି । ଭଦ୍ରମହିଳା ସଙ୍ଗେ ସଙ୍ଗେ ନମସ୍କାର କରି କହିଲେ—

—ମୁଁ ଶ୍ରୀମତୀ ଚୌଧୁରୀ—ଆପଣଙ୍କର ପାଖ ପଡ଼ୋଶୀ !

ମୁଁ ବିନୀତଭାବେ ଉତ୍ତର ଦେଲି—ମୁଁ ଆପଣଙ୍କୁ ଜାଣେ ।

କେମିତି ?

—ସୁନ୍ଦରୀମାନଙ୍କୁ ଜାଣିବାରେ ବିଶେଷ ଆୟାସ କରିବାକୁ ପଡ଼େନାହିଁ ।

ଏତିକରେ ଶ୍ରୀମତୀ ଚୌଧୁରୀଙ୍କ ଅଖିର ଗୃହାଣୀ ବନ୍ଧୁଳିତ ହୋଇ-ଯିବିଲା । ମୁଁ କୃତକୃତ୍ୟ ଢଙ୍ଗରେ ତାଙ୍କୁ ଆସନ ଗ୍ରହଣ କରିବାପାଇଁ ଅନୁରୋଧ କଲି ଓ ମୋର ସ୍ତ୍ରୀଙ୍କୁ ଡ଼ାକିଲି । ସାଙ୍ଗେ ସାଙ୍ଗେ ମୋର ଆଶଙ୍କା ମଧ୍ୟ ହେଲା ଯେ, ମୋର ସ୍ତ୍ରୀଙ୍କର କଳାପଡ଼ିଯିବା ବେଳ ଅସିଗଲା । ବର୍ତ୍ତମାନ ମୁଁ ନିରୁପାୟ ଭାବେ ଏହି ସୁନ୍ଦରୀଙ୍କର ପ୍ରଶଂସା କରିପକାଇବି କଥା-ବାର୍ତ୍ତା ମଝିରେ ଓ ତା ଫଳରେ ମୋ ସ୍ତ୍ରୀ ମଧ୍ୟ ଅଗ୍ରନିକ ନିରୁପାୟ ଭାବେ ଆପଣା ଈର୍ଷାର ନିର୍ଝରେ ଜଳି ଯିବେ ଓ କଳାକାଠ ପଡ଼ିଯିବେ । କିନ୍ତୁ ଆଉ କିଛି ଉପାୟ ନାହିଁ । ଦୁର୍ଭାଗ୍ୟ ଯେତେବେଳେ ଆସେ ତାକୁ ରୋକିବା ଅସମ୍ଭବ ।

ଏଠି କହିରଖେ—ପ୍ରାୟ ସବୁ ସୁନ୍ଦରୀଙ୍କର ଗୋଟାଏ ବଦ୍ଧମୂଳ ଧାରଣା ରହିଛି ଯେ, କୌଣସି କବି ବା ଲେଖକ ତାର ନିଜ ସ୍ତ୍ରୀକୁ ବିଶେଷ ଭଲ ପାଏ ନାହିଁ—ଅନାଦର କରେ ଓ ତାର କାବ୍ୟର ପ୍ରେରଣା ଲାଗି ସୁନ୍ଦରୀ ନାରୀମାନଙ୍କର ସ୍ୱପ୍ନ ଦେଖୁଥାଏ ଓ ଅନ୍ୱେଷଣ କରୁଥାଏ । ବହୁ ସୁନ୍ଦରୀ ମୋ ସଙ୍ଗେ ଓ ମୋ ସ୍ତ୍ରୀଙ୍କ ସଙ୍ଗେ ବ୍ୟବହାରରେ ମଧ୍ୟ ଆପଣାର ଏ ସନ୍ଦେହମାନ ପ୍ରକାଶ କରିଛନ୍ତି । ଜଣେ ସୁନ୍ଦରୀ ରମଣୀ ଥରେ ମୋ ସ୍ତ୍ରୀଙ୍କ ପିଠିରେ ହାତ ବୁଲାଇ, ଆଖିରୁ ଲୁହ ଢ଼ାଳି ତାଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ-ପୂର୍ବକ ମୋତେ ମଧ୍ୟ କିଂଚିତ୍ ମୃଦୁ ମଧୁର ଭର୍ତ୍ସନା କରି କହିଥିଲେ—ଆପଣଙ୍କ ସ୍ତ୍ରୀ ଆମ୍ଭମାନଙ୍କ ଭଳି ସୁନ୍ଦରୀ ନ ହୋଇ ପାରନ୍ତି, କିନ୍ତୁ ସେ ଜଣେ ଦେବୀ । ଆପଣଙ୍କର ତାଙ୍କ ପ୍ରତି ଏଭଳି ଅବହେଳା ଅସୁନ୍ଦର, କବିଜନସୁଲଭ ନୁହେଁ ।

ଅଧିକାଂଶ ସୁନ୍ଦରୀ ଆପଣାର ସୌନ୍ଦର୍ଯ୍ୟ ଉପରେ ଏତେ ଅହମିକାଗ୍ରସ୍ତ ଓ ଅନ୍ଧ ଏବଂ ମୂଢ଼ ଯେ ସେମାନେ କେବଳ ଆପଣାର ନଖ, ମୁଖ ଓ କେଶ ଦେଖିବା ବ୍ୟତୀତ ବାହ୍ୟଜଗତର ଆଉ କିଛି ମାତ୍ର ତାଙ୍କ ଆଖିରେ ପଡ଼ିବାର

ଉପାୟ୍ନ ନାହିଁ । କବିମାନେ ଯେ କେବଳ ଫୁଲ ବଗିଚାରେ ବୁଲନ୍ତି, ଫଳ ବଗିଚା ସାଙ୍ଗେ ତାଙ୍କର ଆଦୌ ସଂପର୍କ ନାହିଁ ଏବଂ ଫଳଗଛମାନେ ବିନା ପୁଷ୍ପରେ ଫଳ ଉତ୍ପାଦନ କରନ୍ତି—ଏମନ୍ତ କୁସଂସ୍କାରଗତ ଧାରଣା ମଧ୍ୟ ବହୁ ସୁନ୍ଦରୀଙ୍କର ଜନ୍ମଗତ ହୋଇ ରହିଥାଏ । କିନ୍ତୁ ଏଥିପାଇଁ କିଏବା ଆଉ କଣ କରିପାରିବ ? ବିଶେଷତଃ ସୁନ୍ଦରୀମାନଙ୍କ ବ୍ୟୁର୍ଣ ଯେ କ୍ରମାଗତ ଭାବେ ବାଢୁଥାଏ ସେ ଗୋଟାଏ ପଶୁ ।

ମୋ ସ୍ତ୍ରୀ ଆସିବାମାତ୍ରେ ସୌଜନ୍ୟ ବିନିମୟାନ୍ତେ ପୂର୍ବ ଅଭ୍ୟାସ ଅନୁଯାୟୀ ସେ ତାଙ୍କୁ ଭିତରକୁ ଡ଼ାକିଲେ । ମାତ୍ର ଶ୍ରୀମତୀ ବୈଧୂରୀ ମୋର ପାଖରେ ବସିଲେ । ମୁଁ ଭାବିଲି; ଆଉ ଡେରି କରିବା ଅନୁଚିତ । ଏଣୁ ଚେଣୁ ପାଞ୍ଚ କଥା ପଡ଼ିଲି—ବଜାରରେ ପ୍ରସାଧନ ସାମଗ୍ରୀ କ୍ରମଶଃ ମହର୍ଗ ହେବା କଥା—ନକଲି ଜିନିଷ ମିଳିବା କଥା—ବିଶ୍ୱସୁନ୍ଦରୀ ପ୍ରତିଯୋଗିତା କଥା—ନସ୍ତଧମିଲ୍ଲ (ନୂଆ କେଶସଜ୍ଜା ରୀତି) ପ୍ରସଙ୍ଗରୁ କିଛି—ପୁଣି ଏ ସହରରେ ସୁରୁଚିବାନ୍ ପୁରୁଷ ଓ ନାରୀମାନଙ୍କର ଅଭାବ କଥା, ଇତ୍ୟାଦି ଇତ୍ୟାଦି ।

ମେ କହିଚାଲିଥାନ୍ତି ଏବଂ ମୋର ଆଖିକୁ ଖୁବ୍ ଚତୁରତାର ସହିତ ଲକ୍ଷ୍ୟ କରୁଥାନ୍ତି । କ୍ରମେ ସେ ନିଜ ବକ୍ତବ୍ୟରେ ଖୁବ୍ ନିଶ୍ଚିନ୍ତ ହୋଇଉଠିଲେ । ମୁଁ ବି ସେ କଥା ମୋର ସହଜାତ ବୁଦ୍ଧିରେ ଧରିନେଲି । ମୋ ସ୍ତ୍ରୀ ଚାହା ବରାଦ କରିବାକୁ ଘର ଭିତରକୁ ଗଲେ । ମୁଁ ଇତ୍ୟବସରରେ ତାଙ୍କର ଅଙ୍ଗୁଳିଗୁଡ଼ିକୁ ମୋର ନରମ ଚାହାଣୀଦ୍ୱାରା ଆଉଁସି ଲାଗିଲି । ଏତେ ସୁନ୍ଦର ଲମ୍ବା, ସୂକ୍ଷ୍ମ ଓ କୋମଳ ଅଙ୍ଗୁଳିଗୁଡ଼ିଏ ମୁଁ ଅନେକ ଦିନୁଁ ଦେଖି ନ ଥିଲି ।

ମୋର ଦୃଷ୍ଟିର ଗତି ଓ ଲକ୍ଷ୍ୟ ବୁଝିପାରି ଶ୍ରୀମତୀ ବୈଧୂରୀ କଥା କହିଲା ବେଳେ ତାଙ୍କ ଅଙ୍ଗୁଳିଗୁଡ଼ିକରେ ବିଭିନ୍ନ ମୁଦ୍ରା ଦେଖାଇଚାଲିଲେ । କେତେବେଳେ କୋରକିତ ପଦ୍ମପତ୍ର, କେତେବେଳେ ବା ଗଣ୍ଡବଣା ଏଣୀଟିର ଚକିତ ଭାବ, କେତେବେଳେ ପକ୍ଷୀଟିଏ ଡେଣା ଝାଡ଼ି ଉଡ଼ିଗଲା ଭଳି, କେତେବେଳେ ଥରଥର ଅଶ୍ୱତ୍ଥ ପତ୍ରଟିଏ ଭଳି, କେତେବେଳେ ସୀତାର ଉପରେ ଏକ ଗଭୀର ଉଦାସ ରାଗିଣୀର ଝଂକାର ତୋଳିବା ଭଙ୍ଗୀରେ, ବା

ଆଉ କେତେବେଳେ ଗଢ଼ ପୋଷଗରେ ଏକୁଟିଆ ମୀନଟିଏ ଲସ୍ତ ହଲଇ ଦାଲ ଓ କର୍ଣ୍ଣ ପଟକୁଢ଼ିକୁ ଆଢ଼େଇ ଅଢ଼େଇ ପହଁର ଚାଲିଗଲା ଢଙ୍ଗରେ ଶ୍ରୀମତୀ ଚୌଧୁରୀ ତାଙ୍କର ସେହି ଅନନ୍ୟ ଅପରୂପ ଅଙ୍ଗୁଳିଗୁଡ଼ିକୁ ସଂଗଠନ କରୁଥାନ୍ତି ଓ ପରିଚାଳନା କରୁଥାନ୍ତି । ଆଉ ବେଶ୍ ମୁଗ୍ଧ ହୋଇ ମୁଁ ସେ ଶୋଭାକୁ ଲକ୍ଷ୍ୟ କରୁଥାଏ । ଅଙ୍ଗୁଳିଗୁଡ଼ିକ ତାଙ୍କର ସ୍ୱାଭାବିକ ଭାବେ ସୁନ୍ଦର, କିନ୍ତୁ ତା' ଅପେକ୍ଷା ପ୍ରସାଧନର ପରିପାଟୀ ଲାଗି ମଧ୍ୟ ତାଙ୍କୁ ଖୁବ୍ ତାରିଫ୍ କରିବାକୁ ହେବ । ଗୋଟିଏ ଗୋଟିଏ ନଖକୁ ତାର କୋରକିତ ଆକାରଟି ଦେବା ପାଇଁ ଭଦ୍ର ମହିଳାଙ୍କୁ ଖୁବ୍ ମନୋଯୋଗ ଓ ନିଷ୍ଠାର ସହିତ ପ୍ରୟାସ କରିବାକୁ ପଡ଼ିଥିବ ।

ମୋର ସ୍ୱଭାବ ଅନୁଯାୟୀ ମୁଁ କହିଦେଲି—ଆପଣଙ୍କ ଅଙ୍ଗୁଳିଗୁଡ଼ିକ ଅତୁଳନୀୟ ! ଚମତ୍କାର !

ବେଶ୍ ସଲଜ୍ଜ, ସସ୍ମିତ ଅଥଚ ଧୀର କଣ୍ଠରେ କହିଲେ ଶ୍ରୀମତୀ ଚୌଧୁରୀ—ହଁ, ସେତିକି ମୋର ସଂପଦ ନୁହେଁ, ବରଂ ବିପଦ ।

—ବିପଦ ? ମୁଁ ତ୍ରସ୍ତ ହୋଇ ପଚାରିଲି ।

ମୋ ମା'ର ଅଙ୍ଗୁଳି ଗୁଡ଼ିକ ମଧ୍ୟ ଥିଲା ଖୁବ୍ ସୁନ୍ଦର । ମାତ୍ର ବାପାଙ୍କ ପାଇଁ ତାକୁ ସେତିକି ହରାଇବାକୁ ପଡ଼ିଲା ।

—ମାନେ ?

—ମାନେ, ବାପା ଦିନକୁ ଶହେ ଖଣ୍ଡ ପାନ ଖାଉଥିଲେ । ଛେଚିଲା ଭଳି ସେ ପାନ ଚାହୁଁଥାନ୍ତି, ଆଉ ତାଙ୍କର ଜିଦ୍ ଯେ ମା ପାନ ଭାଙ୍ଗିବ । ପାନ ଭାଙ୍ଗିଲେ ଆଉ ଅଙ୍ଗୁଳି ରହେ ?

—ଠିକ୍ କଥା । କିନ୍ତୁ ଆପଣଙ୍କର ବିପଦ ?

—ସୌନ୍ଦର୍ଯ୍ୟର ମୂଲ୍ୟ ଭଲ ବୁଝନ୍ତି କେତେଜଣ ଆପଣଙ୍କର ଏ ସମାଜରେ, କହନ୍ତୁ ତ ?

—ତା' ଠିକ୍ । କିନ୍ତୁ ଶ୍ରୀଯୁକ୍ତ ଚୌଧୁରୀ ତ......

—ଛାଡ଼ନ୍ତୁ ତାଙ୍କ କଥା । ଗୋଟାଏ ଲୋକ ପକ୍ଷରେ ଦଶଟା ଅଙ୍ଗୁଳିର

ଘର ସମ୍ଭାଳିବା କେତେ କଷ୍ଟକର ବୁଝନ୍ତୁ ତ !

ମୁଁ ସୁନ୍ଦରୀମାନଙ୍କର ଅବଶ୍ୟପ୍ରାପ୍ୟ ବିନୟର ସହିତ ସମର୍ଥନ କରି କହିଲି—ତା' ସତ !

ତା' ଛଡ଼ା······ଆଚ୍ଛା ! ଆପଣ କୁଆଡ଼େ କବି ?

—ନାଁ, ଗାଳ୍ପିକ, ଔପନ୍ୟାସିକ !

—ହେଲା—ଏକା କଥା । ମୁଁ ଅବଶ୍ୟ ଆପଣଙ୍କର ଲେଖା କିଛି ପଢ଼ିନି କିନ୍ତୁ ଶୁଣିଛି ଆପଣଙ୍କ ବିଷୟରେ ପ୍ରଚୁର । ନାରୀ ଚରିତ୍ର ସଂପର୍କରେ ଆପଣ ପରା ଖୁବ୍···

ମୋ ସ୍ତ୍ରୀ ଆସିଯାଉଥିଲେ । ମୁଁ ନରମ ଗଳାରେ କହିଲି—ଆଜ୍ଞା ହଁ । ମୋ ଶତ୍ରୁମାନେ ମୋତେ ସେ ବଦନାମ୍ ଦେଇଥାନ୍ତି । କିନ୍ତୁ ନାରୀ ଚରିତ୍ର କଥା ଛାଡନ୍ତୁ, ନାରୀ ରୂପ ଚିତ୍ରଣ କରିବା ବି କାଠିକର ପାଠ ।

ମୋ ସ୍ତ୍ରୀ ତାଙ୍କର କିଞ୍ଚିତ ଅବନତ ନାସିକାକୁ ସାମାନ୍ୟ ଉନ୍ନତ କରି କହିଲେ—ତା' ଏବେ ଆଜକାଲି କୋଉ ଖାଣ୍ଟି ମିଳୁଛି ? କମ୍ ନକଲି ଜିନିଷ ମିଳୁଛି ଆଜକାଲି ?

ଭଦ୍ରମହିଳା ଗମ୍ଭୀର ହୋଇଗଲେ । ତା'ପରେ କହିଲେ—କିନ୍ତୁ ଆପଣଙ୍କ ସ୍ୱାମୀଙ୍କର ସୌନ୍ଦର୍ଯ୍ୟବୋଧ ଖୁବ୍ ତୀକ୍ଷ୍ଣ । ତାଙ୍କ ଆଖିକୁ ଠକିବା ଏତେ ସହଜ ନୁହେଁ । ସେ ଚଟାପଟ୍ ଅସଲ ନକଲ ଧରିନେବେ ।

ମୋ ସ୍ତ୍ରୀ କହିଲେ—କିନ୍ତୁ ସେଇ ବେଶୀ ଠକି ହୁଅନ୍ତି; ପରେ ସିନା ଯାଇ ବୁଝନ୍ତି ?

ମୁଁ ବାଧ୍ୟହୋଇ ମୋ ସ୍ତ୍ରୀଙ୍କୁ ସମର୍ଥନ କଲି—ତା ଠିକ୍ ! କିନ୍ତୁ ପ୍ରଥମେ ଠକିହୋଇ ଶେଷରେ ଠିକ୍ କଥାଟା ଜାଣିବାରେ ଗୋଟାଏ ମଜା ଅଛି—କିଛି ଗୋଟାଏ ଆବିଷ୍କାର କରିବାର ମଜା ।

ତା' ପରେ ଟିକିଏ ସୂତ୍ର ଧରି ମୁଁ ପୁଣି ପଚାରିଲି,—ହଁ, ଆପଣଙ୍କର ଏଇ ସୁନ୍ଦର ଅଙ୍ଗୁଳିଗୁଡ଼ିକ ଲାଗି ବିପଦ କଥା କଣ କହୁଥିଲେ ?

—ସେ କଥା ଆଉ କାହିଁକି ପଚାରୁଛନ୍ତି ? ଗୋଟିଏ ଗୋଟିଏ ଅଙ୍ଗୁଳି ପିନ୍ଧି ଅଡ ଜମ୍‌ରେ ଅଧଘଣ୍ଟାଏ ସମୟ ଦରକାର । ଅଥଚ ଏଗୁଡ଼ିକର ସଦ୍‌ବ୍ୟବହାର ହେଲାବେଳକୁ ସେତେ ସବୁ ବଫନ୍ଦ । ତା' ଛଡ଼ା, ଆପଣ ଖାଲି ଆଙ୍ଗୁଳିଗୁଡ଼ିକର କଥା ଭାବୁଛନ୍ତି । ଅନ୍ୟାନ୍ୟ ସବୁ—ମାନେ—ଏଇ··· ··· ···

ମୁଁ ଅଭିପ୍ରାୟ ବୁଝିପାରିଲି । ତେଣୁ କହିଲି—ହିଁ, ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ ଅବହେଳା ସହିବେ କାହିଁକି ?

ଭଦ୍ରମହିଳା ଖୁବ୍ ଖୁସୀ ହେଲେ ଏବଂ ଲକ୍ଷ୍ୟ କଲେ ଯେ, ମୁଁ ଅଙ୍ଗୁଳି ଗୁଡ଼ି ତାଙ୍କ କେଶବିନ୍ୟାସର ପରିପାଟୀକୁ ଲକ୍ଷ୍ୟ କରୁଛି ।

ତା'ପରେ ପଦେ ଦୁଇପଦ କଥା । ପାଣିପାଗ ଓ ତାର ଦୈହିକ ସୌନ୍ଦର୍ଯ୍ୟ ଉପରେ ପ୍ରଭାବ, ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଶୋଧର ଉପାୟମାନଙ୍କ ଉପରେ କିଛି ଆଲୋଚନା କରିସାରି ସେ ଉଠିଲେ ଏବଂ ଆଉଥରେ ଆସି ମୋଠାରୁ ପ୍ରଶଂସା ଶୁଣିବାର ପ୍ରତିଶ୍ରୁତି ଆଦାୟ କରି ସେ ବିଦାୟ ନେଲେ । ତା'ପରେ ସ୍ୱାଭାବିକ ଭାବେ ମୋ ସ୍ତ୍ରୀଙ୍କ ଦେହର ସ୍ୱାଭାବିକ ରଙ୍ଗ ପୁଣି ଫେରି ଆସିଲା—ସୂର୍ଯ୍ୟ ଅସ୍ତ ଗଲେ ଚନ୍ଦ୍ରର ରଙ୍ଗ ଫେରିଆସିଲାପରି ।

× × ×

ତାଙ୍କ ଘର ଓ ମୋ ଘର ମଧ୍ୟରେ ବ୍ୟବଧାନ ଶହେ ଫୁଟ ଖଣ୍ଡେ ହେବ । ମୋ ଶୋଇବା ଘରର ଝରକା ବାଟେ ଚାହିଁଲେ ତାଙ୍କ ଶୋଇବା ଘରର ଝରକା ଦିଶେ । ଅନ୍ଧାର ଭିତରେ ବିଜୁଳି ଲତାଟିଏ ଭଳି ସେ ଲଟେଇଥାନ୍ତି ବେଳେ ବେଳେ ରେଲିଂ ଧରି ଝରକା ଉପରେ ।

କିନ୍ତୁ ସେ ସମ୍ବନ୍ଧେ ମୁଁ କିଛି କହିବାକୁ ଯାଉନାହିଁ । ଏବେ କିଛି ଦିନ ଧରି ମୁଁ ଗୋଟିଏ ବିଷୟ ଲକ୍ଷ୍ୟ କଲି । ଶ୍ରୀ ଚୌଧୁରୀଙ୍କ ଘର ଭିତରେ ବେଳେବେଳେ ଅସ୍ୱାଭାବିକ ପାଟିତୁଣ୍ଡ ଶୁଭେ । କିନ୍ତୁ ସେ ପାଟିତୁଣ୍ଡ ଆରମ୍ଭ

ହେଉ ହେଉ ହଠାତ୍ ତାଙ୍କ ରେଡ଼ିଓରେ ଗୋଟିଏ ବିଦେଶୀ ଷ୍ଟେସନ ଖୁବ୍ ଉଚ୍ଚ ସ୍ୱରରେ ମୁଖରିତ ଓ ଧ୍ୱନିତ ହୋଇଉଠେ । ତେଣୁ ପାର୍ଟିଗୁଣ୍ଡରେ କାରଣ କିଛି ଧରିହୁଏ ନାହିଁ । କିନ୍ତୁ ଯାହା ମନେହୁଏ କିଛି ଗୋଟାଏ ଅଘଟଣ ଘଟୁଛି ସେ ଘରେ । ଏପରିକି ରେଡ଼ିଓର ଚିତ୍କାରକୁ ଭେଦକରି ଅଦ୍ଭୁତ ଧୁମ୍ ଧାମ୍ କରି ସବୁ କାନରେ ପଡ଼ିଯାଏ । ମନେହୁଏ କେହି ଚିତ୍କାର କରୁଛି, କିଏ ପ୍ରତ୍ୟୁତ୍ତର ଦେଉଛି, ସାନ ପିଲମାନେ କାନ୍ଦି ଉଠୁଛନ୍ତି । ପୁଣି ସେ ସବୁକୁ ଅତିକ୍ରମ କରି ତାଙ୍କର ସେହି ପୋଷା ସ୍ପାନିଏଲ୍ କୁକୁରଟା ଚିହିଁକରି ଭିଲ ଭୁକି ଉଠୁଛି । ଏଇମିତି ଅନେକ ଥର ଘଟେ ।

ପ୍ରଥମେ ପ୍ରଥମେ ଆମେ ସେ ଆଡ଼କୁ କାନେଇଥିଲେ ବି ସେ ରହସ୍ୟର କିଛି ଖିଅ ପାଇ ପାରୁ ନଥିଲୁ । ଏଣେ ପୁଣି ଶ୍ରୀମତୀ ଚୌଧୁରୀ ମଧ୍ୟ ପୂର୍ବବତ୍ ମୋଠାରୁ ତାଙ୍କ ରୂପର ପ୍ରଶଂସା ଶୁଣିବାକୁ ମୋ ଘରକୁ ବେଶ୍ ସ୍ୱାଭାବିକ ଅନ୍ତରରେ ଆସୁଥିଲେ ନିୟମିତ । ତାଙ୍କ ଚେହେରା ବା ଭାବଭଙ୍ଗୀରେ କୌଣସି ବିପର୍ଯ୍ୟସ୍ତ ଭାବ ଲକ୍ଷ୍ୟ କରି ହେଉ ନଥିଲା । ସେ ସେହିଭଳି ଦିନକୁ ଦିନ ଜକ୍ ଜକ୍ ଉଜ୍ଜ୍ୱଳ ଦିଶୁଥିଲେ ଏବଂ ମୋ ସ୍ତ୍ରୀ ତାଙ୍କୁ ଦେଖି ଦିନକୁ ଦିନ କଳା ପଡ଼ି ଯାଉଥିଲେ ।

ସେ ଦିନ ଶନିବାର, ରାତି ପ୍ରାୟ ୧୨ଟା ହେବ । ତାଙ୍କ ଘର ଭିତରୁ ପୁଣି ସେହି ବୀଭତ୍ସ କୋଳାହଳ ଆମ କାନରେ ପଡ଼ିଲା । ପାର୍ଟିଗୁଣ୍ଡ, କଳି କଜିଆ, ପିଲଙ୍କ ବିକଳ ଓ ଗୁନିଆ କାନ୍ଦଣା, ରେଡ଼ିଓର ବିଦେଶୀ ଷ୍ଟେସନଟିର ଉଚ୍ଚକିତ ହୋଇହୁଙ୍କା ଏବଂ ସେ ସବୁ ଦେଖି ଶୁଣି ଭୟ ବିବ୍ରତ ଓ କ୍ରୁଦ୍ଧ ହୋଇ ସ୍ପାନିଏଲ୍ କୁକୁରଟିର ଭୋ ଭୋ ରଡ଼ି । କଣ ହୋଇପାରେ ? ମୁଁ ଟିକିଏ ବିବ୍ରତ ହୋଇପଡ଼ିଲି ମଧ୍ୟ । ମୋ ସ୍ତ୍ରୀଙ୍କୁ ପଚାରିଲି—କଣ ହୋଇପାରେ ?

ସେ କହିଲେ—ତୁମ ସୁନ୍ଦରୀଙ୍କ ମୁଣ୍ଡକୁ ପିତ୍ତ ଉଠିଛି ।

—କେଉଁ କାରଣରୁ ?

—କାରଣ କିଏ ଜାଣେ ? କିନ୍ତୁ ଶ୍ରୀମତୀ ପାଣିଗ୍ରାହୀ କହୁଥିଲେ, ତାଙ୍କ

ମୁଣ୍ଡକୁ ସପ୍ତାହକେ ଥରେ ଅନ୍ତତଃ ଏମିତ ପିତ୍ତ ଉଠେ । ସ୍ୱାମୀ ସ୍ତ୍ରୀ ଅଣ୍ଟୁଡ଼ା କାମୁଡ଼ା ହୁଅନ୍ତି ।

ମୁଁ କହିଲି—ଶ୍ରୀମତୀ ପାଣିଗ୍ରାହୀ ତାଙ୍କୁ ଈର୍ଷା କରନ୍ତି—ମୁଁ ଜାଣେ ।

—କାହିଁକି ? ଶ୍ରୀମତୀ ପାଣିଗ୍ରାହୀ ନିଜେ କଣ ଅସୁନ୍ଦରୀ କି ?

—ନାଁ, କିନ୍ତୁ ସୁନ୍ଦରୀମାନଙ୍କ ଭିତରେଇ ଈର୍ଷାଟା ବେଶୀ ତୀବ୍ର, ବେଶୀ ହିଂସ୍ର । ଜଣେ ସୁନ୍ଦରୀ ଆଉ ଜଣେ ସୁନ୍ଦରୀଙ୍କ ଆଙ୍ଗୁଠିକୁ କାମୁଡ଼ିଦେବାର ଉଦାହରଣ ମୁଁ ନିଜେ ଦେଖିଛି ।

ମୋ ସ୍ତ୍ରୀ ଟିକିଏ ଉତ୍ସାହିତ ହେଲେ ଏବଂ କପଟ ଛଳ ପ୍ରକାଶ ପୂର୍ବକ ପଚାରିଲେ—ତା' ହେଲେ ମୁଁ ଈର୍ଷା କରେ ବୋଲି କେମିତି କୁହ ?

ମୁଁ କହିଲି—ଦେଖ, ତୁମ କଥା ଅଲଗା । ତୁମର କୌଣସି ସୁନ୍ଦରୀ-ପ୍ରତି ସ୍ୱାଭାବିକ ଈର୍ଷା ନାହିଁ, ମୁଁ ଜାଣେ । ମାତ୍ର ସୁନ୍ଦରୀଟିଏ ଦେଖିଲି ମାତ୍ରେ ବା ମୁଁ ତାର ପ୍ରଶଂସା ଆରମ୍ଭ କରିଦେଲି ମାତ୍ରେ, ତୁମେ କଳା ପଡ଼ିଯାଅ । ଏହା ତୁମର ଭୟ ଏବଂ ଆତ୍ମରକ୍ଷା ପ୍ରବୃତ୍ତିର ଏକ ସରଳ ପ୍ରକାଶ ମାତ୍ର । ଏହା କେତେକାଂଶରେ ଜାନ୍ତବ ମଧ୍ୟ । ମାତ୍ର ସୁନ୍ଦରୀମାନେ ସମ୍ପୂର୍ଣ୍ଣ ମାନବୀୟ ଢଙ୍ଗରେ ସଚେତନ ଭାବରେ ପରସ୍ପରକୁ ଈର୍ଷା କରନ୍ତି—ହିଂସା କରନ୍ତି । ସେମାନେ କେହି କାହା ଆଗରେ ମଳିନ ପଡ଼ିଯାନ୍ତି ନାହିଁ । ବରଂ ବହୁ ସୁନ୍ଦରୀ ଏକତ୍ର ହେଲେ ପରସ୍ପରର ସୌନ୍ଦର୍ଯ୍ୟ ଭିତରେ ଯେଉଁ ସଂଘର୍ଷ ହୁଏ ସେଥିରେ ପ୍ରତ୍ୟେକେ ଆପଣାର ରୂପରାଗ ଓ ତେଜରେ ଜଳି-ଉଠନ୍ତି । ବୀର ପୁରୁଷମାନେ ଏକତ୍ର ହେଲେ ପରସ୍ପର ପ୍ରତି ଈର୍ଷା ଭାବ ଯୋଗୁଁ ଆପଣାର ବୀରତ୍ୱ-ଭାବ ଯେମିତି ବେଶି ପ୍ରକାଶିତ ହୋଇପଡ଼େ, ପଣ୍ଡିତମାନେ ଏକତ୍ର ହେଲେ ଯେମିତି ପ୍ରତ୍ୟେକର ପାଣ୍ଡିତ୍ୟ ସ୍ୱତଃ ପ୍ରକଟିତ ହୋଇପଡ଼େ—ଏ ଜାଣ ସେମିତି । ତୁମେ କିନ୍ତୁ ସୁନ୍ଦରୀମାନଙ୍କ ଆଗରେ ଅସହାୟ ଭାବେ କଳା ପଡ଼ିଯାଅ ।

ସ୍ତ୍ରୀଙ୍କ ମୁହଁ ରାଗ ଓ ଅଭିମାନରେ ଫାଟି ପଡ଼ିଲା—ତୁମ ଆଖିରେ ମୋର ସବୁ ଖରାପ । ତୁମ ତୁଣ୍ଡରୁ ମୁଁ ପ୍ରଶଂସା ଶୁଣିନି ।

ସ୍ତ୍ରୀଙ୍କର କିଂଚିତ୍ ଅବନତ ନାସିକାକୁ ମୋର ଦୁଇ ଅଙ୍ଗୁଳିର ଟିପାଗ୍ରରେ ଚିମୁଟି ଦେଇ ତାକୁ କିଂଚିତ ଉନ୍ନତ କରିବା ଅଭିପ୍ରାୟରେ ବାରମ୍ବାର ଆକର୍ଷଣ କରିତଃ ପ୍ରେମାପ୍ଳୁତ କଣ୍ଠରେ କହିଲି—ଦେଖ ସଖୀ ! ଆପଣା ମହତ ଆପେ ରଖି । ତୁମ ସ୍ୱାମୀ ଖରାପ । ତୁମେ ପ୍ରଶଂସା ସମୁଦ୍ରରେ ଘର ବାନ୍ଧିଛ । ତୁମର ଶୋଷ ମେଣ୍ଟିବ କାହିଁ ?

ପାଠକେ, ଆମର ଦାଂପତ୍ୟ ଲୀଳା ବର୍ଣ୍ଣନା କରି ଲାଭ ନାହିଁ । ମୋ ଭଳି ଲେଖକମାନଙ୍କର ସ୍ୱକୀୟ ଦାଂପତ୍ୟ ଲୀଳା ବର୍ଣ୍ଣନା ମଧ୍ୟ ଶାରଦୀୟ ରସ-ବିଳାସ-ଚମତ୍କାର ହେବନାହିଁ । ଅତଃପର ଶ୍ରୀମତୀ ଚୌଧୁରୀଙ୍କ ବୃତ୍ତାନ୍ତ ଶ୍ରବଣ କରନ୍ତୁ, କିଂ ଅଭିବନ୍ତୁ ?

ଶନିବାର ରାତିର ଘଟଣା ସମ୍ବନ୍ଧେ କିଂଚିତ୍ ଆଭାସ ପାଇବା ଲୋଭରେ ମୁଁ ନିଜେ ଶ୍ରୀମତୀ ଚୌଧୁରୀଙ୍କ ଘରକୁ ରବିବାର ଦିନ ଗଲି । ଫାଟକ ଖୋଲି ନଗିବ୍ ଭିତରକୁ ପଶିଲି ମାତ୍ରେଇ ଶ୍ରୀଯୁକ୍ତ ଚୌଧୁରୀ ପୋଷାକ ପତ୍ର ପିନ୍ଧି ପନ୍ଦ୍ରୁ ପଦାକୁ ବାହାରିଆସିଲେ । ନମସ୍କାର ଆଦାନ ପ୍ରଦାନାନ୍ତେ ସେ ମତେ ଘର ଭିତରକୁ ସ୍ୱାଗତ କଲେ । କିନ୍ତୁ ଏ କଣ ? ତାଙ୍କ ମୁହଁ, ବେକ ଓ ହାତଯାକ ଏସବୁ କି ଦାଗ ? ଏ ରକ୍ତାକ୍ତ ଦାଗଗୁଡ଼ିକ ଦେଖିଲେ ମନେ-ହେବ—ସତେକି କାଲି ରାତିରେ ବଣ ଭିତରେ ଭାଲୁ ରାଂପୁଡ଼ି ଦେଇଛି ।

ମୁଁ ପଚାରିଲି—ଏ ସବୁ କି ଦାଗ ଚୌଧୁରୀ ସାହେବ ?

ସେ ନେଶ୍ ସଂହତ ଓ ଗମ୍ଭୀର ଗଳାରେ କହିଲେ—ମୋ ଘରେ ଯେଉଁ ମାଇ କୁକୁରଟା ଅଛି ଦେଖିଥିବେ...

—ହଁ, ହଁ, ଖୁବ୍ ସୁନ୍ଦର ସ୍ପାନିଏଲଟା...

—ହଁ ସୁନ୍ଦର ! କିନ୍ତୁ ସେ ଯେତେବେଳେ ମାତେ ନା ! କାଲି ରାତିରେ ସେଇ ଏମିତି ଆଂପୁଡ଼ି ଦେଇଛି ମୋ ଦେହସାରା ।

—କଣ ତା' ସଙ୍ଗେ ଖେଳ ଖେଳୁ ଖେଳୁ ?

—ନଖୀ, ଦନ୍ତୀ ଓ ଶୃଙ୍ଗୀ—ସେମାନଙ୍କର ଖେଳର ପ୍ରତକ୍ରିୟା ଯାହା—କ୍ରୋଧର ପ୍ରତକ୍ରିୟା ବି ସେଇଆ । ଶେଷରେ ଆଂପୁଡ଼ା ବା କାମୁଡ଼ାଇ ଲଭ ।

—ତା' ନଖଗୁଡ଼ାକ କାଟିଦେଲେ ତ ହୁଅନ୍ତା !

—ହଁ ! ଆଚ୍ଛା, ଆପଣ ଭିତରକୁ ଯାନ୍ତୁ । ଶ୍ରୀମତୀ ଚୌଧୁରୀ ଅଛନ୍ତି । ଖୁବ୍ ଖୁସୀ ହେବେ । ମୁଁ ଗୋଟାଏ ଜରୁରୀ କାର୍ଯ୍ୟରେ ଏଇ ବର୍ତ୍ତମାନ ବାହାରିଯାଉଛି ।

ସେ ବାହାରିଗଲେ । ମୁଁ ଘର ଭିତରକୁ ପଶିଲି । ବେଶ୍ ସୁସଜ୍ଜିତ ଓ ସୁବାସିତ ଡ୍ରଇଁରୁମ୍ । ପୂଜାର ଆଗ ସ୍ପୃହା ଦେଇଗଲା । ମୁଁ ସ୍ୱ କପ୍ରୁ ଉନ ସ୍ୱର ଢୋକ ନେଇଛି କ ନାହିଁ ଶ୍ରୀମତୀ ଚୌଧୁରୀ ଆସି ପହଁଚିଗଲେ । ମୋତେ ଦେଖି ଆନନ୍ଦରେ ଲୋଟି ପଡ଼ିଲେ ପ୍ରାୟ । ତାଙ୍କ ଚେହେରା ଦେଖି ମନେହେଲା ଏଇମାତ୍ର ପ୍ରସାଧନ ସାରି ଉଠିଛନ୍ତି । ମୋଭଳି ଗୋଟାଏ କାଞ୍ଚନଶୂନ୍ୟ ପ୍ରଗଲ୍ଭ ରୂପପ୍ରଶଂସକକୁ ଆପଣା କୁଞ୍ଜରେ ଅଯାଚିତ ଭାବେ ପାଇଲେ କୋଉ ସୁନ୍ଦରୀଶିରୋମଣି କୋଟିନିଧି ପାଇଲା ଭଳି ନାଚି ନ ଉଠିବେ ? ଶ୍ରୀମତୀ ଚୌଧୁରୀ ପ୍ରାୟ ନାଚଉଠୁଥିଲେ ।

—କବି ଲେଖକମାନେ ବଡ଼ ଗର୍ବୀ ? ନା ?

—କପରି ଜାଣିଲେ ?

—ଆପଣଙ୍କ ପାଖକୁ ସାତଥର ଗଲା ପରେ ଆପଣ ଏଇ ଆଜି ଆସିଲେ ମୋ ଘରକୁ । ଅଥଚ ପନ୍ଦର ଫୁଟ ବ୍ୟବଧାନ ଆମ ଭିତରେ ।

ମୁଁ ହସି ହସି କହିଲି—ଆମ ଭିତରେ କେତେ ବ୍ୟବଧାନ ମୁଁ କେବେ ମାପିନାହିଁ । କିନ୍ତୁ ବ୍ୟବଧାନ ଏସବୁ ବ୍ୟାପାରରେ କେବେ କୋଉଠି ଅନ୍ତରାୟ ହୋଇନାହିଁ । ବରଂ ଯାଦୁଖେଳ ଲାଗି କଥିତ ବ୍ୟବଧାନ ବେଶ୍ ଅନୁକୂଳ ।

ଶ୍ରୀମତୀ ଚୌଧୁରୀଙ୍କ ଆଖି ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା । ତା'ପରେ ନାନାଦି କଥାବାର୍ତ୍ତା । ତାଙ୍କର ସମସ୍ତ ଅଙ୍ଗ ତତ୍ପର ହୋଇ ଉଠୁଥାନ୍ତି । ନାରୀର ରୂପ ବଡ଼ ବିଚିତ୍ର । ତାହା ସ୍ଥିରତାରେ ଯେମିତି ଆକର୍ଷଣ କରେ, ତତ୍ପରତାରେ ତତ୍ତୁ ବଳ ଉଚ୍ଚାଟ କରେ ।

ଶ୍ରୀମତୀ ଚୌଧୁରୀ କହିଲେ କଥା ମଝିରେ—କିଛି ମନେକରିବେ ନାହିଁ ଆଜ୍ଞା ! ଆପଣଙ୍କ ସ୍ତ୍ରୀ ଏମିତି ଦିନକୁ ଦିନ କଳା ପଡ଼ିଯାଉଛନ୍ତି କାହିଁକି ? ମୁଁ ତାଙ୍କୁ ଯେତେବେଳେ ଦେଖେ—ଏକବାର କଳାକାଠ ! କିନ୍ତୁ ମୋର ତ ମନେ ହୁଏ ଭଦ୍ରମହିଳା ସେତେଟା ଅସୁନ୍ଦରୀ ନୁହନ୍ତି । ଅବଶ୍ୟ ନିଜର ରୂପ ବା ସୌନ୍ଦର୍ଯ୍ୟର ପରିଚର୍ଯ୍ୟା ନ କଲେ···

ମୁଁ ବୁଝିଲି, ଏଣିକି ମୋର ଧର୍ମପତ୍ନୀଙ୍କର ଶ୍ରାଦ୍ଧଦିବସ ପାଳିତ ହେବ । ସୁନ୍ଦରୀମାନଙ୍କର ଏ ଗୋଟାଏ ଦୁରାରୋଗ୍ୟ ବ୍ୟାଧି । ମୁଁ ଲକ୍ଷ୍ୟ କରୁଥିଲି ଯେ, ଶ୍ରୀମତୀ ଚୌଧୁରୀ ବଡ଼ ଅସ୍ୱାଭାବିକ ଢଙ୍ଗରେ ନିଜର ଅଙ୍ଗୁଳି-ଗୁଡ଼ିକୁ ମୋଠାରୁ ଲୁଚାଇ ରଖୁଥିଲେ । ମୁଁ ସେଇ ପ୍ରସଙ୍ଗଟି ହଠାତ୍ ଉଠାଇ ବସିଲି ।

—ଏ କଣ ? ଆପଣଙ୍କର ଅଙ୍ଗୁଳିରେ ସେଇ ସୁନ୍ଦର ନଖଗୁଡ଼ିକ କୁଆଡ଼େ ଗଲା ?

ହଠାତ୍ ସୁନ୍ଦରୀଙ୍କର ମୁଖମଣ୍ଡଳର ଗୋଲାପି ଆଭା କଳା ପଡ଼ିଗଲା ! ତଥାପି ଖୁବ୍ ସ୍ଥିରତା ରକ୍ଷାକରି ସେ ତାଙ୍କ ଦୁଇ ପାପୁଲିର ଆଙ୍ଗୁଳିଗୁଡ଼ିକ ନିଜର ଚମତ୍କାର ପରିପାଟୀପୂର୍ଣ୍ଣ କେଶ ସଜ୍ଜା ଭିତରେ ମୃଦୁ ସଂଚାଳନ କରି ମୋର ଦୃଷ୍ଟି ସେଇଆଡ଼କୁ ଫେରାଇ ନେବାକୁ ପ୍ରାଣପଣେ ଚେଷ୍ଟା କରୁଥାନ୍ତି । ମାତ୍ର ମୁଁ ମଧ୍ୟ କେମିତି ଗୋଟାଏ ଅରସିକ-ସୁଲଭ ଇତର ସ୍ୱଭାବରେ ସେଇ ନଖ ପ୍ରସଙ୍ଗ ଉପରେ ଜିଦ୍ ଧରି ବସିଲି ।

—କୁଆଡ଼େ ଗଲା ? କାହିଁକି କାଟିଦେଲେ ସେଇ ସୁନ୍ଦର ନଖ-ଗୁଡ଼ିକୁ ? ଆପଣ କାଟିଲେ ନାଁ ଆଉ କିଏ ବେରସିକ କାଟିଦେଲା ?

ଶ୍ରୀମତୀ ଚୌଧୁରୀ ଏ ପ୍ରଶ୍ନରେ କାନ୍ଦ କାନ୍ଦ ହୋଇଗଲେ, ଅସହାୟ ହୋଇପଡ଼ିଲେ । କରୁଣ ମିନତିଭରା କଣ୍ଠରେ ସେ ଆକୁଳ ହୋଇ କହିଲେ —କିଏ ବୁଝିବ ? ମୁଁ ଆପଣଙ୍କୁ କହୁ ନ ଥିଲି, ମୋର ଯେତେ ବିପଦ ଏଇ ଅଙ୍ଗୁଳିଗୁଡ଼ିକ ଲାଗି ! ଏଇ ଅଙ୍ଗୁଳିଗୁଡ଼ିକର ଅଳଦୋଳି କିଏ ସହିପାରିବ—ଯେଉଁମାନେ କୁଞ୍ଚିର ନଖ ଓ ମୋର ନଖକୁ ସମାନ ବୋଲି ଭାବନ୍ତି !

ଶ୍ରୀମତୀ ଚୌଧୁରୀ ଆଖିରେ ରୁମାଲ ଢାଙ୍କି ମୋ ପାଖରୁ ଉଠିଗଲେ ।

